

ସ୍ୱର୍ଗତ ଡକ୍ଟର ମାୟାଧର ମାନସିଂହ (୧୯୦୫-୧୯୭୩) ଜଣେ ଅତି ସ୍ପଷ୍ଟବାଦୀ ଶିକ୍ଷାବିତ୍, ଦରଦୀ କବି, ନାଟ୍ୟକାର, ପ୍ରାବନ୍ଧିକ, ସମୀକ୍ଷକ, ସମାଲୋଚକ, ଔପନ୍ୟାସିକ, ସଂପାଦକ ଆଦି ଭାବରେ ଓଡ଼ିଆ ସାହିତ୍ୟ ଓ ଶିକ୍ଷାଜଗତରେ ଅତି ସମ୍ମାନିତ । ତାଙ୍କର ବହୁମୁଖୀ ପ୍ରତିଭା ଓ ବ୍ୟକ୍ତିତ୍ୱ ହିମାଳୟ ସଦୃଶ । ତାଙ୍କ ପତ୍ରଗୁଡ଼ିକର ଏହି ସଂକଳନ କରିବା ଅବସରରେ ପତ୍ନୀ ହେମଲତାଙ୍କୁ ଅନେକବାର ଭେଟି ଆଳାପ ଆଲୋଚନା କରିବାର ସୁଯୋଗ ମିଳିଛି । ଏହି ସୁଯୋଗରେ କବି ମାନସିଂହଙ୍କ ସମ୍ବନ୍ଧରେ ଜାଣିବାକୁ ଚେଷ୍ଟା କଲାବେଳେ ଅନୁଭବ କରିହେଲା ଯେ, ମାନସିଂହଙ୍କର ହିମାଳୟ ପରି ଯେଉଁ ବ୍ୟକ୍ତିତ୍ୱ ତାହା ହେମଲତାଙ୍କୁ ଆଶ୍ରାକରି ବଢ଼ିଛି । ହେମଲତା ଯଦି ଦୁଃଖ, କଷ୍ଟ, ଅଭାବ, ଅସୁବିଧା ସହ୍ୟ ନକରି ତାଙ୍କୁ ସହଯୋଗ ନକରି ଆଶ୍ରାଦେଇ ନଥା'ନ୍ତେ, ତେବେ ହୁଏତ ମାନସିଂହଙ୍କ ବ୍ୟକ୍ତିତ୍ୱ ଓ କୃତି ଏତେ ପରିଦୃଷ୍ଟ ହୋଇ ନଥା'ନ୍ତା । ବାସ୍ତବରେ କବି ମାନସିଂହଙ୍କୁ 'ହେମାଶ୍ରୟୀ ହିମାଳୟ' କୁହାଯାଇ ପାରେ ।

# ହେମପତ୍ର

## ପତ୍ନୀ ହେମଲତାଙ୍କୁ କବି ମାନସିଂହଙ୍କ ଚିଠି

ଡକ୍ଟର ମାୟାଧର ମାନସିଂହ

ସମ୍ପାଦକ

ଡକ୍ଟର ସୂର୍ଯ୍ୟକାନ୍ତ ଦାସ

ନଟବର ଖୁଣ୍ଟିଆ



ବେଷ୍ଟ୍‌ସେଲର୍

ପ ବ୍ଲି କେ ସ ନ ସ୍

# ହେମପତ୍ର

ପ୍ରଥମ ସଂସ୍କରଣ ୨୦୦୨
ଲେଖକ ଡକ୍ଟର ମାୟାଧର ମାନସିଂହ
ସମ୍ପାଦକ ଡକ୍ଟର ସୂର୍ଯ୍ୟକାନ୍ତ ଦାସ
ନଟବର ଖୁଣ୍ଟିଆ

# HEMAPATRA

First Edition 2002
Author Dr. Mayadhar Mansingh
Editors Dr. Suryakanta Das
Natabar Khuntia



Bestseller Publications
B-106, Vinaydeep Apartment
Ashok Nagar, Bhubaneswar-751009
Phone : 0674 - 534659
E.mail : bestsellerpublications@rediffmail.com



ବେଷ୍ଟସେଲର ପବ୍ଲିକେସନସ୍
ବି-୧୦୬, ବିନୟଦୀପ୍ ଆପାର୍ଟମେଣ୍ଟ,
ଅଶୋକ ନଗର, ଭୁବନେଶ୍ୱର-୭୫୧୦୦୯
୦୬୭୪-୫୩୪୬୫୯



ପ୍ରଚ୍ଛଦ
ଗୁରୁଦତ୍ତ ଖୁଣ୍ଟିଆ

ଅକ୍ଷରସଜ୍ଜା
ଡିଏସ୍ କମ୍ପ୍ୟୁଟରସ୍
୫୫୪, ବିଜେବି ନଗର, ଭୁବନେଶ୍ୱର-୧୪

ମୁଦ୍ରାକର
ଶ୍ରୀ ଗୁରୁଗୌରାଙ୍ଗ ପ୍ରେସ୍
ଆଇ.ଆର.ସି.ଭିଲେଜ୍, ଭୁବନେଶ୍ୱର-୭୫୧୦୧୫
ଫୋନ୍-୫୫୫୫୧୭

ଟ. ୯୫.୦୦
Rs.95.00
$10

# ଉଦାର ଚରିତେଷୁ

ଉଦାର ହୃଦୟ ପାଠକ-ପାଠିକା ମାନଙ୍କୁ ପଦେ କଥା କହିବା ଆବଶ୍ୟକ ପଡୁଛି । କବି ମାୟାଧର ମାନସିଂହ ବିଲାତରେ ପିଏଚ୍.ଡି. ଡିଗ୍ରୀ ଲାଗି ଗବେଷଣା ରେ ଲିପ୍ତ ଥିବା ବେଳେ ତାଙ୍କ କବି ପ୍ରାଣରେ ବିରହ ବେଦନା ଅଧିକ ହୋଇ ପଡୁଥିଲା । ସେତେବେଳେ ପ୍ରାଣପ୍ରିୟା ଙ୍କୁ ଯେଉଁ ସବୁ ଚିଠି ଲେଖିଥିଲେ, ଏ ପୁସ୍ତକରେ ତାହା ସନ୍ନିବେଶିତ ହୋଇଛି । ଚିଠିର ବାକ୍ୟାଂଶକୁ ଶିରୋନାମା କରାଯାଇଛି । କେତେକ ଚିଠିର ଶୀର୍ଷକ ରଖାଯାଇଛି 'ବିବାହ ର ପ୍ରଥମ ଦିନ ମାନଙ୍କର ସ୍ୱପ୍ନ ବିଭୋର ପ୍ରେମ' 'ପ୍ରାଣପୂର୍ଣ୍ଣ ଚୁମ୍ବନ ଦେବି' 'ତମର ସ୍ୱର୍ଣ୍ଣନିନ୍ଦି ଅବୟବ' 'ଧନରେ ମନେ ପଡୁଛି' ଇତ୍ୟାଦି । ସବୁ ଚିଠିରେ ସ୍ନେହ ସୋହାଗ, ଆଦର-ଆବେଗ ଭରପୂର । ଚିଠିଗୁଡ଼ିକରେ ଅପୂର୍ବ ପ୍ରେମୋଲ୍ଲାସ ପ୍ରସ୍ଫୁଟିତ ହୋଇଛି ।

କବି କେବେହେଲେ ଭାବି ନଥିବେ, ଚିଠି ସବୁ ଦିନେ ପୁସ୍ତକ ଆକାରରେ ପ୍ରକାଶିତ ହୋଇପାରେ । ସ୍ତ୍ରୀଙ୍କୁ ପ୍ରେମ ସମ୍ଭାଷର କେତେକ ଚିଠିରେ 'ହୁଏତ' ଅତିରିକ୍ତ ହୋଇ ଥାଇ ପାରେ । କୌଣସି ପାଠକ-ପାଠିକାଙ୍କୁ ଅରୁଚିକର ଲାଗିପାରେ । କିନ୍ତୁ କବି ମାନସିଂହଙ୍କ ଚିଠିଗୁଡ଼ିକରୁ କିଛି ହେଲେ ଉହ୍ୟ ରଖିବାକୁ ମୋ ବିବେକ ମୋତେ ବାରଣ କରୁଛି ।

ଆମ ଦେଶର ବହୁ କାଳରୁ କାମସୂତ୍ର ଗ୍ରନ୍ଥ ଅଧ୍ୟୟନ କରାଯାଇ ଆସିଛି । ଇଂରାଜୀ ସାହିତ୍ୟରେ "ଲେଡି ଚାର୍ଟର୍‌ଲିସ୍ ଲଭର୍" ନାମକ ଉପନ୍ୟାସ ଖ୍ୟାତି ଅର୍ଜନ କରିଛି । ସେଇ ପରିପ୍ରେକ୍ଷୀରେ, ତାଙ୍କ ପ୍ରାଣପ୍ରିୟାଙ୍କୁ ଲେଖିଥିବା ଚିଠିରେ କବି ମାନସିଂହ ଯଦି କିଛି ବିଶେଷ କଥନ କରିଥାନ୍ତି, ସେଇ ଅଂଶ ମୋ ମତରେ ବର୍ଜନୀୟ ନୁହେଁ । ମାନସିଂହ, ଲେଖିଛନ୍ତି, ଆଉ କାହାକୁ ମୋ ପ୍ରାଣ କଥା କହିବି ?

ମୁଁ କବିପତ୍ନୀ ଶ୍ରୀମତୀ ହେମଲତା ମାନିସିଂହଙ୍କୁ ବିଶେଷ ଧନ୍ୟବାଦ ଜ୍ଞାପନ କରୁଛି । ତଙ୍କ ଦୂରଦୃଷ୍ଟିକୁ ପ୍ରଶଂସା କରୁଛି । ପ୍ରାୟ ପାଠିଏ, ପଞ୍ଚଷଠି ବର୍ଷଧରି ଚିଠିଗୁଡ଼ିକୁ ସେ ସାଇତି ରଖିଛନ୍ତି ଏବଂ ପ୍ରକାଶ କରିବାକୁ ଅନୁମତି ଦେଇଛନ୍ତି । ମାନସିଂହ ଯେଉଁ ସୁନ୍ଦର ଚିଠି ଲେଖିଛନ୍ତି, ସେଥିରେ ଯେଉଁ ଆବେଗ ଭର୍ତ୍ତି ହୋଇରହିଛି, ସେସବୁ ଚିଠିର ଥରେ ନୁହେଁ; ଥରକୁ ଥର ପଢ଼ିବା ଭଳି ଚିଠି । ପାଠକ ପାଠିକାମାନଙ୍କ ଦ୍ୱାରା ସଂକଳନ ଆଦୃତ ହେବ ବୋଲି ବିଶ୍ୱାସ ।

ସୂର୍ଯ୍ୟକାନ୍ତ ଦାସ
ସଂକଳକ

# ପ୍ରକାଶକୀୟ

ଓଡିଶାର ଖ୍ୟାତନାମ ଶିକ୍ଷାବିତ୍, ବାଣିଜ୍ୟ ପ୍ରଫେସର ତଥା ବାଣିଜ୍ୟ ପରି ନିରସ ବିଷୟକୁ ସରସ ଓ ସୁନ୍ଦର ଭାଷାରେ ଓଡିଆ ପାଠକ ପାଠିକାଙ୍କ ନିକଟରେ ଗତ କେତେ ଦଶନ୍ଧି ଧରି ପରିବେଷଣ କରି ଆସୁଥିବା ଅତି ସମ୍ମାନିତ ଲେଖକ ଡକ୍ଟର ସୂର୍ଯ୍ୟକାନ୍ତ ଦାସ ଦିନେ ହଠାତ୍ ଟେଲିଫୋନ୍ କରି ମୋତେ କହିଲେ, ''ଡକ୍ଟର ମାୟାଧର ମାନସିଂହ ପିଏଚ୍.ଡ଼ି. କରିବା ପାଇଁ ୧୯୩୦ ଦଶକରେ ବିଲାତ ଯାଇଥିବା ବେଳେ ତାଙ୍କ ପତ୍ନୀ ଶ୍ରୀମତୀ ହେମଲତା ମାନସିଂହଙ୍କୁ ଲେଖିଥିବା ପତ୍ର ସବୁକୁ ଏକ ପୁସ୍ତକଆକାରରେ ପ୍ରକାଶ କରିବାକୁ ଶ୍ରୀମତୀ ମାନସିଂହ ଚାହୁଁଛନ୍ତି । ସେ ସବୁ ଚିଠି ମୁଁ ସଂଗ୍ରହ କରି ପଢ଼ିଛି ଏବଂ ପ୍ରତ୍ୟେକ ଚିଠିର ଗୋଟିଏ ଲେଖା ଶୀର୍ଷକ ଦେବା ବ୍ୟତୀତ ମୂଳ ଚିଠିର କିଛି ପରିବର୍ତ୍ତନ କରି ନାହିଁ । ଏସବୁ ଚିଠି ମୋ ମତରେ ଓଡିଆ ସାହିତ୍ୟର ଏକ ସଂପଦ  ହୋଇ ରହିବ ଏବଂ ତତ୍କାଳୀନ ଓଡିଆ ସମାଜ, ଭାରତୀୟ ସମାଜ ଓ ଆନ୍ତର୍ଜାତୀୟ ସମାଜର ଏକ ଚିତ୍ର ପ୍ରଦାନ କରିବ । ଆପଣ ଏକ ନୂତନ ପ୍ରକାଶନ ସଂସ୍ଥା ସହ ସଂପୃକ୍ତ ହେବା ଶୁଣିଲି, ତେଣୁ ମୁଁ ପ୍ରସ୍ତାବ ଦେଉଛି ଏହି ପତ୍ର ଗୁଡିକର ଏକ ସଂକଳନ କରନ୍ତୁ ।''

ଡକ୍ଟର ଦାସଙ୍କର ମୁଁ ପ୍ରତ୍ୟକ୍ଷ ଛାତ୍ର ନଥିଲି । ଲେଖା ଲେଖି କରିବା ମାଧ୍ୟମରେ ତାଙ୍କ ସହ ପରିଚୟ ହେଲା ପରେ ମୁଁ ତାଙ୍କୁ ଗୁରୁ ସଦୃଶ ଆନ୍ତରିକ ଭକ୍ତି ଓ ସମ୍ମାନ କରେ । ସେ ମଧ ତାଙ୍କର ଛାତ୍ରଭଳି ମୋତେ ସ୍ନେହ ଓ ଶ୍ରଦ୍ଧା କରନ୍ତି । ତାଙ୍କ ପ୍ରସ୍ତାବ ଶୁଣିବାମାତ୍ରେ ପତ୍ରଗୁଡିକର ଏକ ସଂକଳନ ପାଇଁ ମୁଁ ତତ୍କ୍ଷଣାତ ସମ୍ମତି ଜଣାଇଦେଲି । ହେମପତ୍ରରେ ସନ୍ନିବେଶିତ ଚିଠିଗୁଡିକୁ ପାଠକଲେ ପାଠକ-ପାଠିକାମାନେ ଡକ୍ଟର ମାନସିଂହଙ୍କ ଦୂରଦୃଷ୍ଟି ଓ ବ୍ୟକ୍ତିତ୍ୱର ଆକଳନ କରି ପାରିବେ । ୧୯୩୦ ଦଶକରେ ଯେତେବେଳେ ସେ ଜଣେ ଯୁବକ ଥିଲେ, ସେହି ସମୟରେ ତାଙ୍କର ପତ୍ନୀଙ୍କ ପାଖକୁ ଯେଉଁସବୁ ବ୍ୟକ୍ତିଗତ ପତ୍ର ଲେଖିଥିଲେ ସେଥିରେ ନିଛକ ବ୍ୟକ୍ତିଗତ କଥା କମ୍ ଅଛି ଆଉ ତତ୍କାଳୀନ ସମାଜର ଚିତ୍ର ଅଧିକ ଅଛି । ବ୍ୟକ୍ତିଗତ କଥା ମାଧ୍ୟମରେ ମଧ ସମାଜ ଓ ଜାତି  ଗଠନ ପାଇଁ  ଅନେକ ପରାମର୍ଶ ଦେଇଛନ୍ତି ।

ଡକ୍ଟର ମାନସିଂହ ଜଣେ ଅତି ସ୍ପଷ୍ଟବାଦୀ ଶିକ୍ଷାବିତ୍, ଦରଦୀ କବି, ନାଟ୍ୟକାର, ପ୍ରାବନ୍ଧିକ, ସମୀକ୍ଷକ, ସମାଲୋଚକ, ଔପନାସିକ, ସଂପାଦକ ଆଦି ଭାବରେ ଓଡିଆ ସାହିତ୍ୟ ଓ ଶିକ୍ଷା ଜଗତରେ ଅତି ସମ୍ମାନିତ। ତାଙ୍କର ବହୁମୁଖୀ

ପ୍ରତିଭା ଓ ବ୍ୟକ୍ତିତ୍ୱ ହିମାଳୟ ସଦୃଶ । ତାଙ୍କ ପତ୍ର ଗୁଡିକର ଏହି ସଂକଳନ କରିବା ଅବସରରେ କବିଙ୍କ ପତ୍ନୀ ଶ୍ରୀମତୀ ହେମଲତା ମାନସିଂହଙ୍କୁ ମୁଁ ଅନେକଥର ଭେଟିବାର ସୁଯୋଗ ପାଇଛି । ତାଙ୍କ ସହ ବିଭିନ୍ନ ସମୟରେ ଆଳାପ କରି କବି ମାନସିଂହଙ୍କ ସମ୍ବନ୍ଧରେ ଜାଣିବାକୁ ଚେଷ୍ଟା କରିଛି । ପତ୍ରଗୁଡିକୁ ବାରମ୍ବାର ପାଠ କରିଛି । ମୁଁ ଅନୁଭବ କରୁଛି ଡକ୍ଟର ମାନସିଂହଙ୍କର ହିମାଳୟ ପରି ଯେଉଁ ବ୍ୟକ୍ତିତ୍ୱ,ତାହା ପତ୍ନୀ ହେମଲତାଙ୍କୁ ଆଶ୍ରାକରି ବଢ଼ିଛି । ପତ୍ନୀ ହେମଲତା ଯଦି ଦୁଃଖ, କଷ୍ଟ, ଅଭାବ, ଅସୁବିଧା ସହ୍ୟ ନକରି ତାଙ୍କୁ ସହଯୋଗ ନକରି ଆଶ୍ରାଦେଇ ନଥାନ୍ତେ, ତେବେ ହୁଏତ ମାନସିଂହଙ୍କ ବ୍ୟକ୍ତିତ୍ୱ ଓ କୃତି ଏତେ ପରିଦୃଷ୍ଟ ହୋଇ ନଥା'ନ୍ତା । ମୋ ମତରେ କବି ମାନସିଂହଙ୍କର ଯେଉଁ ହିମାଳୟ ସଦୃଶ ବ୍ୟକ୍ତିତ୍ୱ ଆମେ ଆଜି ଅନୁଭବ କରି ପାରୁଛେ, ତାହା ପତ୍ନୀ ହେମଲତାଙ୍କୁ ଆଶ୍ରାକରି ବଢ଼ିଛି । ବାସ୍ତବରେ କବିମାନସିଂହଙ୍କୁ 'ହେମାଶ୍ରୟୀ ହିମାଳୟ' କୁହାଯାଇ ପାରେ ।

ଏଥିରେ ସନ୍ନିବେଶିତ ପତ୍ରଗୁଡିକୁ ପାଠକରି ଏକ ସଂକ୍ଷିପ୍ତ ମତାମତ ପ୍ରକାଶ କରିବାକୁ ନିଷ୍ପତ୍ତି ନେଇ ଓଡିଶା ସାହିତ୍ୟ ଏକାଡେମୀର ସଭାପତି ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ ଯେତେବେଳେ ଏଥିପାଇଁ ଟେଲିଫୋନରେ ଅନୁରୋଧ କଲି, ସେ ମହାଶୟ ବିନା ଦ୍ୱିଧାରେ ସମ୍ମତି ଜଣାଇଲେ ଏବଂ ସେ ଅନ୍ୟ କାର୍ଯ୍ୟରେ ଟିକେ ବ୍ୟସ୍ତ ଥିବାରୁ ସାମାନ୍ୟ ବିଳମ୍ବ ହୋଇପାରେ ବୋଲି କହିଲେ । କିନ୍ତୁ ନିର୍ଦ୍ଧାରିତ ସମୟ ପୂର୍ବରୁ ସେ ତାଙ୍କର ମତାମତ 'କବି ମାନସିଂହଙ୍କ ପତ୍ର ସାହିତ୍ୟ : ଏକ ଆକଳନ' ମାଧ୍ୟମରେ ଦେଇ ଥିବାରୁ ତାଙ୍କୁ ଆମ ତରଫରୁ ଆନ୍ତରିକ କୃତଜ୍ଞତା ।

ହଁ ଆଉ ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ କଥା । ଅଧ୍ୟାପକ ପଟ୍ଟନାୟକଙ୍କ ମତାମତ ର ପାଣ୍ଡୁଲିପି ଆଣି ଶ୍ରୀମତୀ ମାନସିଂହଙ୍କୁ ଦେଖାଇଲି । ସେ ପାଠକରି କହିଲେ ପଠାଣିବାବୁ ତାଙ୍କ ମତାମତରେ ଲେଖିଛନ୍ତି - "**ପ୍ରଣୟ ପତ୍ର** ଶୀର୍ଷକରେ ଜଣେ ମହିଳାଙ୍କର କେତୋଟି ଚିଠି ୧୯୬୯ ମସିହାରେ ସ୍ୱର୍ଗତ କବି ମୁରାରୀ ମୋହନ ଜେନା ସଂକଳନ କରିଥିଲେ। ସେହି ଲେଖିକାଙ୍କ ନାମ ଗୋପନ ରଖାଯାଇଛି...। ପ୍ରକୃତରେ ସେହି ଲେଖିକା ମୁଁ । ସେ ବୋଧହୁଏ ତାହା ଜାଣି ନାହାନ୍ତି । ତାଙ୍କୁ ଟେଲିଫୋନ୍‌ରେ ଏକଥା କହିଦିଅ, ସେ ତାହା ଉଲ୍ଲେଖ କରିଦେବେ ।"

ମୁଁ କିନ୍ତୁ ପଠାଣିବାବୁଙ୍କୁ ଏକଥା କହିବାକୁ ଚାହିଁଲି ନାହିଁ - ପଠାଣିବାବୁ ଜାଣି ନାହାନ୍ତି ବୋଲି ଲେଖିଛନ୍ତି - ହୁଏତ ଜାଣିବି ଯେହେତୁ ପୁସ୍ତକରେ ଲେଖିକାଙ୍କ ନାମ ପ୍ରକାଶ କରିବାକୁ ବାରଣ କରାଯାଇଛି, ସେ ତାହା ଲେଖି ନାହାଁନ୍ତି । ବର୍ତ୍ତମାନ ଯେହେତୁ ଲେଖିକା ନିଜେ ତାଙ୍କ ନାମ ପ୍ରକାଶ କରିବାକୁ ସମ୍ମତ, ତେଣୁ ଏକଥା ପ୍ରକାଶକୀୟରେ ଉଲ୍ଲେଖ କରିବାକୁ ମୁଁ ଉଚିତ ମନେକଲି ।

ଡକ୍ଟର ମାନସିଂହ ପତ୍ନୀ ହେମଲତାଙ୍କୁ କେତେ ଭଲ ପାଉଥିଲେ ତାହା ଓଡିଶାର ମାନସିଂହ ପ୍ରେମୀ ପାଠକ ପାଠିକାମାନେ ନିଶ୍ଚିତ ଭାବରେ ଅବଗତ । ତାଙ୍କର ଦୁଇଟି କବିତା ଗ୍ରନ୍ଥର ନାମ ସେ ରଖିଥିଲେ 'ହେମଶସ୍ୟ' ଓ 'ହେମପୁଷ୍ପ' । ଏଥିରେ ସନ୍ନିବେଶିତ ପତ୍ର ଗୁଡିକୁ କବି ମାନସିଂହ ହେମଲତାଙ୍କୁ ଲେଖିଥିଲେ ସୁତରାଂ ବିଚାର ବିମର୍ଶ କରି ଏହି ପତ୍ର ସଂକଳନ ନାମ 'ହେମପତ୍ର' ଦିଆଗଲା । ଆଶା କରୁ, ପାଠକପାଠିକା ମାନେ ଏହି ନାମକୁ ଆଦର କରିବେ - 'ହେମଶସ୍ୟ', 'ହେମପୁଷ୍ପ' ପରେ 'ହେମପତ୍ର' ଓଡିଆ ସାହିତ୍ୟକୁ ମାନସିଂହଙ୍କର ଆଉ ଏକ ଅବଦାନ ହେବ।

ଶେଷରେ ଶ୍ରୀମତୀ ମାନସିଂହଙ୍କୁ ଆମେ ଅଶେଷ ଧନ୍ୟବାଦ ଜ୍ଞାପନ କରୁଛୁ । ସେ ବହୁଦିନର ସାଇତା ଚିଠି ଗୁଡିକୁ ଆମକୁ ପ୍ରକାଶ ପାଇଁ ସୁଯୋଗ ଦେଇଛନ୍ତି ଏବଂ ପତ୍ରଗୁଡିକ ସମ୍ବନ୍ଧରେ ନିଜର ମତାମତ ଓ ଅନ୍ତରଙ୍ଗ ଅନୁଭୂତି 'ଚିଠିର ଭୂମିକା' ମାଧ୍ୟମରେ ପ୍ରକାଶ କରିଛନ୍ତି ।

'ହେମପତ୍ର' କବି ମାନସିଂହଙ୍କ ପ୍ରତିଭା ଓ ଦୂରଦୃଷ୍ଟିର ଆଉ ଏକ ନିଦର୍ଶନ ହେବ ବୋଲି ଆମର ଦୃଢ଼ ଆଶା।

ଭୁବନେଶ୍ୱର
ଅଗଷ୍ଟ ୨୦, ୨୦୦୨

ନଟବର ଖୁଣ୍ଟିଆ
ମୁଖ୍ୟ ସଂପାଦକ
ବେଷ୍ଟସେଲର ପବ୍ଲିକେସନସ୍

# ଚିଠିର ଭୂମିକା

କବି ମାନସିଂହଙ୍କ ଚିଠି ବିଷୟରେ କହିବାକୁ ବସିଲା ବେଳେ କେତେକଥା ମନେପଡୁଛି । ଅଜସ୍ର ଚିଠି ସେ ମତେ ଲେଖିଛନ୍ତି । ମୋ ଚିଠି ନ ପାଇଲେ ସେ ବସି କନ୍ଦନ୍ତି । ମୋତେ ଛାଡ଼ିକରି ଗଲାବେଳେ ଅନେକ ସମୟରେ ସେ କାନ୍ଦିଥାନ୍ତି । ମତେ କିନ୍ତୁ କାନ୍ଦ ଲାଗେନାହିଁ । ଏମିତି କାନ୍ଦୁରା ଲୋକ ମୁଁ ଦେଖିନାହିଁ । ମତେ ଦୁର୍ବ୍ୟବହାର ବି ବହୁତ କରନ୍ତି । ସେ କଥା କହିଲେ କହିବେ, ତମ ଛଡ଼ା ମୋର ଆଉ କିଏ ଅଛି ଧନ । ମୋର ଦଶବର୍ଷ ବୟସରୁ କବିଙ୍କ ସହିତ ବିବାହ ସ୍ଥିର ହୋଇଥିଲା । ମୋର ଦଶବର୍ଷ ବୟସରେ କବି ତାଙ୍କ ବନ୍ଧୁମାନଙ୍କ ସହ ଡିସେମ୍ବର ମାସ ବଡ଼ଦିନ ଛୁଟିରେ ମତେ ଦେଖିବାକୁ ମୟୁରଭଞ୍ଜର ପାଞ୍ଚପୀଢ଼ ସବ୍‌ଡିଭିଜନ୍‌ସ୍ଥ କରଞ୍ଜିଆକୁ ଆସିଥିଲେ ।

ବିବାହ ପୂର୍ବରୁ ଅଭିଭାବକଙ୍କ ଅନୁମତି ନେଇ ମତେ ସେ ଚିଠି ଲେଖିଥିଲେ । ପ୍ରଥମ ଚିଠିଟି ସେ ଲେଖିଥିଲେ ତମର ଜଣେ ଭଗିନୀ ନାମ ଦେଇ । ଏହି ଚିଠି ଗୁଡ଼ିକର ସାହିତ୍ୟିକ ମୂଲ୍ୟ ଯଥେଷ୍ଟ ଥିଲା । କିନ୍ତୁ ସେତେବେଳେ ମୁଁ ଏତେ ଭୀତତ୍ରସ୍ତ ଓ ଲଜ୍ଜ୍ୟାଶୀଳା ଥିଲି ଯେ କୁହାନଯାଏ । କାଳେ କିଏ ଦେଖିପକେଇବ, ଏହି ଭୟରେ ଚିଠିକୁ ସାଙ୍ଗେ ସାଙ୍ଗେ ଚିରି ଫୋପାଡ଼ି ଦେଉଥିଲି । ଏହି ଚିଠିପାଇଁ କବି ଆମଘରେ ବହୁତ ଅନର୍ଥ ଘଟାଇଛନ୍ତି । ଚିଠି ଯଦି ମୁଁ ଠିକ୍ ସମୟରେ ନ ପାଏ, ତେବେ ସେ ଭାବନ୍ତି ଆମଘରେ ଆଉ କେହି ତାଙ୍କ ଚିଠି ନେଇଯାଉଛି । ମୋ ଭାଇ ମାନଙ୍କ ଭିତରୁ ଯାହାକୁ ସେ ସନ୍ଦେହ କରନ୍ତି ତାଙ୍କୁ ଚିଠି ଲେଖନ୍ତି । ସେ ଚିଠିପାଇ ରୁଷି ପାଟିତୁଣ୍ଡ କରେ । ସେ ଭାବି ପରନ୍ତି ନାହିଁ ଯେ ଡ଼ାକଗୋଳମାଳ ହୋଇପାରେ । ମୁଁ ବି ଏତେ ବୋକୀଥିଲି ଯେ ଡ଼ାକ ଗୋଳମାଳ କଥା କବିଙ୍କୁ ଜଣାଇପାରୁନଥିଲି । କବି ଦିନେ ଦିନେ ଦୁଇଟି ପତ୍ର ଲେଖିବାତ ମାମୁଲି କଥା, ଥରେ ଥରେ ଦିନକୁ ତିନିଟା ଚ଼ିଠି ଲେଖୁଥିଲେ । ବେଳେ ବେଳେ ଲେଖୁଥିଲେ ସେ ଏତେ ନିସ୍ୱଯେ, ଚ଼ିଠି ଲେଖିବାକୁ ତାଙ୍କ ପାଖରେ ପଇସା ନାହିଁ । ତେଣୁ ମୁଁ ଥରେ ଥରେ ଲଫାପା ଭିତରେ ୫ ଟଙ୍କିଆ ନୋଟ ଗୋଟାଏ ପଠାଇ ଦେଉଥିଲି । ବୋଲିବା ବାହୁଲ୍ୟ ଯେ, ଟଙ୍କାଥିବା ଚ଼ିଠି ସେ କେବେ ପାଇନାହାନ୍ତି । ଡ଼ାକ ବିଭାଗ କର୍ମଚ୍ଚରୀ କେହି ହୁଏତ ମାରି ନେଉଥିଲେ ।

କବିଙ୍କ ପତ୍ରପାଇ ମୁଁ ଅତିଶୟ ଆନନ୍ଦିତ ହେଉଥିଲି ସତ ମାତ୍ର ଉତ୍ତର ଦେଲାବେଳକୁ ମୁଁ ମହା ସମସ୍ୟାରେ ପଡ଼ିଯାଉଥିଲି । କ'ଣ ଲେଖିବି ବୋଲି ଲେଖିଲେ, କବି ବେଳେବେଳେ ଅଭିଯୋଗ କରନ୍ତି । ଅଭିମାନବି କରନ୍ତି । ଲେଖନ୍ତି

ଯେ, ସେ ଦୀର୍ଘପତ୍ର ଲେଖି ଦେଉଥିଲା ବେଳେ ମୁଁ କାହିଁକି କ୍ଷୁଦ୍ର ଚିଠି ଲେଖୁଛି । କବି ଭାବୁଥିଲେ ମୁଁ ତାଙ୍କୁ ଖାତିର କରୁନାହିଁ କିମ୍ବା ଅବହେଳା କରୁଛି ।

ବିବାହ ପୂର୍ବରୁ ଅର୍ଥାତ୍ ମୋର ଏଗାର କି ବାର ବର୍ଷ ବୟସରେ ମତେ କବି ଚିଠି ଲେଖିଥିଲେ ଓ ମୋଠାରୁ ଉତ୍ତର ଆଶା ରଖୁଥିଲେ । ମୁଁ ପଢ଼ିଲା ବେଳେ ଗୁରୁଜନମାନଙ୍କୁ ପତ୍ରଲିଖନ ଶିଖିଥିଲି ।

ଶ୍ରୀଲ ଶ୍ରୀଯୁକ୍ତ ଭ୍ରାତୃଦେବ ମହୋଦୟ ସମୀପେଷୁ,

ଭାଇ, ଲେଖିବାର କାରଣ ଏହିକିଯେ ଆମ୍ଭେମାନେ ସର୍ବକୁଶଳରେ ଅଛୁ । ତୁମ୍ଭର କୁଶଳକୁ ଶ୍ରୀ ଜଗନ୍ନାଥ ଅଛନ୍ତି । ଭାଇ ମୋ ପାଇଁ କଟକରୁ ରବର ଓ ପେନ୍‌ସିଲ୍ ଆଣିବ । ।ଇତି।

ତମର ଆଜ୍ଞାଧୀନା ଭଉଣୀ ।

ଇତ୍ୟାଦି ଇତ୍ୟାଦି ଲେଖୁଥିଲି । କବିଙ୍କୁ ସେଇ ୧୧/୧୨ ବୟସରେ ଚିଠି ଲେଖିଲାବେଳକୁ ମୁଁ ବଡ଼ ସମସ୍ୟାରେ ପଡ଼ିଲି । କ'ଣ ସମ୍ବୋଧନ କରିବି ! ବାହାଘର କ'ଣ ଜାଣି ନ ଥିଲି । କାରଣ ମୋର କେହି ସାଙ୍ଗ ସାଥି ନ ଥିଲେ । କବିଙ୍କ ସହିତ ପରିଚୟ ଥିଲା । ଜାଣିଥିଲେ ବି କ'ଣ ହୋଇଥାନ୍ତା । ସଂସାର ଅନଭିଜ୍ଞ ଏକ ବାଳିକା ପକ୍ଷରେ । ତା'ପରେ ଗ୍ରୀଷ୍ମାବକାଶରେ କବି ଆସି ଆମଘରେ ରହିବାରୁ ମୋର ଓ ମୋ ସାନ ଭାଇ ଭଉଣୀମାନଙ୍କ ସହ ପରିଚୟ ହୋଇଥିଲା । ସେ ଆମ ଭାଇ ଭଉଣୀମାନଙ୍କୁ ଗଳ୍ପ କହୁଥିଲେ । ତାଙ୍କରି ଠାରୁ ସେକ୍‌ସପିୟରଙ୍କର ମାର୍ଚ୍ଚେଣ୍ଟ ଅଫ୍ ଭେନିସ୍‌ର ଗଳ୍ପ ଶୁଣିଥିଲୁ । ନୃଶଂସ ସାଇଲକ୍ ଉପରେ ଆମର ତୀବ୍ର ଘୃଣାଜାତ ହେଲା । ସେ ସମୟରେ କବି ମତେ ରାଧାନାଥ ଗ୍ରନ୍ଥାବଳୀ ପଢ଼ିବାକୁ କହିଥିଲେ । ଚନ୍ଦ୍ରଭାଗା, ଉଷା ଇତ୍ୟାଦି ପଢ଼ିଥିଲି । ବାପା ଆମର ସାହିତ୍ୟ ପ୍ରେମୀଥିବାରୁ କୁନ୍ତଳାକୁମାରୀଙ୍କ ଠାରୁ ଆରମ୍ଭ କରି ଫକୀର ମୋହନ, ରାଧାନାଥ ରାୟ-ଆଦିଙ୍କର ସମସ୍ତ ବହି ଆମଘରେ ଥିଲା । ମୋତେ ମୋର ଭାଇ ଓ ଦାଦି ସେ ବୟସରେ ଉପନ୍ୟାସ ପଢ଼ିବାକୁ ବାରଣ କରିଥିଲେ ।

ସେଇ ୧୧/୧୨ ବର୍ଷ ବୟସରେ କବିଙ୍କୁ ପ୍ରଥମେ ଯେଉଁ ଚିଠି ଲେଖିଥିଲି, ସେଥିରେ 'ମାୟାଧର ବାବୁ' ବୋଲି ସମ୍ବୋଧନ କରିଥିଲି । କବିଙ୍କର ତାହା ମନପୂତ ହୋଇ ନଥିଲା । ଲେଖିଲେ ତମକୁ ଯାହା ସବୁଠୁ ଭଲଲାଗେ ସେହିନାମରେ ସମ୍ବୋଧନ କର । ମତେ 'ଡାଳି' ଭଲ ଲାଗୁଥିଲା । ତେଣୁ ସ୍ନେହରେ 'ଡାଳି' ବୋଲି ସମ୍ବୋଧନ କରି ପତ୍ର ଲେଖିଥିଲି । ସେ ଚିଠି ମୋର ସାଇତି କରି ରଖିଥିଲେ । ବିବାହ ପରେ

ମତେ ଲାଜ ଲାଗିଲା ସେ ଚିଠିକୁ ଦେଖି । ତେଣୁ କବିଙ୍କ ଅଜଣାରେ ସେ ଚିଠିକୁ ଚିରି ଫୋପାଡ଼ି ଦେଇଥିଲି ।

ଚାକିରୀରୁ ଅବସର ନେଇ କବି ଘରେ ରହିଲେ । ଚିଠିପତ୍ର ଦେବା ନେବାର ଆବଶ୍ୟକତା ପଡ଼ିଲାନାହିଁ । ଯେତେ ଯିଏ ମୋ ଜୀବନ କାତକ ଦେଖିଥିଲେ ୧୯୭୨ପରେ ରହିଯାଉଥିଲେ । ୧୯୭୨ ରେ ମୋର ଘାଟିଥିଲା । ରୋଗଫୋଗ କିଛି ନାହିଁ । ଗୋଟିଏ ଦାନ୍ତ ଉପାଡ଼ିବାର ୧୦ ଦିନ ପରେ ପାନଖିଲ ଲାଗି ଦାନ୍ତ ଉପାଡ଼ିବା ସ୍ଥାନରୁ ରକ୍ତ ବାହାରିଲା । କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ଡ଼ାକ୍ତରଖାନାରେ ମେଡ଼ିସିନ୍ ଓ୍ୱାର୍ଡ଼ରେ ଭର୍ତ୍ତି ହୋଇଥିଲି । ବହୁକଷ୍ଟରେ ସେମାନେ ମତେ ନେଲେ । କାରଣ ସୁନାମଧନ୍ୟ ଡାକ୍ତର ଶରତ ମିଶ୍ରଙ୍କ ଭଣଜା ବୋହୂ, ଡ଼ାକ୍ତର ରାଧାନାଥ ରଥଙ୍କ ସ୍ତ୍ରୀ । ଡାକ୍ତର ରାମଚନ୍ଦ୍ରଙ୍କ ବୋହୂ ଏ ଦାନ୍ତ ଉପାଡ଼ି ରକ୍ତ କ୍ଷରଣ ଯୋଗୁଁ ମୃତ୍ୟୁବରଣ କରିଥିଲେ । ସେହି କାରଣରୁ ସେମାନେ ମତେ ଡାକ୍ତରଖାନାରେ ଭର୍ତ୍ତି କରିବାପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ସେହି ଅବସ୍ଥାରେ ମୋର ଚେତା ନ ଥିଲା ବା ମୁଁ କୋମା ଷ୍ଟେଜରେ ଥିଲି । ଡ଼ାକ୍ତରଖାନାର ସୁପାରିଟେଣ୍ଡ ଆମ ପରିବାରର ବନ୍ଧୁ ଥିବାରୁ ସେ କହିଲେ ଶେଷ ଅବସ୍ଥା ଆସିଗଲା । ତାଙ୍କ ପିଲାମାନଙ୍କୁ ଡ଼କାନ୍ତୁ । ମୋର ମଧ୍ୟମ ପୁତ୍ର ଲଳିତ ଓ ସାନ ପୁଅ ବାବୁଲା ଆସି ପହଞ୍ଚିଲେ । ମୋର ମୁଣ୍ଡ ପାଖରେ ଠିଆ ହୋଇ ମତେ ବୋଉ ବୋଉ ଡ଼ାକିଲେ । ସେମାନଙ୍କର ଡ଼ାକ ମତେ ବହୁତ ଦୂରରୁ ଡ଼ାକୁଥିବା ଭଳି ଶୁଣାଗଲା । ସେମାନେ ମତେ ଜଣେ ଡାକ୍ତରଙ୍କ ସଙ୍ଗରେ ଭେଲୋର ଖ୍ରୀଷ୍ଟିଆନ୍ ଡାକ୍ତରଖାନାକୁ ନେଇଗଲେ । ସେଠାରେ ମତେ ଦୁଇମାସ ରହିବାକୁ ପଡ଼ିଲା । ରୋଗତ କିଛି ନ ଥିଲା ସେଠାରେ ମତେ ଖାଲି ଖାଇବା ପାଇଁ କହିଲେ । ସେହି ସମୟରେ କବି ମୋ ପାଖକୁ ପ୍ରତିଦିନ ଖଣ୍ଡିଏ ଲେଖାଏଁ ଚିଠି ବା ପୋଷ୍ଟକାର୍ଡ଼ ଲେଖି ପଠାଉଥିଲେ । ଦୁର୍ଭାଗ୍ୟ ସେ ଚିଠି ଆଉ ରଖାହୋଇ ନ ଥିଲା । ଚିଠିର ସ୍ରୋତ ଚିରଦିନ ପାଇଁ ବନ୍ଦ ହୋଇଗଲା । ଏହାର ବର୍ଷକ ପରେ କବି ୧୯୭୩ ଅକ୍ଟୋବର ୧୧ରେ ମହାପ୍ରୟାଣ କରିଥିଲେ ।

ହେମଲତା ମାନସିଂହ

ଅଗଷ୍ଟ, ୧୫, ୨୦୦୨
୧୪୨, କାନନବିହାର, ଭୁବନେଶ୍ୱର

# କବି ମାନସିଂହଙ୍କ ପତ୍ର ସାହିତ୍ୟ : ଏକ ଆକଳନ

ପ୍ରାଚୀନ ଓଡିଆ ସାହିତ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ଗୀତିମୟ ଏବଂ କାବ୍ୟ, କବିତାର ଗନ୍ତାଘର ରୂପେ ରହିଥିଲା। ପୌରାଣିକ ଅଭିଜାତ ଚରିତ୍ର ଅଥବା କାବ୍ୟ ସଂସାରର ସାମନ୍ତବାଦୀ ଚରିତ୍ର ନିଜର କ୍ଷମତା ଏବଂ ସ୍ୱାଭିମାନ ଜାହିର କରିବା ପାଇଁ ପତ୍ର ଲେଖିବାର ଉଦାହରଣ ରହିଛି। ମାତ୍ର ଏସବୁ ଥିଲା କବିଙ୍କର କଳ୍ପନାବିଳାସ। ସେହିପରି କାବ୍ୟଯୁଗର ସମ୍ଭୋଗବିଳାସୀ ନାୟକ ନାୟିକାଙ୍କୁ ଉପଲକ୍ଷ୍ୟ କରି ପତ୍ର ଆଦାନପ୍ରଦାନର ବର୍ଣ୍ଣନା ଦେଖିବାକୁ ମିଳେ। ଏଗୁଡିକ ମଧ୍ୟ ନିଛକ କଳ୍ପନାବିଳାସ ଏବଂ କେବଳ ଯୌନ-ବିଳାସ ଭାବନାରେ ପରିପୂର୍ଣ୍ଣ। ସତେ ଯେପରି ଜାନ୍ତବ ଶରୀର ସମ୍ଭୋଗ ହେଉଛି ଜୀବନରେ ଏକମାତ୍ର ଉଲ୍ଲେଖଯୋଗ୍ୟ ଘଟଣା। ଅବଶ୍ୟ ଐତିହାସିକମାନେ ମଧ୍ୟଯୁଗର ଇତିହାସ ବିଷୟରେ ଅନୁସନ୍ଧାନ କଲାବେଳେ ତାଳପତ୍ରରେ ତାମ୍ରପତ୍ରରେ ଅଥବା ଶିଳାଲେଖାରେ ରାଜାମାନଙ୍କର ଆଦେଶନାମା ଅଥବା ବ୍ୟକ୍ତିଗତ ସନ୍ଦେଶ-ଲିପି ସଂପର୍କରେ ଆସିଥାନ୍ତି। ଆଧୁନିକ ଯୁଗରେ ଗଦ୍ୟ ଲେଖାର ପ୍ରଚଳନ ଏବଂ କାଗଜ ଓ କାଳିର ବ୍ୟବହାର ହେବାରୁ ବ୍ୟକ୍ତିଗତ ଭାବରେ ପତ୍ରବିନିମୟ ଏବଂ ବ୍ୟକ୍ତିଗତ ଭାବନାର ଅଭିବ୍ୟକ୍ତି ପାଇଁ ସୁଯୋଗ ଉପସ୍ଥିତ ହେଲା। ସେହି କାରଣରୁ ଇଉରୋପୀୟ ସାହିତ୍ୟରେ କବି, ରାଷ୍ଟ୍ରନୀତିଜ୍ଞ ଏବଂ ମହାପୁରୁଷ ମାନଙ୍କର ପତ୍ରାବଳୀ ପ୍ରକାଶ କରିବାର ପରମ୍ପରା ସୃଷ୍ଟି ହୋଇଅଛି। ଆମ ଦେଶରେ ଇଂରେଜ ରାଜତ୍ୱକାଳରେ ପଣ୍ଡିତ ନେହରୁଙ୍କର ତାଙ୍କ ଝିଅ ପାଖକୁ ଚିଠି ପୁସ୍ତକଟି ବହୁକାଳ ପର୍ଯ୍ୟନ୍ତ ସ୍କୁଲମାନଙ୍କରେ ପାଠ୍ୟ ହେବାର ଜଣାଯାଏ। ମହାତ୍ମା ଗାନ୍ଧିଙ୍କ ପରି ବହୁ ଜାତୀୟ ନେତା ଓ ବୀରମାନଙ୍କର ପତ୍ରାବଳୀ ଏବେ ପୁସ୍ତକ ଆକାରରେ ପ୍ରକାଶିତ ହୋଇ ସେ ଯୁଗର ରାଜନୀତି, ସମାଜନୀତି ଏବଂ ସେହି ବିଷୟରେ ଏହି ନେତୃବୃନ୍ଦଙ୍କର ଭୂମିକା ସମ୍ପର୍କରେ ଆଲୋକପାତ କରାଇଥାଏ।

ଆମ ଓଡିଆ ସାହିତ୍ୟରେ ଏହି ପରମ୍ପରା ଅତ୍ୟନ୍ତ ସୀମିତ ଏବଂ ଦୁର୍ବଳ।

୧୯୪୧ ଖ୍ରୀଷ୍ଟାବ୍ଦରେ ବିଶାଳକାୟ 'ରାଧାନାଥ ଜୀବନୀ' ପ୍ରକାଶିତ ହୁଏ। ଏହାର ସଂକଳକ ଥିଲେ ଶ୍ରୀ ଦୁର୍ଗାଚରଣ ରାୟ। ଏହି ଗ୍ରନ୍ଥରେ କବି ରାଧାନାଥଙ୍କୁ ପ୍ରେରିତ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ପତ୍ରସମୂହ ଏବଂ ରାଧାନାଥଙ୍କର ପ୍ରେରିତ ପତ୍ରଗୁଡିକ ସ୍ଥାନିତ ହୋଇଛି। ଏହି ପତ୍ରଗୁଡିକ ବିଶ୍ଳେଷଣ କଲେ କବି ରାଧାନାଥଙ୍କର ବ୍ୟକ୍ତିତ୍ୱ, ଜୀବନ-ଦର୍ଶନ ଏବଂ ସାମାଜିକ ପ୍ରତିଷ୍ଠା ଓ ସମ୍ପର୍କ ବିଷୟରେ ସ୍ପଷ୍ଟ ଧାରଣା କରାଯାଇଥାଏ।

ସେହିପରି ୧୯୫୫ ଖ୍ରୀଷ୍ଟାବ୍ଦରେ ଐତିହାସିକ ଶିବପ୍ରସାଦ ଦାସ "ଗଙ୍ଗାଧର ପତ୍ରାବଳୀ" ସଂକଳନ କରିଥିଲେ। କବି ଗଙ୍ଗାଧରଙ୍କର ଜୀବନୀ ଓ ସାହିତ୍ୟ ସାଧନା ବିଷୟରେ ଜାଣିବା ପାଇଁ ଏହା ଏକ ମୂଲ୍ୟବାନ ଗ୍ରନ୍ଥ। ସ୍ୱଳ୍ପଶିକ୍ଷା, ଆର୍ଥିକ ଅସ୍ୱଚ୍ଛଳତା ଏବଂ ପ୍ରତିକୂଳ ସାମାଜିକ ପରିବେଶ ମଧ୍ୟରେ ସ୍ୱଭାବକବି ଗଙ୍ଗାଧରଙ୍କର ବ୍ୟକ୍ତିତ୍ୱ କିପରି ବିକଶିତ ହୋଇଥିଲା, ତାହା ପାଠ କଲେ ବିସ୍ମିତ ହେବାକୁ ହୁଏ। ବିଭିନ୍ନ କାବ୍ୟର ପରିକଳ୍ପନା ଅନ୍ତରାଳରେ କବିଙ୍କର କି ପ୍ରକାର ଆଭିମୁଖ୍ୟ ଥିଲା ତାହା ମଧ୍ୟ ଏଥିରୁ ଅନୁମିତ ହୁଏ।

ପରବର୍ତ୍ତୀ କାଳରେ ପତ୍ରପତ୍ରିକାରେ ଫକୀରମୋହନ, ଚିନ୍ତାମଣି ମହାନ୍ତି, ନନ୍ଦକିଶୋର ବଳ ପ୍ରଭୃତି କବିମାନଙ୍କର ଅଳ୍ପ କିଛି ପତ୍ର ପ୍ରସଙ୍ଗକ୍ରମେ ଲୋକଲୋଚନକୁ ଆସିଅଛି। ମାତ୍ର ସେମାନଙ୍କର ପତ୍ରାବଳୀର ଏକ ବୈଜ୍ଞାନିକ ସଂକଳନ ଆଜି ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ।

୧୯୬୯ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗତ କବି ମୁରାରୀ ମୋହନ ଜେନା 'ପ୍ରଣୟ ପତର' ଶୀର୍ଷକରେ ଜଣେ ମହିଳାଙ୍କର କେତୋଟି ଚିଠି ସଂକଳନ କରିଥିଲେ। ପୁସ୍ତକର ମୁଖବନ୍ଧରେ ଶ୍ରୀ ମୁରାରୀ ମୋହନ ଲେଖିଥିଲେ - "ଏହି ପତ୍ରଗୁଡ଼ିକ କାଳ୍ପନିକ ନୁହନ୍ତି। ଏଗୁଡ଼ିକ ଏକ ନିଷ୍ପାପ ଉତ୍ସାହପୂର୍ଣ୍ଣ ଓ ଉଚ୍ଚ ଆଦର୍ଶମୟ କିଶୋରୀ ପ୍ରାଣର ଅନାବିଳ ଅଭିବ୍ୟକ୍ତି। ପ୍ରାୟ ୩୦।୩୫ ବର୍ଷତଳେ ନବବିବାହିତା ଏକ କିଶୋରୀ ଦୂର ପ୍ରବାସରୁ ତାଙ୍କ ତରୁଣ ସ୍ୱାମୀଙ୍କ ପାଖକୁ ଏ ପତ୍ରଗୁଡ଼ିକୁ ମଝିରେ ମଝିରେ ଲେଖିଥିଲେ। +++ ପତ୍ରଦାତ୍ରୀ ଓ ପତ୍ରପ୍ରାପ୍ତ ଉଭୟେ ସମଗ୍ର ଉତ୍କଳ ଭାଷାଭାଷୀ ରାଜ୍ୟରେ ଆଜି ଲବ୍ଧପ୍ରତିଷ୍ଠ ଓ ସ୍ୱଚ୍ଛଳ ସଂସାରରେ ଗୋସେଇଁ ବାପ ଓ ଗୋସେଇଁ ମା' ହୋଇ ସାରିଲେଣି (ପତ୍ରଦାତ୍ରୀ ଓ ପତ୍ରପ୍ରାପ୍ତ ଉଭୟଙ୍କର ନାମକୁ ଗୋପନ ରଖି) । ପାରିବାରିକ ଗୋପନୀୟତା ଭିତରୁ ଏହି ପତ୍ରଗୁଡ଼ିକୁ କୌଣସି ମତେ ଭିଡ଼ିଆଣି ପରିବେଷଣ କଲୁ। ଆଶା କରୁଛୁ ଯେ ଅନେକ ଦାମ୍ପତ୍ୟଜୀବନ ଏହି ପତ୍ରାବଳୀରୁ ଶାନ୍ତିମୟ ଜୀବନ ପାଇଁ ଗଭୀର ପ୍ରେରଣା ପାଇବେ।"

ଆଲୋଚ୍ୟ ପତ୍ରଗୁଡ଼ିକ ୧୯୩୩ ମସିହାରେ ଲେଖାଯାଇଥିଲା।

ଜଣେ ସ୍ୱଳ୍ପଶିକ୍ଷିତା ତରୁଣୀ ବଧୂ ତାଙ୍କର ତରୁଣ ଉଚ୍ଚଶିକ୍ଷିତ ସ୍ୱାମୀଙ୍କୁ କିପରି ପତ୍ର ମାଧ୍ୟମରେ ସହକର୍ମିଣୀ ଓ ସହଧର୍ମିଣୀର ଭୂମିକା ନିର୍ବାହ କରିଥିଲେ, ତାହାର କେତୋଟି ଉଦାହରଣ ଏହିପରି।

ପ୍ରିୟ ପୁରୁଷଲାଗି ଦାରିଦ୍ର୍ୟକୁ ହସି ହସି ବରଣ କରିବାକୁ ଗୋଟିଏ ପତ୍ରରେ ଉଲ୍ଲେଖ ରହିଛି - "ପ୍ରିୟ, ତମେ ଏତେ ବ୍ୟସ୍ତ ହେଉଛ କାହିଁକି ? ଆମର

ଆଦିପୁରୁଷମାନେ ଯେପରି ଭାବରେ କାଳ କାଟିଥିଲେ, ଆମେ ସେହିପରି କାଳ କାଟିବା। ତମେ ଟିକେ ଶିକ୍ଷିତ ହେଲ ବୋଲି ଯେ ସହରରେ ରହିବ ଆଉ ପରର ଗୋଲାମି କରିବ, ଏପରି ତ କୌଣସି କଥା ନାହିଁ। ମୁଁ ଯେବେ ଗାଁରେ ରହିପାରେ, ତେବେ ଖୁବ୍ ଆନନ୍ଦର କଥା ହେବ। ଏହି ପଖାଳଖିଆ ଲୋକ ତ କୋଣାର୍କ ଗଢ଼ିଛନ୍ତି ? ଅନ୍ୟମାନେ ଯେତେ ସୁଖରେ ରହନ୍ତି, ମୋର ସେଥିରେ ଯାଏ କେତେ ଆସେ କେତେ। ମୋର ପିଲାମାନେ ଯେତେ ଦୁଃଖରେ ବଢ଼ିଲେ ସୁଦ୍ଧା ଜଗତରେ କୌଣସି ନା କୌଣସି ଉପକାର କରିପାରିବେ। ଦେଖିବ, ମୋର ପିଲାମାନେ କେବେ କଷ୍ଟ ପାଇବେନି। ମୁଁ ସେମାନଙ୍କୁ ଧାନକୁଟି ମଣିଷ କରିପାରେ।''

ଆଉ ଗୋଟିଏ ଚିଠି -

''ମୁଁ ତୁମକୁ ପାଇ ଏତେ ସୁଖୀ ହୋଇଛି ଯେ ଯଦି ରାଜପୁତ୍ରକୁ ବିବାହ କରିଥାନ୍ତି, ତେବେ ଏ ସୁଖ ମୋତେ ଦୁର୍ଲଭ ହୋଇଥାନ୍ତା।''

ଅନ୍ୟ ଏକ ଚିଠି -

''ରୁହ, ଦୁଃଖମୟ ଜୀବନ ନିଶ୍ଚୟ ସୁଖମୟ ହେବ ଆମର। ଯେତେ ଶୀତ ହେଲେ ମଧ୍ୟ ତାପରେ ଯେପରି ମଳୟ ଆସେ, ସେହିପରି ହେବ। ଏଥିରେ କ'ଣ ସନ୍ଦେହ ଅଛି ?''

ଆଉ ଏକ ଚିଠି -

'' ମୁଁ ତ କହୁଛି ତୁମେ ଯଦି ହଳ କର, ତେବେ ମୁଁ ନିଃସଙ୍କୋଚରେ ବିଲକୁ ଭାତ ନେଇ ଯିବି।''

ସେହି ପୁରୁଷ ନିଶ୍ଚୟ ଅତ୍ୟନ୍ତ ଭାଗ୍ୟବାନ ଯେ କି ଏହିଭଳି ଜଣେ ଅମୃତୋପମ ମହିଳାଙ୍କର ସହଯାତ୍ରୀ ହୋଇପାରିଛନ୍ତି।

ଏଥର ଆସନ୍ତୁ ସୁଲେଖକ ଶ୍ରୀ ନଟବର ଖୁଣ୍ଟିଆଙ୍କ ସଂକଳିତ ଚିଠି ଗୁଡିକର ଆକଳନ କରିବା। ଏହି ଚିଠି ଗୁଡିକର ଲେଖକ ହେଉଛନ୍ତି ତରୁଣ ବୟସର ମାୟାଧର ମାନସିଂହ, ଯେ କି ପରବର୍ତ୍ତୀ ଜୀବନରେ କବି ଓ ଶିକ୍ଷାବିତ୍ ମାନସିଂହ ଭାବରେ ଓଡିଶାର ଶିକ୍ଷିତ ଓ ବୁଦ୍ଧିଜୀବୀ ମହଲରେ ଅତ୍ୟନ୍ତ ସମ୍ମାନିତ ଓ ସୁପରିଚିତ ।

ମାୟାଧର ମାନସିଂହ ଚିଲିକା ମଧ୍ୟରେ ଏକ ଦ୍ୱୀପରେ ନନ୍ଦଳା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବାଳୁତ ବୟସରେ ପିତାମାତାଙ୍କୁ ହରାଇ ସେ ହୋଇଥିଲେ

ଅତ୍ୟନ୍ତ ଅସହାୟ । ମାତ୍ର ଉଚ୍ଚ ଅଭିଳାଷ ଓ ଜୀବନବ୍ୟାପୀ ସାଧନା ତାଙ୍କୁ ଏକ ବିରାଟ ସାରସ୍ୱତ ବ୍ୟକ୍ତିତ୍ୱରେ ପରିଣତ କରିଥିଲା । ନିଜକୁ ସମାଜରେ ପ୍ରତିଷ୍ଠିତ କରିବା ପାଇଁ ସେ ଦାରିଦ୍ର୍ୟ ସହିତ ସାଲିସ କରି ନଥିଲେ । ଓଡିଶାର କତିପୟ ହୃଦୟବାନ ବ୍ୟକ୍ତିଙ୍କଠାରୁ ଟଙ୍କା କରଜ କରି ସେ ଯାଇଥିଲେ ଇଂରେଜଙ୍କ ରାଜ୍ୟରେ ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀ ହାସଲ କରିବା ପାଇଁ। ପରିଶେଷରେ ଡରହାମ ବିଶ୍ୱବିଦ୍ୟାଳୟରୁ ସେକ୍ସପିୟର ଓ କାଳିଦାସଙ୍କ ମଧ୍ୟରେ ତୁଳନାତ୍ମକ ଅଧ୍ୟୟନ କରି ପିଏଚ୍.ଡି. ଡିଗ୍ରୀ ହାସଲ କରିଥିଲେ। ବିଲାତ ପ୍ରବାସ କାଳରେ ଦାରିଦ୍ର୍ୟର ତୀବ୍ର କଷାଘାତ ତାଙ୍କୁ କିପରି ଅନେକ ସମୟରେ ନୈରାଶ୍ୟର ଗହ୍ୱର ମଧ୍ୟକୁ ଠେଲି ଦେଉଥିଲା, ନବୋଢ଼ା ତରୁଣୀ ପତ୍ନୀଙ୍କୁ ଚିଠି ମାଧ୍ୟମରେ ସେ ବାରମ୍ବାର ତାହା ପ୍ରକାଶ କରିଛନ୍ତି। ଏଠାରେ କେତୋଟି ଉଦାହରଣ ଏହିପରି -

''ମୁଁ କେବେହେଲେ ଭୁଲିଯାଉଛି ଯେ ମୋର ବର୍ତ୍ତମାନର ଏ ପ୍ରବାସ, ଏ ଅଧ୍ୟୟନ, ଏ ଅର୍ଥକଷ୍ଟ - ସବୁ ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ, କେବଳ ସମାଜରେ ଟିକିଏ ସ୍ଥାନ ପାଇବା ପାଇଁ । ଏଇତକ ପାଇବା ଲାଗି ମୋର ଜୀବନର ଅଧେ କଟିଗଲା । ଏଠୁ ଫେରିଲେ କରଜ ଶୁଝୁ ଶୁଝୁ ଜୀବନର ଆର ଅଧକ କଟିଯିବ । ଏସବୁ କଥା ଯେତେବେଳେ ଭାବେ, ଏ ଜୀବନ ପ୍ରତି ମୋର ବିତୃଷ୍ଣା ଆସେ । ଭଗବାନ, ଦେଶ, ଜୀବନ, ସୁଖ-ଭୋଗ - ଏସବୁ ଅର୍ଥହୀନ ହୋଇଯାଏ ।'' (ଚିଠି - ୦୨.୦୫.୧୯୩୮)

ନିଜର ଦୈନନ୍ଦିନ ଗୁଜୁରାଣ ମେଣ୍ଟାଇବା ପାଇଁ ସେ ବିଲାତରେ ଓଡିଶାର ଚିତ୍ରପୋଥି ବିକ୍ରି କରି କିଛି ଅର୍ଥ ସଞ୍ଚୟ କରିଥିଲେ । ନଚେତ ସେଠାରେ ଚଳିବା ଅସମ୍ଭବ ହୋଇଥାନ୍ତା । ୧୪.୦୨.୧୯୩୯ ମସିହା ଚିଠିରେ ସେ ସ୍ତ୍ରୀଙ୍କୁ ଜଣାଇଥିଲେ - ''ବ୍ରିଟିଶ୍ ମିଉଜିୟମରୁ ପୋଥିଟି ପାଇଁ ୩୫ ପାଉଣ୍ଡ ମିଳିବ ବୋଲି ଆଜି ପତ୍ର ପାଇଲି । ୩୫ ପାଉଣ୍ଡ ତ ୫୦୦ ଟଙ୍କା । ମୁଁ ଅଧିକା ପାଇବି ବୋଲି ଆଶା କରିଥିଲି । କିନ୍ତୁ ମୋର ଏ ଅର୍ଥାଭାବ ବେଳେ ଯାହା ମିଳିଲା ତାହା ହିଁ ଭାଗ୍ୟର କଥା ବୋଲି ଭାବି ରାଜି ହେଉଛି । ଏ ଟଙ୍କାଟା ମତେ ବଡ ହିମତ୍ ଓ ଆଶା ଦେଉଛି । ଯିବା ଆସିବା ବେଳକୁ ମନଟାକୁ ବେଶ୍ ପ୍ରଫୁଲ୍ଲ ରଖାଇବାରେ ସାହାଯ୍ୟ କଲା ।''

ଏଥିରୁ ଜଣାଯାଉଛି, ବିଲାତରୁ ଫେରିଆସିବା ପାଇଁ ମଧ୍ୟ ସେ ଅର୍ଥକଷ୍ଟର ସମ୍ମୁଖୀନ ହୋଇଥିଲେ ।

ବିଲାତ ପ୍ରବାସ କାଳରେ ସେ ସର୍ବଦା ଅଭାବର ତାଡନାରେ ବ୍ୟସ୍ତ ହୋଇ ପଡୁଥିଲେ । ନିଜର ଭବିଷ୍ୟତ ବିଷୟରେ ସେ ଆସ୍ଥାପୋଷଣ କରିପାରୁ ନଥିଲେ ।

୦୮.୦୭.୧୯୩୮ ମସିହା ଚିଠିରେ ସେ ତାଙ୍କର ପତ୍ନୀଙ୍କୁ ଏହି ଦୁଃଖର ବେଦନା ଜଣାଇଥିଲେ ।

"କାଲି ହିସାବ କରି ଦେଖିଲି, ସବୁ ସବୁ ହୋଇ ପ୍ରାୟ ପାଞ୍ଚହଜାର ଟଙ୍କା ମତେ ଶୁଝିବାକୁ ହେବ । ଅବଶ୍ୟ ସାହୁକାରଙ୍କ ଭିତରେ ବେହୁରାବଂଶ ଓ ନନ୍ଦଳାର ବିଶେଇଘର ମଧ ଗଣା ହୋଇଛନ୍ତି । ଗଲେ ଚାକିରି କରିବି, କେତେ ଟଙ୍କା ପାଇବି ଓ କିପରି ଶୁଝିବି । ଦେଖୁଚି ଚାକିରି ମିଳିଲା ପରେ ମଧ ଅନେକବର୍ଷ ଧରି ଆମକୁ ଏଇ ଦୁଃଖଦାରିଦ୍ର୍ୟ ମଧଦେଇ ଚଳିବାକୁ ହେବ ।"

୧୫.୦୭.୧୯୩୮ ତାରିଖ ଚିଠିରେ ମଧ ଲେଖିଛନ୍ତି - "ଏ ଦେଶକୁ ଆସିଲାଦିନୁ ଦାରିଦ୍ର୍ୟ ଯୋଗୁଁ ମୁଁ କେତେ ଅପମାନ, କେତେ ଦୁଃଖ, କେତେ ବିଡମ୍ବନା ସହିଛି, ତା ତମେ ଅନୁମାନ କରିପାରିବନି । କେତେ ଅଶ୍ରୁତ୍ୟାଗ କରିଛି ତା ତମେ ଜାଣିପାରିବନି ।"

୨୮.୦୪.୧୯୩୮ ତାରିଖ ଚିଠରେ ମାନସିଂହ କେତେ ବିକଳ ହୋଇ ଲେଖିଛନ୍ତି-

"ମନ ବଡ ବ୍ୟସ୍ତ ହେଉଛି । ଟଙ୍କା ପାଇଁ ହାତଗୋଡ ବାନ୍ଧି ବସିଛି । କେତେ ଆଡେ ଯାନ୍ତି, କେତେ କଥା ଦେଖନ୍ତି । କେମିତି ଯିବି ? ବାଧ ହୋଇ ମତେ ଚାଉଳ-ପରିବା ସିଝେଇ ଖାଇ ଏଇଠି ପଡି ରହିବାକୁ ହେଉଛି । ଏଥିରୁ ତୁ ମୋର ମାନସିକ ଅବସ୍ଥା ବୁଝିପାରିବୁ ।"

ବିଲାତ ପ୍ରବାସରେ ଥାଇ ସୁଦ୍ଧା ସେ ସର୍ବଦା ତାଙ୍କ ଦେଶକୁ ଝୁରି ହେଉଥିଲେ । ସେତେବେଳେ ଅନେକ ଭାରତୀୟ ଛାତ୍ର ସ୍ବପ୍ନ ଦେଖୁଥିଲେ, ଯଦି କୌଣସି ପ୍ରକାରେ ବିଲାତମାଟିରେ ଚାକିରି ମିଳିଯାଏ ତେବେ ସେମାନେ ଦେଶକୁ କେବେ ଫେରିବେ ନାହିଁ । କିନ୍ତୁ ମାନସିଂହ ଥିଲେ ଏକ ବ୍ୟତିକ୍ରମ । ୦୨.୦୫.୧୯୩୮ ସାଲ ଚିଠିରେ ଲେଖିଥିଲେ - "ମୁଁ କହେ, ମତେ କୋଟିଏ ଟଙ୍କା ଦେଲେ ବି ମୁଁ ଏଠି ରହିବିନି । ମୁଁ ମୋ ଦେଶର କୁଡିଆ ଘରକୁ ଚାଲିଯିବି ।"

ବିଲାତରେ ଲୋକମାନେ ଅତ୍ୟନ୍ତ କର୍ମଠ । ଅଳସ୍ୟ କ'ଣ ଜାଣନ୍ତି ନାହିଁ । ସମସ୍ତେ ନିଜ କାର୍ଯ୍ୟରେ ବ୍ୟସ୍ତ । ମାତ୍ର ଓଡିଆ ଲୋକଙ୍କ ସ୍ୱଭାବକୁ ନାପସନ୍ଦ କରି ଥରେ ଲେଖିଥିଲେ - "ଓଡିଶା ଦେଶରେ ସାହାଯ୍ୟ ଦେବାର ବା ଉତ୍ସାହ ଦେବାର ଲୋକ ସିନା ନାହାନ୍ତି, ତାଳି ମାରିବାକୁ, ଉପହାସ କରିବାକୁ, ପଛକୁହା କରିବାକୁ ଲୋକର ତ ଅଭାବ ନାହିଁ ।" (ଚିଠି- ୦୩.୦୬.୧୯୩୮)

ସେ ଦୂରପ୍ରବାସରେ ଥାଇ ମଧ୍ୟ ସର୍ବଦା ନିଜ ଦେଶର ସୁଖ ଦୁଃଖର ଖବର ରଖୁଥିଲେ ଏବଂ ଅନେକ ସମୟରେ ଶାସନକଳର ବିମୁଖତା ପାଇଁ ଭୀଷଣ ପ୍ରତିକ୍ରିୟା ପ୍ରକାଶ କରୁଥିଲେ । ପରାଧୀନ ଭାରତବର୍ଷରେ ୧୯୩୫ ଶାସନ ଖସଡା ଅନୁଯାୟୀ ନିର୍ବାଚନ ହୋଇ ଓଡିଶାରେ କଂଗ୍ରେସ ମନ୍ତ୍ରି ମଣ୍ଡଳ ଶାସନ ଦାୟିତ୍ୱରେ ଥିଲେ । ତାଙ୍କ ଗାଁର ଦୁର୍ଭିକ୍ଷ ବିଷୟ ଶୁଣି ମାନସିଂହ ନିଜ ପତ୍ନୀକୁ ଲେଖିଥିଲେ - ''ଦାଦା ଲେଖୁଛନ୍ତି, ଅନେକେ ଗାଁ ଛାଡି ପଳେଇଲେଣି । କେତେକ ଅନାହାରରେ ମଲେଣି । ମୁଁ ଗଲାବେଳକୁ ବୋଧହୁଏ ଗାଁ ଶ୍ମଶାନ ହୋଇ ଯାଇଥିବ । ମୋର ହୃଦୟ ବାସ୍ତବିକ ଫାଟି ଯାଉଛି । କଂଗ୍ରେସ ଶାସନ ନ ନେଇଥିଲାବେଳେ ଏପରି ଘଟଣା ଘଟିଥିଲେ ଦେଖିଥାନ୍ତ ଚିତ୍‌କାର, ବିଦେଶୀ ସରକାର ଉପରେ ଗାଳିବର୍ଷଣ, ଦେଶବ୍ୟାପୀ ଆନ୍ଦୋଳନ । ଆଜି କଂଗ୍ରେସ ଅଧିକାର । ମର ।'' (ଚିଠି - ତା ୦୩.୧୨.୧୯୩୮)

ତାଙ୍କର ଗାଁକୁ ସେ ଆନ୍ତରିକ ଭଲ ପାଉଥିଲେ । ସ୍ୱପ୍ନ ଦେଖୁଥଲେ ଭବିଷ୍ୟତରେ ଗାଁର ପ୍ରକୃତି କୋଳରେ ଜୀବନ ବିତାଇବା ପାଇଁ । ସେତେବେଳେ ତାଙ୍କର ପ୍ରଥମ ସନ୍ତାନ ପୃଥିବୀକୁ ଆସିଥାଏ । ତାକୁ ସ୍ମରଣ କରି ମାନସିଂହ ଲେଖିଥିଲେ - ''କଥା ଯଦି ପରିଷ୍କାର କହିଲାଣି, ତେବେ ଗାଉଁଲି ଗୀତ ସବୁ ତାକୁ ଶିଖାଅ । ମୋର ଇଚ୍ଛା ପ୍ରଥମ ପାଞ୍ଚବର୍ଷ ସେ ପଲ୍ଲୀରେ ରହିବ । ଏତେ ପିଲାବୟସରୁ ଟାଉନରେ ବଢ଼େଇବା ଆଦୌ ଉଚିତ ନୁହେଁ - ଯେତେବେଳେ ଆମର ପଲ୍ଲୀରେ ଘର । ପଲ୍ଲୀରେ ବଢ଼ିଲେ ଲାଲୁ ଦିନେ ବଡଲୋକ ହେଲେ ତା'ର ପିଲାଦିନର ଗାଁ ସାଙ୍ଗମାନଙ୍କୁ ମନେ ପକେଇବ; ତାଙ୍କର କିଛି ଉପକାର କରିପାରେ - ଟାଉନରେ ବଜାରସାଙ୍ଗ ସିନା ଜୁଟିବେ ।'' (ଚିଠି- ତା୧୧.୦୩.୧୯୩୯)

ପୁତ୍ର ସ୍ନେହରେ ବିହ୍ୱଳିତ ମାନସିଂହ ସ୍ତ୍ରୀଙ୍କୁ ଲେଖିଥିଲେ ୧୮.୦୭.୧୯୩୮ ଚିଠିରେ - ''ପୁତ୍ରକନ୍ୟା ମନୁଷ୍ୟ ବଂଶକୁ ବିସ୍ତାରିତ କରନ୍ତି । ଲୟେଇ ଦିଅନ୍ତି ବୋଲି ତାଙ୍କର ନାମ ସନ୍ତତି । ତୋର ଓ ମୋର ଦୁଇ ଜୀବନ ବର୍ତ୍ତମାନ ଲଲାଟେନ୍ଦୁ ଠାରେ ପ୍ରତିବିମ୍ବିତ । ମୋର ଲଲାଟେନ୍ଦୁ ଯଶ ଗୌରବରେ ମତେ ନ୍ୟୂନ କରୁ, ଏହା ହିଁ ମୋର ଆଶୀର୍ବାଦ ।''

ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ମାନସିଂହଙ୍କର ଏହି ଆଶୀର୍ବାଦ ଓ ଅଭିଳାଷ ଆଜି ସାର୍ଥକ ହୋଇଛି । ଲଲାଟେନ୍ଦୁ ବର୍ତ୍ତମାନ କାନାଡାରେ ଅବସ୍ଥାପିତ ଏବଂ ଜଣେ ବିଖ୍ୟାତ ବୈଜ୍ଞାନିକ ।

୧୯୩୮ ସାଲ ଚିଠି ନମ୍ବର-୩୨ରେ ମାନସିଂହ ଯେଉଁ ସ୍ୱପ୍ନ ଦେଖିଥିଲେ ଦେଶ ବିଷୟରେ, ତାଙ୍କର ସେହି ଆଶଙ୍କା ଆଜି ଅତି ଭୟଙ୍କର ରୂପରେ ପ୍ରତିଭାତ

ହେଉଛି । ପରାଧୀନ ଭାରତର ଜଣେ ଓଡିଆ ଯୁବକ ବିଲାତ ପ୍ରବାସରେ ଥାଇ ଲେଖିଥିଲେ - ''ଗାନ୍ଧିଙ୍କ ପରେ କଂଗ୍ରେସର ସବୁ ଗଳତି ବାହାରକୁ ବାହାରିବ ବୋଧେ ! ଆମର ଦଳେ ଲୋକ ଦରକାର ଯେକି କୌଣସି ଦଳର ହେବେନି, ଅଥଚ ସତ୍ୟ ଉପରେ ନ୍ୟାୟ ଉପରେ ଠିଆ ହୋଇ ଦେଶର, ଜନସାଧାରଣଙ୍କର କଥା ସବୁବେଳେ ଆଖି ଆଗରେ ରଖିବେ । ମୁଁ ଯଦି ମୋ ଜୀବନରେ ସାମାନ୍ୟ ଭାବରେ ଏତିକି କରିପାରେ, ତେବେ ଜାଣିବି ମୋର ଜୀବନଟା ବୃଥା ହେଲାନି । ମୁଁ ସେ ଦିଗରେ ଉପଯୁକ୍ତ ହେବାପାଇଁ ଏଠି ପ୍ରତିଦିନ ନିଜକୁ ଯୋଗ୍ୟ କରାଉଛି ।''

ସତେ ଯେପରି ଜଣେ ଦୂରଦ୍ରଷ୍ଟା ପରି ମାନସିଂହ ଏ କଥାଟି ଚିନ୍ତା କରିଥିଲେ ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ପରାଧୀନ ଭାରତରେ । ଆଜି ଗାନ୍ଧିଜୀ ନାହାନ୍ତି । କଂଗ୍ରେସ ଅନୁଷ୍ଠାନର ଦୁର୍ଗତି ଆଜି ସର୍ବତ୍ର ଚର୍ଚ୍ଚାର ବିଷୟବସ୍ତୁ ହୋଇ ଯାଇଛି ।

ବିଲାତ ଦେଶର ନିଃସଙ୍ଗତା ମାନସିଂହଙ୍କୁ ବିଚଳିତ କରିଥିଲା । ଗ୍ରାମରେ ଯେପରି ପରସ୍ପର ମଧ୍ୟରେ ଆତ୍ମୀୟତା ବିରାଜମାନ, ତାହା ନଗର ଜୀବନରେ ସ୍ୱପ୍ନପ୍ରାୟ । ନଗର ଜୀବନରେ କେହି କାହାର ଖବର ରଖନ୍ତି ନାହିଁ ।

ତେବେ ବିଲାତର ପ୍ରାକୃତିକ ଶୋଭା ମାନସିଂହଙ୍କୁ ମୁଗ୍ଧ କରିଥିଲା । ଦୂର ଦେଶରେ ଆମର ପ୍ରାକୃତିକ ସମ୍ପଦର ଦୁର୍ଦ୍ଦଶା ସ୍ମରଣ କରି ଦୁଃଖିତ ହେଉଥିଲେ । ୦୮.୦୬.୧୯୩୮ ତାରିଖ ଚିଠିରେ ସେ ଲେଖିଥିଲେ - ''ପୃଥିବୀ ବସନ୍ତର ପରିପୂର୍ଣ୍ଣ ସମ୍ଭାରରେ ମଣ୍ଡିତ । ସମସ୍ତ ଇଂଲଣ୍ଡ ବର୍ତ୍ତମାନ ଏକ ପ୍ରକାଣ୍ଡ ବଗିଚା । +++ କି ପଲ୍ଲୀଶ୍ରୀ । ନଦୀ, ପର୍ବତ, ଉପତ୍ୟକା ସବୁଆଡେ ନବବସନ୍ତର ଶ୍ୟାମଳ ଆସ୍ତରଣ- ଗଛଲତା ଫୁଲରେ ମଣ୍ଡି ହୋଇଛନ୍ତି । ସମଗ୍ର ପୃଥିବୀ ବସନ୍ତ ସ୍ପର୍ଶରେ ଜାଗ୍ରତ । ଏମାନଙ୍କର ପ୍ରକୃତି ଆମ ପ୍ରକୃତି ଅପେକ୍ଷା ଅଧିକ ଶ୍ରୀଯୁକ୍ତା ଓ କରୁଣାମୟୀ । ଆମର ତ ବନ୍ୟା, ଦୁର୍ଭିକ୍ଷ, ଖରା ସଙ୍ଗେ ଲଢିଲଢି ଜୀବନ ଚାଲିଯାଉଛି । ପ୍ରାକୃତିକ ସୌନ୍ଦର୍ଯ୍ୟ ଭୋଗ କରିବାକୁ ତର କା'ର ଅଛି ।''

ବିଲାତ ଲୋକଙ୍କର ପଠନ ଅଭ୍ୟାସ ମାନସିଂହଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେଠାରେ ଜଣେ ଚମଡା ବ୍ୟବସାୟୀ ସହିତ ଆଳାପ କରି ଜାଣିଲେ, ତାଙ୍କ ଘରେ ଏକ ବିରାଟ ପୁସ୍ତକାଳୟ ଅଛି । ସେ ପୃଥିବୀର କଳା, ସାହିତ୍ୟ ବିଷୟରେ ଅଧ୍ୟୟନରତ ଏବଂ ଆଲୋଚନା କରି ଆନନ୍ଦିତ ହୁଅନ୍ତି । ଆମ ଦେଶରେ ଏହା କଳ୍ପନା କରାଯାଇ ପାରିବ ନାହିଁ ।

ମାନସିଂହଙ୍କର ପ୍ରତ୍ୟେକଟି ଚିଠିରେ ତାଙ୍କର ନବୋଢ଼ା ପତ୍ନୀ ପ୍ରତି ପ୍ରେମାନୁଭୂତି ଅଧିକ ବାରି ହୋଇପଡେ । ସାଧାରଣ ଭାରତୀୟ ପୁରୁଷ ପରି ମାନସିଂହ

କେବଳ ଲୀଳାସଙ୍ଗିନୀ ରୂପେ ଦେଖିବାକୁ କାମନା କରୁ ନଥିଲେ । ପ୍ରତ୍ୟେକ ନାରୀ ତା'ର ନିଜର ବ୍ୟକ୍ତିତ୍ୱ ବଳରେ ପ୍ରକାଶିତ ହେଉ, ଏହା ହିଁ ଥିଲା ତାଙ୍କର ଆନ୍ତରିକ କାମନା । ସେ ଥରେ ଲେଖିଥିଲେ - "ମୁଁ ଚାହେଁ ତମେ ତମର ଚରିତ୍ରର ମାଧୁର୍ଯ୍ୟରେ, ସାଧନାର ନିଷ୍ଠାରେ, ବ୍ୟକ୍ତିତ୍ୱର ଉଚ୍ଚତାରେ ଅନ୍ୟ ଦଶଜଣଙ୍କ ଦୃଷ୍ଟି ଓ ସମ୍ମାନ ଯେପରି ଆକର୍ଷଣ କର । ଏବଂ ମୁଁ ଚାହେଁନା ଯେ ତମେ ତମର ସମ୍ମାନ ପାଇଁ କେବେହେଲେ ଯେପରି ସ୍ୱାମୀର ପଦ ବା ଅର୍ଥ ଉପରେ ନିର୍ଭର କରିବ ।"

ଅତ୍ୟନ୍ତ ଆଶ୍ଚର୍ଯ୍ୟ ବିଷୟ ଯେ ଏକ ରକ୍ଷଣଶୀଳ ପରିବେଶରେ ପ୍ରତିପାଳିତ ମାନସିଂହ ସେକାଳରେ କିପରି ସାହସ କରିଥିଲେ ନିଜର ପତ୍ନୀକୁ ନୃତ୍ୟ ଓ ସଙ୍ଗୀତ ଶିକ୍ଷା ଦିଗରେ ଅଗ୍ରସର ହେବା ପାଇଁ । "ଧନରେ; ତୁ ଅଭିନୟ କରିବାକୁ ମୋର କୌଣସି ଆପତ୍ତି ନାହିଁ । ପ୍ରେମାଭିନୟ ବି କର । ତେବେ ମୋ ପକ୍ଷରେ ତ ସହଜ ନୁହେଁ ତାହା, ତୋତେ କ'ଣ କହିବି । କିନ୍ତୁ ଅଭିନୟ ସଙ୍ଗେ ସଙ୍ଗେ ତୁ ନୃତ୍ୟ ଶିଖ । ନୃତ୍ୟ ପାଇଁ ତୋର ଶରୀର ଗଢ଼ା ହୋଇଥିଲା ।"

(ଚିଠି- ତା ୦୯.୦୫.୧୯୩୮)

ମାନସିଂହଙ୍କ ପକ୍ଷରେ ଏହା ଥିଲା ଅତ୍ୟନ୍ତ ଦୁଃସାହସିକ ପଦକ୍ଷେପ । ସେତେବେଳେ ସମ୍ଭ୍ରାନ୍ତ ସମାଜ ଏହାକୁ ସମର୍ଥନ କରୁ ନଥିଲା । ଏହି ପ୍ରେରଣାର ଅନୁରୋଧରେ ପରବର୍ତ୍ତୀ କାଳରେ ମାନସିଂହ ତାଙ୍କର ପୁତ୍ରବଧୂ ସୋନାଲ ମାନସିଂହଙ୍କୁ ଓଡିଶୀ ନୃତ୍ୟ ଶିକ୍ଷା କରିବା ପାଇଁ ଆନ୍ତରିକ ସହାୟକ ହୋଇଥିଲେ ।

ପରିଶେଷରେ ଏହି ଚିଠିଗୁଡିକରୁ ମାନସିଂହଙ୍କର ପ୍ରେମ-ଦର୍ଶନ ବିଷୟରେ କିଛି ଆଲୋକପାତ କରାଯାଇଥାଏ । ସେ ଥରେ ଲେଖିଥିଲେ -

"ଚାଲିବା ସରମେ ଖୋଜି ଏ ସଂସାର ଭିଡେ,
ଜୀବନ ସଂଗ୍ରାମ କାଟି, ମିଥ୍ୟା ବ୍ୟଭିଚାର,
ଦାରିଦ୍ର୍ୟ ଲାଞ୍ଛନା ଦୁଃଖ ଦୌନ୍ୟ ଅବିଚାର,
ସମସ୍ତ ଜିଣିବା ଆତ୍ମ ଆତ୍ମାରେ ମିଶାଇ,
ଦୁର୍ଦ୍ଦିନ କାଟିବା ପରସ୍ପର ମୁଖ ଚାହିଁ । (ଜୀବନ ପଥ)

କବି ମାନସିଂହ ଆଜୀବନ ବିଶ୍ୱାସ କରୁଥିଲେ - "Love rules the court, the camp, the grove' And men below and saints above, For love is heaven and heaven is love." (Scott)

ନିଜର ପ୍ରଣୟିନୀ ପତ୍ନୀଙ୍କୁ ଏକ ଚିଠିରେ ପ୍ରବାସରୁ ଲେଖିଥିଲେ ମାନସିଂହ -

Dear Hema

I love you, I love you better than I ever loved you before. You are a great girl. I have not treated you well. I beg you pardon for that. I hope I shall make you forget the past by loving you still better and better, good bye.

ପ୍ରତ୍ୟାଶା ପ୍ରେମକୁ ଗୌରବାନ୍ୱିତ କରେ ନାହିଁ । ମାନସିଂହଙ୍କ ଭାଷାରେ - "ତମେ ତ ସ୍ନେହ କର - ଆଶା କର କାହିଁକି ? ବିନା ଆଶାରେ ଯେତେବେଳେ ସ୍ନେହ ଦେଇ ଶିଖିବ, ସେତେବେଳେ କେବଳ ଯେ ତମେ ସ୍ନେହ ଫେରି ପାଇବ ତାହା ନୁହେଁ, ତମେ ସେତେବେଳକୁ ଦେବୀ ପାଲଟି ଯାଇଥିବ ।" (ଚିଠି- ତା ୧୩.୧୨.୧୯୩୮)

ଗୋଟିଏ କବିତାରେ କବି ମାନସିଂହ ପ୍ରେମର ଆଦର୍ଶ ପ୍ରଖ୍ୟାପନ କରି ଲେଖିଥିଲେ-

"ପ୍ରେମ ନୁହେଁ ଦେହ-ଦେହୁଁ ଭୋଗ ଅନ୍ୱେଷଣ
ପ୍ରେମ, ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ ।
ପ୍ରେମ ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ ଆନ ପାଇଁ ଦେବା ନିଜକୁ ହଜାଇ ।
ନୈରାଶ୍ୟ କଷଣ ଅଶ୍ରୁ ସାଥୀ ପ୍ରଣୟର
ପ୍ରେମିକ ପ୍ରେମିକା ପୋଛେ ଅଶ୍ରୁ ଅନ୍ୟୋନ୍ୟର ।"

'ହେମପତ୍ର'ରେ ପ୍ରକାଶିତ ପତ୍ରଗୁଡିକରେ ମାନସିଂହଙ୍କ ଆଦର୍ଶ ପ୍ରେମାନୁଭୂତି ଏବଂ ଏକ ବିକଶିତ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ସମ୍ଭାବନା ଲକ୍ଷ୍ୟ କରାଯାଇଥାଏ । ମାନସିଂହଙ୍କ କାବ୍ୟାନୁଭୂତି ଓ ଜୀବନ-ଦର୍ଶନ ଅଧ୍ୟୟନରେ ଏହି ପତ୍ରଗୁଡିକ ଅତ୍ୟନ୍ତ ସହାୟକ ହେବ ବୋଲି ଆଶା କରାଯାଏ ।

ଅଗଷ୍ଟ ୦୧, ୨୦୦୨
କଟକ

**ପଠାଣି ପଟ୍ଟନାୟକ**
ସଭାପତି, ଓଡିଶା ସାହିତ୍ୟ ଏକାଡେମୀ

# ସୂଚୀପତ୍ର

## ଫଟୋ ପରିଚୟ

**ବ୍ୟାକ୍ କଭର୍ :** **ପ୍ରଥମ ଚିତ୍ର** (ବାମରୁ ଡାହାଣ) : କବିଙ୍କ ପତ୍ନୀ ହେମଲତା, ହେମଲତା, ନାତି ଆଦିତ୍ୟ (ଲଳିତଙ୍କ ପୁତ୍ର), ମଧ୍ୟମ ପୁତ୍ର ଲଳିତ

**ଦ୍ୱିତୀୟ ଚିତ୍ର** (ବାମରୁ ଡାହାଣ) : **ପ୍ରଥମ ଧାଡ଼ି** - ନାତି ଆଦିତ୍ୟ, ନାତୁଣୀ ପଲ୍ଲବୀ, (ଲଳିତଙ୍କ କନ୍ୟା), ନାତୁଣୀ ଲୀନା (ଲଲାଟେନ୍ଦୁଙ୍କ କନ୍ୟା), ଜ୍ୟେଷ୍ଠ ପୁତ୍ର ଲଲାଟେନ୍ଦୁ ।

**ଦ୍ୱିତୀୟ ଧାଡ଼ି** : ପତ୍ନୀ ହେମଲତା, ମଧ୍ୟମ ପୁତ୍ର ଲଳିତ, ବୋହୂ ଇନ୍ଦିରା (ଲଳିତଙ୍କ ପତ୍ନୀ)

ଫ୍ରଣ୍ଟ କଭର୍ ଓ ବ୍ୟାକ୍ ଇନର୍‌ରେ କବି ମାନସିଂହ ଓ ପତ୍ନୀ ହେମଲତାଙ୍କ ଫଟୋ ୧୯୩୦ ଦଶକର ।



୧୯୩୦ ଦଶକରେ କବି ମାନସିଂହ ଓ ପତ୍ନୀ ହେମଲତା

## ଏକ

# ଏହି ବେଳାଭୂମିରେ ସୀତା ବିରହିତ ରାମ

Victoria Hotel
Colombo
24.8.37

ପ୍ରାଣର ଲକ୍ଷ୍ମୀ

ଏଠି ଆସି ଆଜି ସକାଳ ୭ଟାରେ ପହଞ୍ଚିଲି । ଭିକ୍ଟୋରିୟା ହୋଟେଲରେ ଆଶ୍ରୟ ନେଲି । ଆଜି ଦିନକ ଓ କାଲି ଅଧଦିନେ ପାଇଁ ୬ ଟଙ୍କା ଦେବାକୁ ପଡିବ । ଶୁଣିଲି ଏହା ହିଁ ଏଠାରେ ଶସ୍ତା । କିନ୍ତୁ ସବୁପ୍ରକାର ବନ୍ଦୋବସ୍ତ ଅତି ଉତ୍ତମ । ଗୋଟେ ରୁମ୍ - ଗାଧୋଇବା, ଖାଇବା ସବୁ ଭଲ । ଗାଧୋଇ ସାରିଲା ପରେ ମତେ ଏତେ ଜିନିଷ breakfastରେ ଦେଲେ ଯେ ମୁଁ ଖାଇପାରିଲିନି । ଖାଇସାରି Thomas Cook ଓ ଅନ୍ୟ ସବୁ ବଡ ବଡ ବଜାରରେ ଘେରେ ବୁଲିଆସି ତମ ପାଖକୁ ଚିଠି ଲେଖୁଛି । ଲଫାପା ଏଇ ହୋଟେଲରେ ମିଳେ । (ନୂଆ ଟିକଟ ରାମକୁ ଦେବ)

ମାଡ୍ରାସରୁ ତମକୁ ବିପଦର କଥା ଲେଖିଥିଲି । ସେ ବିପଦ ଏଇ । ମାଡ୍ରାସଠି Thomas Cook Officeରେ ମୁଁ ଶୁଣିଲି ଯେ, Ceyloneକୁ 3rd classରେ ଯାଉଥିବା ଯାତ୍ରୀମାନଙ୍କୁ, ମଣ୍ଡପମ୍ ନାମକ ଷ୍ଟେସନରେ ଡାକ୍ତରୀ ପରୀକ୍ଷା ପାଇଁ ଅଟକାଇ ରଖନ୍ତି । ତେଣୁ ସେମାନେ ମତେ Trichinapolly ବା ତା'ପରେ Manamadurai ଷ୍ଟେସନଠି 3rd classରୁ Second classକୁ change କରିବାକୁ କହିଲେ । ଏତେଗୁଡିଏ ଜିନିଷପତ୍ର ଧରି ମୁଁ ଅପରିଚିତ ଜାଗାରେ କ'ଣ କରିବି ଏହା ହିଁ ଚିନ୍ତା ପଡିଲା । ଭାଗ୍ୟକୁ ମାଡ୍ରାସରେ ଗାଡି ଧରିବାବେଳେ ଜଣେ କନ୍‌ଷ୍ଟେବଲ୍ (ତାମିଲ) ମୋ କୋଠରିରେ ବସିଲା । ତ୍ରିଚନାପଲ୍ଲୀରେ ସେ ଓହ୍ଲେଇ ମୋ ପାଇଁ ସବୁ ବନ୍ଦୋବସ୍ତ କରିଦେବାକୁ ଆମର ଓଡିୟା ଭଦ୍ରଲୋକ ତାକୁ କହିଲେ । ତ୍ରିଚନାପଲ୍ଲୀରେ ସେ ସେତକ କରିଦେବାରୁ ମୁଁ ଆଶ୍ୱସ୍ତ ହେଲି । କିନ୍ତୁ ପରେ ଯାହା ଦେଖିଲି 2nd classରେ ବସି ମଧ ନିସ୍ତାର ନାହିଁ । କାରଣ ମଣ୍ଡପମ୍‌ଠାରେ ଆମ ସାଥିରେ ୨ଜଣ 2nd class ଯାତ୍ରୀଙ୍କୁ ମଧ ଅଟକାଇ ରଖାହେଲା - ମୁଁ କାହାକ ଧରିବି ବୋଲି ଜାଣିବା ପରେ ମୋ ପାଖରେ passport ଥିବାରୁ ମୁଁ ନିସ୍ତାର ପାଇଲି । ରେଳଗାଡି ମଣ୍ଡପମ୍ ଷ୍ଟେସନ ପାରହେଲେ, ଦୁଇ ପାଖରେ ନୀଳାମ୍ବୁ ବାରିଧିର ମହାନ୍ ଦୃଶ୍ୟ ଦେଖି ଦେଖି ଗୋଟେ ବାଲୁକାମୟ କ୍ଷୁଦ୍ର ଓ ଦୀର୍ଘ ଅନ୍ତରୀପ ମଧଦେଇ ଆମ୍ଭମାନଙ୍କୁ ଯିବାକୁ ହେଲା । ମଣ୍ଡପମ୍ ପରେ ରାମେଶ୍ୱର ଓ ତା'ପରେ ଧନୁଷୋଟୀ ଷ୍ଟେସନ । ଧନୁଷୋଟୀ ଏକାବେଳେକେ ସମୁଦ୍ର ଉପରେ । ଏହି ଭୂଖଣ୍ଡ ଉପରେ ଗତି କଲାବେଳେ ମୋର ହୃଦୟରୁ ସମସ୍ତ ଦୁଃଖ, ବିଷାଦ ଦୂରୀଭୂତ ହୋଇ ଅପୂର୍ବ ଉତ୍ସାହ ଓ ଆନନ୍ଦରେ ପୂରି ଉଠିଲା । ଏହାର ପ୍ରତ୍ୟେକ ଧୂଳିକଣା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର

ପଦପାତରେ ପବିତ୍ର । ଏହି ବେଳାଭୂମିରେ ସୀତା ବିରହିତ ରାମ ସମୁଦ୍ରବାରିରେ ନିଜର ନେତ୍ରବାରି ମିଶାଇ ଲଙ୍କାଆଡକୁ ପ୍ରଣୟିନୀ ଉଦ୍ଦେଶ୍ୟରେ ଆକୁଳଭାବେ ଦୀର୍ଘନିଶ୍ୱାସ ତ୍ୟାଗ କରିଥିବେ । ସମୁଦ୍ରକୁ ପାହାଡରେ ପୋତି ସେତୁ ବାନ୍ଧିବା ସାଧାରଣ ମନକୁ ଅସମ୍ଭବ ହୋଇପାରେ । କିନ୍ତୁ ଯେଉଁ ପୁରୁଷୋତ୍ତମ ଅନ୍ୟ ଏକ ଲୋକର ସତ୍ୟ ପାଇଁ ନିଜର ସବୁ ଭୋଗ, ସବୁ ଐଶ୍ୱର୍ଯ୍ୟ ତ୍ୟାଗକରି ବନବାସର କଷ୍ଟକୁ ବରଣ କରିଥିଲେ, ତାଙ୍କ ପକ୍ଷରେ ଅସମ୍ଭବ କିଛି ନୁହେଁ । ସେ ଅଦ୍ଭୁତକର୍ମା । ଆମ୍ଭେମାନେ ସେତୁବନ୍ଧନର ମର୍ମ କିଛିଟା ମଧ୍ୟ ବୁଝୁନା । ମୋ ମତରେ ତାହା ଏହି ଯେ, ସତ୍ୟ ଓ ପ୍ରେମ ସମୁଦ୍ରର ବ୍ୟବଧାନକୁ ମଧ୍ୟ ଅକ୍ଳେଶରେ ଅତିକ୍ରମ କରିପାରେ ।

ତୁମେ କି ବିଶ୍ୱାସ କରିବ ଯେ, ସେହି ଦୀର୍ଘ ଅନ୍ତରୀପରେ ଗତି କଲାବେଳେ ଓ ଏହି ସମସ୍ତଙ୍କ କଥା ଭାବୁଥିଲାବେଳେ ମୁଁ ତମରି କଥା ଭାବୁଥାଏ ? ମୁଁ ଫେରିଆସିଲେ ଓ ମୋର ଅର୍ଥ ହେଲେ ତମୁକୁ ଏ ଅଂଚଳ କିଛି ବୁଲେଇ ଆଣିବି । ଏହା ଦେଖିବାର ଜିନିଷ ।

ଧନୁଷୋଟୀଠାରେ ଛୋଟ ବୋଟ୍‌ରେ ଚଢ଼ିଲୁ । ଏଠାରେ ସମୁଦ୍ର ଅତ୍ୟନ୍ତ ଶାନ୍ତ । ମତେ ଚିଲିକାରେ ଗଲାପରି ଲାଗିଲା । ଗଣିଆ ଓ କୋକଲି ମାଛ ଦେଖିଲି । ସମୁଦ୍ରର ଏପଟେ, ସିଂହଳ ପଟେ, ଟାଲାଇ ମାନ୍ନାର, ସେଠି ଟ୍ରେନ୍ ଠିଆ ହୋଇଥାଏ । ଜାହାଜରେ ଜିନିଷପତ୍ର ଖାନତଲାସ ହେଲା । ମୋର କାଠବାକ୍ସ ମଧ୍ୟ ଫିଟା ହେଲା ଓ ଜିନିଷ ଦେଖି ବନ୍ଦ କରି ଦିଆଗଲା । ମତେ କୌଣସି duty ଦେବାକୁ ପଡିନି ।

କାଲି ଜାହାଜ ଧରିବି । ରାତିରେ ଟ୍ରେନରେ ଆସିବା ବେଳେ, ମନ ବିଷାଦରେ ପୂର୍ଣ୍ଣ ହୋଇ ଉଠିଲା । ଟଙ୍କା ନାହିଁ, ଲୁଗାପଟା ନାହିଁ, ସମ୍ବଳ ନାହିଁ, ଆଶ୍ରା ନାହିଁ - ଏଥିରେ ମୁଁ କାହିଁକି ଏ ବାଟରେ ଆସିଲି । ଯାଏଁ ଫେରିଯାଏଁ । ତମର ମାନସ ଛବି ମତେ କିନ୍ତୁ କହିଉଠିଲା ଧନ ! ଏ ସବୁ ଭାବନା । ଠିକ୍ ହୋଇଯିବ । ମତେ ସେହି ବାଣୀକି ମାନିବାକୁ ହେଲା ।

ମୋ'ଠି ଜାହାଜ ଧରିବାବେଳକୁ ୧୫୦ ଟଙ୍କା ଥିବ । ସେଠି ପହଁଚିଲା ବେଳକୁ ଟଙ୍କା ପହଁଛି ନଥିଲେ ମୁଁ ବଡ ହଟହଟା ହେବି । ଗୋଟିଏ ମାତ୍ର ପୋଷାକ କରିଛି । ସେଠି ପୋଷାକ ଅନ୍ତତଃ ଦୁଇଟା ଆଉ କରିବାକୁ ହେବ - ସେଥିରେ ଅନ୍ତତଃ ୧୦୦ ଟଙ୍କା ଚାଲିଯିବ ।

ମୋର ସେହି ପୁରୁଣା ପେନ୍‌ଟା ନେଇଆସିଥିଲେ ହୋଇଥାନ୍ତା । ଏଠି ଗୋଟେ ନ କିଣିଲେ ନ ଚଳେ । ଅଳ୍ପ ଦାମ୍‌ରେ ୩ଟଙ୍କା ଭିତରେ ଗୋଟେ blackbird କିଣିନେବି । ନହେଲେ ଜାହାଜରେ ଖାଲିଟା ବସି ମରିବି ।

ଓଡିଶା ସରକାର ବୃତ୍ତି ଦେଲାପରି ଲାଗୁନି । ନହେଲେ କ'ଣ କରିବି ମୁଁ ଭାବିପାରୁନି । କେବଳ ଈଶ୍ୱର ହିଁ ଆମ୍ଭମାନଙ୍କର ଭରସା । ତୁମକୁ, ଯେଉଁ ଠିକଣା ଦେଇଛି ସେ ଠିକଣାରେ ଚିଠି ଦେବ । ବରାବର ଏହିପରି ଚିଠି ଦେଉଥିବ ।

ପ୍ରାଣର ସତୀ ସୁନ୍ଦରୀ ମୋର, ଧନ, ଏହି ଦୂରଦେଶରେ ଅନାଶ୍ରୟ ଅବସ୍ଥାରେ ଆଜି ତୋର ମୂଲ୍ୟ ବୁଝୁଛି । ଥାଉ, ତୁ ସବୁ ଉଲ୍ଲାସରେ ଭୁଲିବା ଲୋକ ନୋହୁଁ । ତୋ ପ୍ରତି ଯେଉଁ ଅନ୍ୟାୟ କରିଛି; ସେଥିଲାଗି ମୋତେ ଅନେକ ପ୍ରାୟଶ୍ଚିତ୍ତ କରିବାକୁ ପଡିବ ।

ଲଲାଟେନ୍ଦୁ କିପରି ଅଛି, ବାପା ବୋଉ କିପରି ଅଛନ୍ତି ଲେଖିବ । ଅପା କିପରି ଗାଁକୁ ଗଲା ଲେଖିବ । ରାମର କ'ଣ ହେଲା ଲେଖିବ ।

ଆ ! ଧନ, ତତେ ଗଭୀର ଆଶ୍ଲେଷ ଦିଏ ।

ତୁ ତ ଅନ୍ଧୁ, ମୋର ଦୁଃଖ ଆଉ କ'ଣରେ ପାଗ୍‌ଲି ?

ତୁ ଇ ମୋର ସାମ୍ରାଜ୍ୟ

ଥା

ବୁଝିଲୁ ଧନ, ତମର ଓ ଆମର ଉଭୟଙ୍କର ଅର୍ଥାଭାବ, ମୁଁ ତେଣୁ ତତେ କେବେ air mailରେ ଚିଠି ଦେବାକୁ କହିବିନି । Ordinary mailରେ ଯା ହେଲେ ବରାବର ତତେ ଚିଠି ଦେବି । ପ୍ରତି ସପ୍ତାହରେ ତୁ ପାଇଲେ ଗଲା ।



## ଦୁଇ

# କାହାକୁ ମୋ ପ୍ରାଣ କଥା କହିବି ?

୨୫.୮.୩୭

ପ୍ରାଣର ଲକ୍ଷ୍ମୀ,

ଦିନ ଦିନ କରି ଦୁଇବର୍ଷ କଟିବ; ମୁଁ ତୋର ସ୍ନେହ ସ୍ପର୍ଶ ପାଇପାରିବିନି । ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଲେ ତୁଇ ବେଶୀ ମନେ ପଡିବୁ, କାରଣ ତୋ 'ଛଡା ମୋ ନିକଟରେ କୌଣସି ସ୍ୱାଚ୍ଛନ୍ଦ୍ୟର ମୂଲ୍ୟ ନାହିଁ । ଦୁଃଖକଷ୍ଟ ଭୋଗକଲେ ତୁ ଆଉରି ଅଧିକ ମନେପଡିବୁ, କାରଣ ଦୁଃଖରେ ପିଠିରେ ହାତ ପକେଇବାକୁ ମୋର ଏହି ପୃଥିବୀରେ ତୋ' ଛଡା ଆଉ କିଏ ଅଛି ? ତୁ କି ମୋ 'ପରି ଏକ ଅପଦାର୍ଥର ଭାର ବୋହିବାକୁ ଜନ୍ମ ହୋଇଥିଲୁ ? ଆଜି ରାତିରେ ତତେ ସ୍ୱପ୍ନ ଦେଖିଛି ।

ମାଡ୍ରାସ୍‌ରେ ସେହି ଭଦ୍ରଲୋକ ମାଂସ ଖାଇବାକୁ ଦେଇଥିଲେ, ଦୁଇଓଳି ବରାବର । ଏଠି ଆସି ମାଂସ ଖାଇଲି । ଆଜି ବଡ କୋଷ୍ଠବଦ୍ଧ । ଦେଖୁଛି ମାଂସ ମୋ ଦେହରେ ଯିବନି । ତାହାଙ୍କଠୁ ବରାବର ନିରାମିଶାଷୀ ହେବି । ମୋର ବାଳ ଉପୁଡିବା ଆରମ୍ଭ ହେଇଛି । ଭଲ ପାନିଆଟିଏ ପାଖରେ ନାହିଁ । ମୁଁ ଏଠି ଶିଂଘପାନିଆ ପାଇଁ କେତେ ବୁଲିଲିଣି, କିନ୍ତୁ ପାଇଲିନି । ଏଠି ସବୁ ବିଦେଶୀ । ତମେ ହେମ ବାବୁଙ୍କୁ ଖବର ଦେଇ ମୋ ପାଇଁ ଶୀଘ୍ର ଯୋଡ଼େ କଟକୀ ମୋଟା ଶିଂଘ ପାନିଆ ପଠାଇବାର ବନ୍ଦୋବସ୍ତ କର ।

ବର୍ତ୍ତମାନ ବୋଧହୁଏ ୮ଟା ବାଜିବ । ମୁଁ ପ୍ରାତରାଶ ଧରି Thomas Cookକୁ ଯିବି, ଟିକଟ ଆଣିବି ଓ ମୋର ଜିନିଷପତ୍ର ବୁହାବୋହି ପାଇଁ ବନ୍ଦୋବସ୍ତ କରିବି । ଜାହାଜ ଆଜି ୧୨ଟା ବେଳେ ଆସି ୨/୩ଟାରେ ଛାଡିବ । ଆଜି ଅପରାହ୍ନରୁ ଅନନ୍ତ ସମୁଦ୍ରରେ ଭାସିବି...

ବର୍ତ୍ତମାନ ୨ଟା । ଜାହାଜ ଲେଟ୍‌ରେ ଆସୁଛି । ୩ଟାରେ ଏଠି ପହଞ୍ଚିବ । ଆମ୍ଭେମାନେ ୪ଟା/୫ଟାରେ ଜାହାଜ ଧରିବୁ । ଜାହାଜ ବୋଧହୁଏ ରାତିରେ ଛାଡିବ । ଜାହାଜ ସେପ୍ଟେମ୍ବର ୨ରେ ଏଡେନ୍ ଧରିବ । ସେଠୁ ତତେ ପୁଣି ଚିଠି ଦେବି । ତୋର ଦେହ କ'ଣ ହେଲା ଲେଖିବୁ । ଲଲାଟେନ୍ଦୁ କିପରି ଅଛି ଲେଖିବୁ । ...... ମୁଁ ଏଥିଭିତରେ ଦୁଇଟା ମୋଟା ଶିଂଘପାନିଆ ଖୋଜି ଖୋଜି ପାଇଛି । ଦୁର୍ଗା ହାତରେ ଗୋଟେ ଖଣ୍ଡେ ଆଉ ପଠାଇପାର । ମନେରଖିଥିବ, ଦୁର୍ଗା ଆସିଲା ବେଳେ ତା ସାଥିରେ ଆମ ଦିହିଁଙ୍କର ଏକାଠି-ଫଟୋ(ଯେଉଁଟା ଆମ ପାଖରେ ଥିଲା) ନିଶ୍ଚୟ ପଠାଇବ । ସେଥିରୁ ମୁଁ ତମ ଛବିଟାକୁ Enlarge କରେଇବି ।

ପ୍ରାଣର ପ୍ରାଣ ଧନ ମୋର, ଆ ତତେ ଆଶ୍ଳେଷ ଦିଏ । ମୋର ପ୍ରାଣର ସକଳ ଦାବ ଦାହ ତୋ'ରି ଆଲିଙ୍ଗନରେ କେବଳ ନିବାରିତ ହେବ । ଏତେ ସୁନ୍ଦରୀ ଦେଖୁଛି, କିନ୍ତୁ କେହି ହେଲେ ତୋ ସଂଗେ ସମାନ ହେଉ ନାହାନ୍ତି । ମୋର ଅତୁଳନୀୟା ରାଣୀ - ଆ ଧନ, ମତେ ଧର, ମୋର ଦୁଃଖ ଶୋକ, ଦୁର୍ବିପାକ ତୋ ଆଲିଙ୍ଗନ ଭିତରେ ଲୀନ ହେଉ । ଆ ଧର, ପାଗ୍‌ଲି, ଧନ ଥା, ଦୁଇବର୍ଷରେ ଫେରିବି ।



## ତିନି

# ଏଗାର ପାଉଣ୍ଡକୁ ମୁଁ ଗଣ୍ଠିଧନ କରି ରଖିଛି

ପ୍ରାଣର ହେମ,

ମୋ ଚିଠି ପାଇଥିବ । ଇତିମଧ୍ୟରେ ଗୋଟେ Blackbird pen କିଣିଲି, ଦାମ୍ ଟ.୩ । Englandରେ ଅବଶ୍ୟ ଆଉରି ଶସ୍ତା ହୋଇଥାନ୍ତା, କିନ୍ତୁ ସେ ସାମାନ୍ୟ ଶସ୍ତାକୁ ଅନାଇ, ମୁଁ ବାଟରେ ହୀନସ୍ତା ହେବାଟା ଉଚିତ ମନେ କଲିନି । ଯାହା ନିତାନ୍ତ ଦରକାର ତାହା ହିଁ ମୁଁ ଖର୍ଚ୍ଚ କରୁଛି । ସବୁ ଯାଇ ମୋ'ଠି ବର୍ତ୍ତମାନ ୧୧ ପାଉଣ୍ଡ ଅଛି । ଯାହା ନୋଟ୍ ଥିଲା ସବୁ ଆଜି Thomas Cookରେ ବଦଳେଇ English note ନେଇଆସିଛି । ଟିକଟ ତ କାଟିଛି, ଯାଏଁ ଯେତେଦୂର ଯାଉଛି । ନ ଖାଇ ମଲେ କ୍ଷତି କ'ଣ ? ତୁମେ କ'ଣ ବ୍ୟଥିତ ହେବ ସେଥିପାଇଁ? ମୋ ପରି ଅପଦାର୍ଥ, ଏ ଜଗତରେ ଏତେ ଲୋକଙ୍କୁ, ବିଶେଷତଃ ତମୁକୁ କଷ୍ଟଦେବା ଓ ନିଜେ କଷ୍ଟ ଭୋଗ କରିବାର କୌଣସି ଅର୍ଥ ନାହିଁ । ମୁଁ ଯେତେଶୀଘ୍ର ଇହଧାମରୁ ବିଦାୟ ନିଏ, ତେତେ ମୋର ମଙ୍ଗଳ, ତମର ମଧ ଆଶ୍ୱାସର କଥା । ପିଲାଟି କିପରି ଅଛି । ବିଧାତା ଏଇ ସମୟକୁ ତମୁକୁ କୋଳରେ ତାକୁ କାହିଁକି ଥୋଇଲା କେଜାଣି ।

ଏଠାରେ ଲୋକେ ଏକାବେଳେକେ ବିଦେଶୀ ପାଲଟି ଯାଇ ଜାତୀୟତା ହରାଇଛନ୍ତି । ପୁରୁଷମାତ୍ରେ ସାହେବୀ ପୋଷାକ ଓ ଇଂରାଜୀ କଥାଭାଷା । ଏମାନଙ୍କର ନିଜର ମାତୃଭାଷା, ସାହିତ୍ୟ ଓ ଜାତୀୟ କୃଷ୍ଟି ପ୍ରତି ଆଦୌ ନଜର ନାହିଁ । ସ୍ତ୍ରୀଗୁଡିକ ସୌଷ୍ଠବସଂପନ୍ନା ଓ ପ୍ରତ୍ୟେକେଇ ସୁକେଶିନୀ । ସିଲୋନ୍ ନାରିକେଳର ଜନ୍ମସ୍ଥାନ ଓ ଏଠାରେ ନାରୀକେଳ ଭୂମିକୁ ନିଜ ଛାଇରେ ଘୋଡ଼ାଇ ରଖିଛି । ନାରୀକେଳ ତୈଳ ନାରୀକେଶର ପରମ ବଂଧୁ ଓ ସିଲୋନୀ-ଲଳନା ତାହାରି ଗୁଣରେ ବୋଧହୁଏ ଦୀର୍ଘକେଶିନୀ । ଏମାନେ ଏକାବେଳେକେ ନିରାଭରଣା । ସେମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ହିଁ ସେମାନଙ୍କର ଏକମାତ୍ର ଅଳଙ୍କାର । ପ୍ରାଚୀନା ବା ଅଶିକ୍ଷିତାମାନେ ଅଣ୍ଟାତଳଟା ଲୁଙ୍ଗିରେ ଓ ଅଣ୍ଟା ଉପରିଭାଗ ଗୋଟେ ଛୋଟ କୁର୍ତ୍ତାରେ ଆବୃତ କରନ୍ତି । ଯେଉଁମାନେ ଶିକ୍ଷିତା ହେଲେଣି ସେମାନେ ଭାରତୀୟ ଶାଢ଼ୀର ଲୀଳାୟିତ ତରଂଗରେ ନିଜର ଶରୀର ସାବଲୀଳ କରିବାକୁ ଶିଖିଛନ୍ତି ।



## ଚାରି

# ସମୁଦ୍ର ପୀଡ଼ା

କାଶିମା ମାରୁ
୦୨.୦୯.୩୭

ପ୍ରାଣର ପ୍ରାଣ ଲକ୍ଷ୍ମୀ ମୋର, ପାଗ୍‌ଲିରେ,

ସାତଦିନ ହେଲା ଅନନ୍ତ ଜଳଧିରେ ଭାସୁଛି । ତଥାପି ଭୂଇଁର ଦେଖା ନାହିଁ । ଆଜି ରାତିରେ ଏଡେନ୍ ପହଁଚିବୁ । ଏହି ସାତ ଦିନରୁ ୪ଦିନ କାଳ ମୁଁ ସଂପୂର୍ଣ୍ଣ ନିରାହାର ଓ ଅନ୍ୟଦିନ ସବୁ ଅର୍ଦ୍ଧା ହାରରେ କଟେଇଛି । କଲମ୍ବୋ ପରେ ସମୁଦ୍ର ରକ୍ଷ ହେବାରୁ ଭୟଙ୍କର ସମୁଦ୍ର ପୀଡା ଭୋଗ କରିବାକୁ ହେଲା । ମୁଣ୍ଡ ବୁଲେଇହେଲା, ବାନ୍ତି ମଡେଇଲା, ପେଟ କ'ଣ ହେଲା, ଛାତି କ'ଣ ହେଲା, ଖାଇବାକୁ ଇଚ୍ଛା ହେଲାନି, ଚାଲିଲେ ପଡିଗଲା ପରି ଲାଗିଲା । ଏହା ହିଁ ସମୁଦ୍ର ପୀଡା । କଲମ୍ବୋ ଠାରେ ମତେ ଟିକା ନେବାକୁ ପଡିଲା । ଅଭାଗ୍ୟକୁ ଗୋଟେ ଟିକା ପାଚିବାରୁ ଏ ଭିତରେ ମତେ ଜର ବି ହେଲା । ଭୟଙ୍କର ଯନ୍ତ୍ରଣାରେ ମୁଁ କେବଳ ଶେଯରେ ପଡି ଛଟପଟ ହେଉଥାଏ । କିଏ ଅଛି ଯେ ପାଖରେ ହାତ ବୁଲେଇ ଦେବ ଦେହରେ ? ସବୁବେଳେ, ପ୍ରତିମୁହୂର୍ତ୍ତରେ ମୁଁ ତତେ ଇ ଝୁରି ହେଉଥାଏ । ବେଳେ ବେଳେ 'ବାୟାଣୀ', 'ଧନ', 'ପାଗ୍‌ଲି' ବୋଲି ବଡ ପାଟିରେ ଡାକିଉଠେ ଓ କାନ୍ଦେ । କିନ୍ତୁ ମୁଁ ଏହି ଏକ ଆଶ୍ଚର୍ଯ୍ୟ ଘଟଣା ଉପଲବ୍ଧି କରୁଛି ଯେ, ତୋର ମାନସୀ ପ୍ରତିମା ମୋର ପାଖେ ପାଖେ ସବୁବେଳେ ଯେପରି ଲାଗି ରହିଛି । ମୁଁ ତାରି ସାଥିରେ କଥାଭାଷା ହୁଏ । ସେ ମୋର ପ୍ରଶ୍ନର ଉତ୍ତର ଦିଏ, ମତେ ଉପଦେଶ, ସାନ୍ତ୍ୱନା, ଆଶା ଓ ସ୍ନେହ ଆଦର ଦିଏ । ସେ ମତେ ସେହି ପୀଡା ଭିତରେ, ଘୋର କ୍ଷୁଧା ଭିତରେ ମଧ୍ୟ ଖାଇବାକୁ ମନାକଲା - ମୁଁ ତାହାରି ବାଣୀକି ମାନିଲି ଓ ଯଥେଷ୍ଟ ଉପକୃତ ହେଲି । ଯେକୌଣସି ସମସ୍ୟା

ପଡିଲେ ମୁଁ ଆଖିବୁଜି ତୋରି ମାନସୀ ସଂଗେ କଥା ହେଉଛି, ତୁ ଯାହା କହୁଛୁ ମୁଁ ତାହା ହିଁ ମାନୁଛି । ବର୍ତ୍ତମାନ ମୋ ନିକଟରେ ଏକ ସମସ୍ୟା ଯେ ମୁଁ ମାର୍ସାଇଲ୍‌ରେ ଓହ୍ଲେଇ ପଡିବି କି ଜିବ୍ରାଲ୍‌ଟର୍ ବାଟେ ଆଉରି ୬ଦିନ ସମୁଦ୍ରରେ ଭାସି ଲଣ୍ଡନରେ ପହଞ୍ଚିବି । ଜିବ୍ରାଲ୍‌ଟର୍ ବାଟେ ଯିବାକୁ ତ ଟିକଟ କରିଛି । ମାର୍ସେଇଲ୍‌ରେ ଓହ୍ଲେଇ ପଡିଲେ ମୁଁ ୨ ପାଉଣ୍ଡ ଫେରସ୍ତ ପାଇବି ଓ ମତେ ପୁଣି ଆଉରି ୩ ପାଉଣ୍ଡ ଅଧିକା ଖର୍ଚ୍ଚ କରିବାକୁ ପଡିବ । ୩ ପାଉଣ୍ଡ ରଖିପାରିଲେ ଗୋଟେ ପୋଷାକ ହେବ । କିନ୍ତୁ ତୋର ମାନସୀ ମତେ ବାରବାର କହୁଛି ମାର୍ସାଇଲ୍‌ରେ ଓହ୍ଲେଇବାକୁ ଓ ମୁଁ ଯେତେ ବୁଝେଇଲେ ମଧ୍ୟ ସେ ଜିଦ୍ ଧରୁଛି ଓ କହୁଛି ୩ ପାଉଣ୍ଡକୁ ଖାତିର କରନା, ତମର ମଂଗଳ ହେବ । ମାର୍ସାଇଲ୍ ତ ୧୭ ତାରିଖରେ ପହଁଚିବୁ । ଦେଖାଯାଉ ମୁଁ କ'ଣ କରୁଛି ।

ଜାପାନୀ ମାଲ୍ ଶସ୍ତା - କିନ୍ତୁ ହୀନସ୍ତା । N.Y.K. lineର 3rd class ଗୋରୁଗୁହାଳରୁ ବଳେ । ଗୋଟେ ଛୋଟ ରୁମ୍ । ତାହା ପୁଣି ଜାହାଜର ସବାତଳେ । ସେଠି ଆଲୁଅ, ପବନ ନାହିଁ ଯେ, ସବୁବେଳେ ବିଜୁଳିବତୀ ଓ ବିଜୁଳି ପଂଖା ଲାଗିଛି । ସେହି ଛୋଟ ଘରେ ପୁଣି ଉପର-ତଳ ହୋଇ ୧୦ଟା ଖଟରେ ୧୦ଜଣ ମଣିଷ । ଗାଧୁଆ ଆଦି କରିବାକୁ ହେଲେ ଉପରକୁ ଦଉଡିବାକୁ ହେବ । ଗାଧୁଆର ଆଦୌ ସୁବିଧା ନାହିଁ । ମତେ ଅତ୍ୟନ୍ତ ବିରକ୍ତ ଲାଗିଲାଣି । ଖାଦ୍ୟ ଅତ୍ୟଧିକ ଅରୁଚିକର । ଏ ବାଟରେ ଆସିବାକୁ ମୁଁ ଉପଦେଶ ଦେବିନି । ତେବେ ଆମେ ତ ଦରିଦ୍ର, ବେଶୀ ତ ଖର୍ଚ୍ଚ କରିପାରିବାନି, ଭୋଗ କରିବା କେମିତି । ସେକେଣ୍ଡ ଓ ଫାଷ୍ଟକ୍ଲାସ୍‌ର ଅବସ୍ଥା ଆମଠୁ ଢେର ପୃଥକ୍ । ସେଥିକି ପଇସା ଦରକାର । 3rd classରେ ୧୭ ପାଉଣ୍ଡ ଦେଇଛି । 2nd classରେ ମତେ ୩୦ ପାଉଣ୍ଡ ଦେବାକୁ ପଡିଥାନ୍ତା ।

କାଲି ସମୁଦ୍ର ଏକାବେଳେକେ ଶାନ୍ତ ଥିଲା । ଆଜି ପୁଣି ଟିକିଏ ରକ୍ଷ ହେବାକୁ ଆରମ୍ଭ ହୋଇଛି । ମୁଁ ଭଲ ହୋଇଛି ।

* ଦୁର୍ଗା ଆସିଲେ ତା'ହାତରେ କେତେଗୁଡିଏ ଜିନିଷ ନିଶ୍ଚେ ପଠେଇବ । ନହେଲେ ମତେ ଅସୁବିଧାରେ ପଡିବାକୁ ହେବ । ବଡ ସାଗୁ ବା ଚା'ଡିବା ୪ଟା ସଂଗ୍ରହ କରି ଓ ସେଥିରେ ଅଲଗା ଅଲଗା କରି ହଳଦୀଗୁଣ୍ଡା, ଲଙ୍କାମରିଚ ଗୁଣ୍ଡା, ଗରମମସଲା ଗୁଣ୍ଡା ଓ କିଛି ଆମ୍ବୁଲ ଭର୍ତ୍ତିକରି ନିଶ୍ଚେ ପଠେଇବ । ମୁଁ ନିଜେ ତ ରୋଷେଇ କରିବି, ତେଣୁ ଏଗୁଡିକ ନିତାନ୍ତ ଦରକାର । କଳାହାଣ୍ଡିରେ ଆମେ କରି ନେଇଥାନ୍ତେ, କିନ୍ତୁ ଖିଆଲ୍ ହେଲାନି । ଏଇତକ ମୋର ଆଠମାସ ଖଣ୍ଡେ ଚାଲିଯିବ । ପାର୍ଶଲ କଲେ ବେଶି ପଡିଯିବ, ଦୁର୍ଗା ତ ଆସୁଛି, ତାରି ହାତରେ ପଠେଇବ । ସୋରିଷ ଓ ଗୋଲ୍‌ମରିଚ ବିଲାତରେ ମିଳିବ ।

---

* ଦୁର୍ଗା ହେଉଛନ୍ତି ଦୁର୍ଗାମାଧବ ବେହୁରା । ପରବର୍ତ୍ତୀ କାଳରେ ସେ ଓଡ଼ିଶା ରାଜ୍ୟ କୃଷି ବିଭାଗର ଡାଇରେକ୍ଟର ହୋଇ ଏବେ ଅବସର ଗ୍ରହଣ କରିଛନ୍ତି । କବି ମାନସିଂହଙ୍କ ସେ ଶାଳକ ।

ଏ ଜାହାଜରେ ସିଲୋନୀ ଓ ଭାରତୀୟ ଛାତ୍ର କେତେଜଣ ଯାଉଛନ୍ତି, କେତେଜଣ ଭାରତୀୟ ମହାଜନ ବି ଯାଉଛନ୍ତି । ସେମାନଙ୍କଠୁ ବୁଝି ଦେଖିଲିଣି ଯେ, ରାନ୍ଧି ଖାଇବା ସହଜ ଓ ଖୁବ୍ ଶସ୍ତା । ସେମାନେ ବିଲାତ ପୂର୍ବରୁ ଯାଇଛନ୍ତି ।

ଶୀଘ୍ର ପତ୍ର ଦେବ, ମୁଁ ଯେପରି ପହଁଚି ପାଏ । ବଡ ବ୍ୟଗ୍ର ହେଲିଣି ତମର ଖବର ପାଇବାକୁ । କ'ଣ କଲ, କିପରି ଅଛ, ବାପାବୋଉ, ଲଲ୍ଲୁ, ସମସ୍ତଙ୍କ ଖବର ଲେଖି ପଠାଅ ।

ନବଭାରତକୁ ଲେଖ ନାଟକର ନାମ 'ନଷ୍ଟ ନୀଡ଼' ରଖିବାକୁ । ମୋର ଯେତେଦୂର ମନେ ହେଉଛି କାଳିଆ ନାଟକର ନାମ ଲେଖି ନଥିଲା । ଶୀଘ୍ର ଲେଖ । ଗୋଟେ ଦି'ପଇସିକିଆ ଜିଭଛେଲା ସଂଗ୍ରହ କରି ପଠେଇ ପାର ।

ପ୍ରାଣର ପାଗ୍‌ଲି, କାହିଁକି ମତେ ପାଖରୁ ତଡି ଦେଲୁରେ ! ମୁଁ ତୋର କ'ଣ ଅସୁବିଧା କରୁଥିଲି କହନା ! ଦୁଇବର୍ଷ କାଳ କେଉଁ ଅପରିଚିତ ବିଦେଶ ଜାଗାରେ ଦୀନ ହୀନ ଦରିଦ୍ର ହୋଇ, ହୁଏତ ଅନାହାରରେ କାଳ କଟେଇବି ! କେଉଁ ଅପରାଧକୁ ଏ ଶାସ୍ତି ଦେଲୁରେ, ଭଲପାଉ ପରାରେ !

ତୁଇ ତ ଏକମାତ୍ର ମନେ ପଡୁଚ୍ଛୁ । ଜଗତରେ କ'ଣ ତୁଇ ମୋର ଏକମାତ୍ର ଆପଣାର ! ଆ'ରେ ତତେ ଆଲିଙ୍ଗନ କରେ, ଗଣ୍ଡ ଦ୍ୱୟରେ ଗଭୀର ଚୁମ୍ବନ ଦିଏ । ଦୀର୍ଘ ଦୁଇବର୍ଷ । କେଉଁ ଦିନ ତତେ ଦେଖିବି, ଧରିବି, କୋଳ କରିବିରେ ! ଓଃ କି ଯାତନାରେ !

ହଁ, ଦୁର୍ଗା ହାତରେ ଯେକୌଣସି ମତେ ଖଣ୍ଡେ ପୂଜାରିଣୀ, ଧୂପ, ହେମପୁଷ୍ପ ପଠାଅ । ନିଶ୍ଚୟ ପଠାଅ ।

ତୋର ଧନ



**ପାଞ୍ଚ**

## ମୋର ଚିଲିକା ମନେ ପଡ଼ିଲା

କାଶିମା ମାରୁ
୦୬-୦୯-୩୭

ପ୍ରାଣର ପ୍ରାଣ ପାଗଲିରେ,

ଏଡେନ୍ ଦୂରରେ ଥିଲା ତୋ ପାଖକୁ ପତ୍ର ଲେଖିଥିଲି ଓ ଏଡେନ୍‌ରେ ଚିଠି ପୋଷ୍ଟ କରିଥିଲି । ସେ ଚିଠି ପାଇଥିବୁ । ୨ ତାରିଖ ରାତି ୩ଟାରେ ଜାହାଜ ଏଡେନ୍ ଛାଡିଲା । ସେହିଦିନରୁ ବର୍ତ୍ତମାନ ପର୍ଯ୍ୟନ୍ତ ଜାହାଜ ଲୋହିତସାଗର ଅତିକ୍ରମ କରୁଛି । କାଲି ସକାଳେ ଜାହାଜ ସୁଏଜ୍ ବନ୍ଦରରେ ପହଁଚିବ । ଏଡେନ୍ ଠାରୁ ଆଜି ସକାଳ ପର୍ଯ୍ୟନ୍ତ ସମୁଦ୍ର ଅତ୍ୟନ୍ତ ଶାନ୍ତ ଥିଲା । ଏତେ ଶାନ୍ତ ଯେ, ପୋଖରୀ ମଧ୍ୟ ସେତେ ଶାନ୍ତ ହେବନି । ଜାହାଜ ଚାଲୁଛି

କି ନାହିଁ ଜଣା ପଡିଲାନି । ତା'ପରେ ଲୋହିତସାଗରର ଦୃଶ୍ୟ ଅତ୍ୟନ୍ତ ଚମତ୍କାର । ଏହାର ଓସାର ଅଳ୍ପ ଥିବାରୁ, ପ୍ରଥମ ଶହେ ମାଇଲ୍ ଯାଏ ଆମ୍ଭେମାନେ ଉଭୟ କୂଳରେ ଭୂମିଭାଗ ଦେଖିପାରୁଥିଲୁ । ଏକପାଖରେ ଆରବ ଓ ଅନ୍ୟ ପାଖରେ ଆଫ୍ରିକା । ଭୂମି ନିକଟ ଥିବାରୁ ଦଳ ଦଳ ସାମୁଦ୍ରିକ ପକ୍ଷୀ ଉଡି ଉଡି ସମୁଦ୍ରରେ ଜାହାଜର ଏପାଖେ ସେପାଖେ ଭାସୁଥାନ୍ତି । ଦୁଇ ତିନିଟା ପକ୍ଷୀ ଜାହାଜର ମାସ୍ତୁଲ ଉପରେ ବି ଆସି ବସିଲେ । ଲୋହିତସାଗରରେ ଆମ୍ଭେମାନେ ପ୍ରଥମେ ପ୍ରକାଣ୍ଡ ପ୍ରକାଣ୍ଡ ସାମୁଦ୍ରିକ ମତ୍ସ୍ୟ ଦେଖିବାକୁ ପାଇଲୁ । ସଂଧ୍ୟା ସମାଗମରେ ଦୁଇପାଖର ପର୍ବତଶ୍ରେଣୀ ତଳେ ଲୋହିତସାଗର ଲୋହିତ ହୋଇ ଉଠିଲେ, ମୋର କେବଳ ଚିଲିକା ମନେପଡିଲା । ମଝିରେ ମଝିରେ ବତୀଘର; ଘୋର ଅନ୍ଧକାର ରାତ୍ରିରେ ସେ ସବୁର ଆଲୋକ ବହୁଦୂରକୁ ଦେଖାଯାଏ । ଶତ ଶତ ମାଇଲ୍ ସମୁଦ୍ର ଭିତରେ ଏହି ନିର୍ଜନ ବତୀଘର ମାନଙ୍କରେ ଥିବା ଚୌକିଦାରର ଜୀବନ କଳ୍ପନା କର । ଲୋହିତସାଗର ଅତିକ୍ରମ କରିବାରେ ସମୁଦ୍ରଯାତ୍ରା ଅତ୍ୟନ୍ତ ସୁଖକର ଲାଗିଲା । ଆଜି ହଠାତ୍ ସମୁଦ୍ର ପୁଣି ରକ୍ଷ ହୋଇ ଉଠିଛି । ମୁଁ ବେଶ୍ ସୁସ୍ଥ ଅଛି । ଆଜି ସମୁଦ୍ର ରକ୍ଷ ହେବାରେ ମୁଣ୍ଡଟା ପୁଣି ଟିକିଏ କିମିତି କିମିତି ଲାଗୁଛି ।

ମୁଁ ମାର୍ସେଇଲ୍‌ରେ ଓହ୍ଲେଇ ପଡିବାର ସ୍ଥିର କରୁଛି । ଏଡିନ୍‌ବରା ଯିବାର ଲୋକ କେତେଜଣ ମାର୍ସେଇଲ୍‌ରେ ଓହ୍ଲେଇବେ । ମୁଁ ସେଇମାନଙ୍କ ସାଥି ଧରିବି । ଲଣ୍ଡନରେ ରହିଲେ ପଇସା ଖର୍ଚ୍ଚ ହେବ, ତେଣୁ ସେଠି ଆଦୌ ନରହି ସିଧା ଏଡିନ୍‌ବରା ଯିବି । ଏଡିନ୍‌ବରା ଗଲାବେଳକୁ ମୋ ପାଖରେ ଆଉ ମୋଟେ ୩ ପାଉଣ୍ଡ ଖଣ୍ଡେ ଥିବ । ମୋ ପାଇଁ କିଛି ଚିନ୍ତା କରିବନି । ଦରିଦ୍ରକୁ ବିଧାତା ସହାୟ ହେବେ ।

ପ୍ରାଣର ଧନରେ, ବର୍ତ୍ତମାନ ସଂଧ୍ୟା ୭ଟା । ସେଠି ବର୍ତ୍ତମାନ ରାତି ୯ଟା ଖଣ୍ଡେ ହୋଇଯିବଣି, ତୁ କ'ଣ କରୁଛୁ ? ଲଳାଟେନ୍ଦୁ ତତେ କ'ଣ ହଇରାଣ କରୁଛି ? ତୋ'ପରି ମା' ହାତରୁ ସେ କେବଳ ସ୍ନେହ ହିଁ ପାଇବ - ତେଣୁ ତା'ଲାଗି ତତେ କ'ଣ କହିବି ? ହତଭାଗ୍ୟଟା ଯଦି ପ୍ରତିଭା ଆଣିଥିବ ତେବେ ତୋ'ପରି ମା' ପାଇ ସେ ଧନ୍ୟ ହେବ - ନହେଲେ ଅଭାଗା ତୋର ସକଳ ସାଧନାକୁ ବ୍ୟର୍ଥ କରିବ । ସେପ୍ଟେମ୍ବର ୨ ଦିନ ମୋର ବରାବର ମନେପଡିଲା ଯେ, ଆଜି ଲଳାଟେନ୍ଦୁକୁ ଦୁଇମାସ ହେଲା । ମୁଁ ଅଧମ ତାକୁ କି ଆଶୀର୍ବାଦ ଦେବି ? ମୁଁ ଓ ତୁ ଯେଉଁ ସ୍ରଷ୍ଟାଙ୍କର ପୁତ୍ତଳିକା ସେହି କେବଳ ସିନା ଆଶୀର୍ବାଦ ଦେବାର ଲୋକ ।

ଆମ ଫଟୋ ନିଶ୍ଚେ ପଠେଇବ । ମୋର ଭାରି ଦରକାର । ଅନ୍ୟ କିନିଷ ପଛେ ନ ପଠେଇବ, ଫଟୋଟା ପଠେଇବ । ମୋ ବହିଗୁଡାକ ଯଦି ପାର ପଠେଇବ । ମୁଁ ବିଜୟନଗର ଛାଡିଲା ପରେ ତମର କ'ଣ ହେଲା କିଛି ହେଲେ ନଜାଣି, ବଡ ଆଶଙ୍କାରେ କାଳ କାଟୁଛି । ମାଆ ଯାହା ଘଟିଲା, ସବୁ ବିସ୍ତାରିତ ଭାବରେ ଲେଖିବ ।

ଦୁଇବର୍ଷ ଭିତରେ ତମର ଅନେକ କାମ କରିବାର ଅଛି । ଲଲାଟେନ୍ଦୁକୁ ଯଦି ଛାଡି ରହିପାର ତେବେ ପ୍ରୟାଗ ମହିଳା ବିଦ୍ୟାପୀଠକୁ ଗଲେ ଖୁବ୍ ଭଲ ହୁଅନ୍ତା । ତେବେ ବିନା ବ୍ୟୟରେ ନହେଲେ, ଆମର ଅବସ୍ଥାରେ ବ୍ୟୟନିର୍ବାହ ତ କଠିନ । L.N. Sahooଙ୍କୁ ଲେଖିପାର ଯଦି ସେ ବନ୍ଦୋବସ୍ତ କରିପାରନ୍ତି । ଇତିମଧ୍ୟରେ ଲକ୍ଷ୍ମୀଧର ନାୟକଙ୍କୁ ଡକେଇ ଗୀତ ଦୁଇଚାରିଟା ଭଲରକମ ଶିଖିନିଅ ଓ ରେକର୍ଡରେ ଦେବାର ଚେଷ୍ଟା କର । ନବଭାରତକୁ ତମର ଚିଠିଟା ଦେଲ ନା ନାହିଁ ? ଖୁବ୍ ଭଲ ହୋଇଥିଲା ; ତମେ ଯଦି ଲେଖା ଅଭ୍ୟାସ କର ତେବେ ସିନା ଉନ୍ନତି ହେବ ?

ଆଜି ସକାଳେ ବସି ନବଭାରତ ପାଇଁ ଶିକ୍ଷା ସମ୍ବନ୍ଧୀୟ ଆଉଖଣ୍ଡେ ଲେଖା ଲେଖିଛି । ଏଇ ଚିଠି ସହିତ ପଠାଇପାରେ ।

ଧନରେ ! ସବୁବେଳେ ମନରେ ଅଛୁ । ତୋର ସ୍ମୃତି, ବିଦେଶରେ ମୋର ରକ୍ଷାକବଚ ଓ ପରମ ଆଶ୍ରୟ । ତୁ ଯେତେବେଳେ ଅଛୁ, ମୋର ବିଦେଶରେ କିଛି କଷ୍ଟ ହେବ ବୋଲି ମୁଁ ଭାବୁନି । ମୁଁ ବେଶ୍ ଆଶାନ୍ୱିତ । ତୋର ସ୍ନେହ ଅଧମକୁ ପବିତ୍ର ଓ ନଗଣ୍ୟକୁ ବରେଣ୍ୟ କରିବ । ତୋର ସାଧନା ମୋ ଜୀବନରେ ବ୍ୟର୍ଥ ନହେଉ, ଏହା ହିଁ ମୋର ଏକାନ୍ତ କାମନା । ଆ ଧନ, ତତେ କୋଳ କରେ, ତତେ ନିବିଡ ଆଶ୍ଳେଷ ଦିଏ, ତତେ ଦୁଇଗଣ୍ଡରେ କଠୋର ଚୁମ୍ବନ ଦିଏ । ତୁ ମୋର ସେହି ମଧୁଶଯ୍ୟାର ଚିରନ୍ତନ ନବବଧୂ, ପ୍ରାଣର ପରମ ପ୍ରେୟସୀ, ଜୀବନର ଧ୍ରୁବତାରା । ଆ ତତେ ନିବିଡ ଭାବରେ ଆଲିଙ୍ଗନ କରି ତୋର ମୁଖକମଳକୁ ଆଘ୍ରାଣ କରେ । ବରାବର ଚିଠି ଦେବୁ ।

ତୋର ଅଧମ ପ୍ରିୟ



ଛଅ

## ଧନରେ ! ବରାବର ମନେପଡୁଛୁ

କାଶିମା ମାରୁ

୧୧.୯.୩୭

ପ୍ରାଣର ସମ୍ପଦ ମୋର,

ପାଗ୍‌ଲିରେ,

୮ ତାରିଖରେ ପୋଟାସୟେଦ ଛାଡ଼ି ପୁଣି ୪ ଦିନ କାଳ ଅକୂଳ ସାଗରରେ ଭାସିବାକୁ ହେଉଛି । ବର୍ତ୍ତମାନ ସନ୍ଧ୍ୟା ସମାଗତ । ସେଠି ବର୍ତ୍ତମାନ ରାତି ୯ଟା ହୋଇଥିବ । ଲଲାଟେନ୍ଦୁକୁ କୋଳରେ ଧରି 'ତିନି ତିନି ପଣ ଅଠରପଣ' କରିବାର ମୁଁ ତତେ ଦେଖିପାରୁଛି । ଆଜି ରାତିଯାକ ଭାସି ଭାସି କାଲି ୧୨ ତାରିଖ ସକାଳ ନେପଲ୍‌ସରେ ପହଞ୍ଚିବ । ନେପଲ୍‌ସକୁ ଜାହାଜରେ ବସିବା ୧୮ ଦିନ ହୋଇଯିବ । ମୁଁ ମାର୍ସାଇଲ୍‌ରେ ଓହ୍ଲେଇବି ନାହିଁ । କାରଣ ୩ୟ ଶ୍ରେଣୀର ଯାତ୍ରୀମାନେ ୨ ପାଉଣ୍ଡ ଫେରସ୍ତ ପାଇବେନି ।

ମାର୍ସାଇଲ୍‌ରେ ଜାହାଜ ୧୫ ତାରିଖରେ ପହଞ୍ଚିବ । ସେଠୁ ପୁଣି ୭ ଦିନ ଜଳଯାତ୍ରା ପରେ ଲଣ୍ଡନ । ସେହି ୭ ଦିନ ସବୁଠୁ ଭୟଙ୍କର । କାରଣ ବିସ୍କେ ଉପସାଗରରେ ଯେଉଁ ଝଡ଼ ଓ ସମୁଦ୍ରପୀଡ଼ା ହୁଏ, ତାକୁଇ ଡରିକି ଲୋକେ ମାର୍ସାଇଲ୍‌ରେ ଓହ୍ଲାନ୍ତି । ଯାହାହେଉ ଟିକେଟ ତ କରିଛେ । ଆମର ଅଧିକାଂଶ ଛାତ୍ର ସେ ବିପଦର ସମ୍ମୁଖୀନ ହେଉଛନ୍ତି । ତେଣୁ ଦୁଃଖ ନାହିଁ । ଆଜି ସକାଳେ ହଠାତ୍ ଭୂମଧ୍ୟସାଗରରେ ମଧ୍ୟ ପବନ ଉଠି ସମୁଦ୍ରକୁ ଆନ୍ଦୋଳିତ କରିବାରୁ ଭୟଙ୍କର ସମୁଦ୍ରପୀଡ଼ା ଭୋଗିଲୁ । ମୁଁ ଅପରାହ୍ଣ ୩ଟା ଯାଏ ବେଞ୍ଚରେ ପଡ଼ିରହିଲି । ଅପରାହ୍ଣରେ ଜାହାଜ ଇଟାଲୀ ଓ ସିସିଲି ମଧ୍ୟସ୍ଥ ମେସିନା ପ୍ରଣାଳୀରେ ପଶିବାରୁ ସମୁଦ୍ର ସ୍ଥିର ହେଲା ଓ ଆମ୍ଭେମାନେ ଉପରକୁ ଉଠି ଉଭୟ ପାର୍ଶ୍ୱର ଭୂମିଭାଗର ମନୋହର ଦୃଶ୍ୟ ଦେଖିବାକୁ ପାଇଲୁ । ଦୁଇ ପାଖରେ ପର୍ବତଶ୍ରେଣୀ, ପର୍ବତର ଉପରେ, ମଝିରେ, ତଳେ ସୁନ୍ଦର ଅଟ୍ଟାଳିକା- ସଜ୍ଜିତ ନଗର । ଘରସବୁ ଏକାବେଳକେ ପାଣି ଉପର ପର୍ଯ୍ୟନ୍ତ ଆସିଛି । ଜାହାଜ ଦୁଇକୂଳର ମାଇଲିଏ କି ଅଧମାଇଲିଏ ଛଡ଼ାରେ ଯାଉଥାଏ । ତେଣୁ ଘର, ରେଳ, ମଟର ପ୍ରଭୃତି ସବୁ ପରିଷ୍କାର ଦେଖାଯାଉଥାଏ । ଆମ ଆଡ଼ ପରି ଗୋଟେ ଜାଗାରେ ଖୁନ୍ଦି ହୋଇ ରହିବାର ନାହିଁ । ୧୦/୧୨ ମାଇଲ୍ ଧରି କୂଳେ କୂଳେ ଛଡ଼ାଛଡ଼ାରେ ଘର ଲାଗିରହିଛି । ଏଥିଯୋଗୁଁ ସମଗ୍ର ଉପକୂଳ ଦେଖିବାକୁ ଯେପରି ସୁନ୍ଦର, ବସବାସ ମଧ୍ୟ ସ୍ୱାସ୍ଥ୍ୟ ପକ୍ଷରେ ସେହିପରି ଉପଯୋଗୀ । ଆମ ଗାଁ ପାଖରେ ଘର କରିବା ପାଇଁ ଏହିପରି ସୁନ୍ଦର ଜାଗା ପଡ଼ିରହିଛି । କିନ୍ତୁ ଆମ ଲୋକେ ବଡ଼ ନୋଙ୍ଗ୍ରା । ସେମାନଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଜୀବନର ସ୍ୱାଚ୍ଛନ୍ଦ୍ୟ ପାଇଁ ଆଖି ନାହିଁ । ପ୍ରାୟ ଦେଢ଼ ଘଣ୍ଟାକାଳ ଆମେ ଏହି ପ୍ରଣାଳୀ ପାର ହେଲୁ । ବର୍ତ୍ତମାନ ଆମେ ପୁଣି ମହାସମୁଦ୍ରରେ ।

ଧନରେ ! ବରାବର ମନେପଡୁଛୁ । କେବଳ ତାହା ନୁହେଁ, ତୁଇ ଏକା କେବଳ ମନେପଡୁଛୁ । ଆଉ କାହାରିକି ମୁଁ ସ୍ମରଣ କରିବାକୁ ପ୍ରୟୋଜନ ବୋଧ କରୁନି । ତୁଇ କିଏ ? କେଉଁଠି ଥିଲୁ ? କାହିଁକି ତୁଇ ମୋର ଜୀବନକୁ ତୋର ହାତମୁଠାରେ ରଖିଲୁ ? କି ଲାଭ ତୋର ସେଥିରେ ? ତୁ ନଥିଲେ ମୁଁ ଏତେ ବଡ଼ ସାଧନାରେ ଗୋଡ଼ ଦେଇ ନଥାନ୍ତି କି ଏତେ କଷ୍ଟ ପାଉ ନଥାନ୍ତି । ମତେ ମୁକ୍ତି ଦିଏ; ମତେ ଶକ୍ତି ଦିଏ । ମତେ ଏତେ କଷ୍ଟ ଦେଉଛୁ, ତା'ର ପରିବର୍ତ୍ତରେ ମତେ କ'ଣ ସୁଖଶାନ୍ତି ଦେଇପାରିବୁ ? ବାପା ବୋଉଙ୍କୁ ମୋର ଗଭୀର ନମସ୍କାର ଜଣାଇବୁ । ମୁଁ ତ ବର୍ତ୍ତମାନ ସମୁଦ୍ରରେ ଭାସୁଛି । ତମର ଚିଠି ସବୁ ପାଇବି ଯାଇ ଏ ମାସ ଶେଷରେ । ସେତେବେଳ ଯାଏଁ ମୁଁ ତମମାନଙ୍କ ସମ୍ବନ୍ଧରେ ଅନ୍ଧକାରରେ । ଲଣ୍ଡନରେ ପହଁଚିଲେ ତତେ ବ୍ୟୋମ-ଡାକରେ ଚିଠି ଦେବି । ତତେ ବରାବର ମୁଁ ବ୍ୟୋମଡାକରେ ଚିଠି ଦେବି - ତତେ କେବଳ ।

ଆ ଧନ; ହତଭାଗ୍ୟର କଠୋର ପ୍ରାୟଶ୍ଚିତ୍ତରେ ତୋର ଚିତ୍ତ ବିଗଳିତ ହେଉ । ତୋ ପ୍ରତି ଅନ୍ୟାୟ ଅନାଚାର କରିଛି । ସବୁ ଭୁଲି ତୁ ଯେ ମତେ ସ୍ନେହ ଦେଇଛୁ ଓ ମୋ ଲାଗି ତ୍ୟାଗ କରିଛୁ, ତା'ର ପ୍ରତିଦାନ ମୁଁ ତୋର ଜନ୍ମଜନ୍ମାନ୍ତରର ସେବକ ହୋଇ ଶୁଝିବି ।

ତୁଇ ତ ମୋର ଜନମ ଜନମର । ଏକ ଜନମରେ ଏ ପ୍ରକାର ଦାମ୍ପତ୍ୟ ଜୀବନ ମିଳେନା । କେଉଁଠା ଲୋକ କାହାକୁ ପାଇ, କିପରି ଜୀବନ ଆଡ଼କୁ ଗତି କରୁଛି ଭାବିଲେ, ଯେ କେହି ଏହି ସିଦ୍ଧାନ୍ତରେ ପହଁଚିବ । ଆଜି ସମୁଦ୍ରପୀଡ଼ା ବେଳେ ମୁଁ ଖରାବେଳେ ବେଞ୍ଚରେ ପଡ଼ି ଶୋଇପଡ଼ିଲି ଓ ତତେ ସ୍ୱପ୍ନ ଦେଖିଲି । ଦେଖିଲି ତୁ ମୋ ପାଇଁ ଖାଇବାକୁ ବାଢ଼ି ମୋତେ ଡାକୁଛୁ - ମୁଁ ଖାଇବସିଲି, ତତେ ଡାକୁଛି ସାଥିରେ ଖାଇବାକୁ, ନିଦ ଭାଙ୍ଗିଗଲା । ହାୟରେ, ଏଇଥିପାଇଁ କେତେ କଳି ଲାଗିଛିରେ ପାଗ୍‌ଲି ! ସେସବୁ ମନେ ପକେଇବୁ;

ହେଇଥାଏରେ - ମତେ ଦୋଷ ଦେବୁନି - ହତଭାଗ୍ୟ ମୂର୍ଖଟା ମୁଁ - ମତେ କ୍ଷମା ଦେ, ମତେ ସ୍ନେହରେ ଧର୍‌ରେ - ମୋର ଜୀବନସଂଗ୍ରାମର କ୍ଷତ ପୋଛିଦିଏରେ - ଆ, ଆ ମତେ ଆଲିଙ୍ଗନରେ ଧ....x x x x

ତୋର ପ୍ରିୟ

N.B. : ଧନ, ବର୍ତ୍ତମାନ ୧୨ ତାରିଖ ସକାଳ, ଜାହାଜ ନେପଲ୍‌ସରେ ଲାଗିଛି । ମୁଁ ଚିଠି ପକେଇବାକୁ ଓ ନଗର ଦେଖିବାକୁ ଯାଉଛି x x x x ମୋର ଜଣେ ସାଙ୍ଗ ଲଫାପା ଉପରେ ଏହି ଚିହ୍ନ ସବୁ ଦେଇ କହିଲେ ଯେ, ଏହାର ଅର୍ଥ *kisses* । ତୁ ମତେ ସେହିପରି ଭାବରେ ନେବୁ; ମୋର ଆଉ ନେ x x x x ।



ସାତ

## ଛାତି ଫାଟି ଯାଉଛିରେ, ଧନ

୨୬.୯.୩୭
ରବିବାର, ଦିନ ୨ଟା

ପ୍ରାଣର ଧନରେ,

ପ୍ରାଣର ହେମ ମୋର, ପାଗ୍‌ଲି, ଏ ଚିଠି ଲେଖୁଛି । ମୋର ଆଖି ଲୋତକପୂର୍ଣ୍ଣ । ଯା ପୂର୍ବରୁ ବୁଲିବାକୁ ଯାଇଥିଲି ସକାଳ ୧୦ଟାରେ- Dr. Laudlamଙ୍କ ସାଥିରେ churchକୁ ବି ଗଲି - ଆଜି ରବିବାର - କିନ୍ତୁ କେବଳ ତୁଇ ମନେ ପଡ଼ିଲୁ । ପ୍ରାୟ ବାରଟାରେ ଫେରିଲି । ଚୌକିରେ ବସୁ ବସୁ ଧାର ଧାର ହୋଇ ଲୁହ ବହିଗଲା । ଛାତି ଫାଟିଯାଉଛିରେ ଧନ - ବର୍ତ୍ତମାନ ଦୁଇଟା - ସେଠି ରାତି ହେବଣି । ହୁଏତ ତୁ ମୋ କଥା ମନେ ପକାଉଥିବୁ । କିମିତି ମୁଁ ଦୁଇବର୍ଷ କଟାଇବି ଏଠି ମୁଁ ଭାବିପାରୁନି । ବଡ଼ ଉଦାସୀନ ଲାଗିଲାଣି । ସେଥିରେ ପୁଣି ଅର୍ଥଚିନ୍ତା ଲାଗିରହିଛି । ସବୁ ଦୁଃଖ ପୁଞ୍ଜିଭୂତ ହେଇ ମତେ ମ୍ରିୟମାଣ କରି ପକାଉଛନ୍ତି । ଏହି ଦୂର ବିଦେଶରେ, ବନ୍ଧୁହୀନ, ସହାୟହୀନ ହୋଇ, ତୋର ବିରହ ଓ ଦାରିଦ୍ର୍ୟର କଷାଘାତ ମୁଁ କିମିତି ସହିବି । ତୋର ଚିଠି ଏଯାଏ ପାଇନି । ସେଥିପାଇଁ ମନ ବଡ଼ ବ୍ୟାକୁଳ ହେଉଛି । ମୁଁ Newcastle ପାଇଁ High Commissioner Officeରେ ଚେଷ୍ଟା କଲି ।

କିନ୍ତୁ ସେମାନେ କହିଲେ, 'ଏସବୁ ବର୍ତ୍ତମାନ ବଡ଼ ଜଞ୍ଜାଳର କଥା । ଯାହା ହେଇଛି ତାକୁ ଓଲଟ ପାଲଟ କରିବାର ସମୟ ଏ ନୁହେଁ । ବାଧ ହୋଇ ଏଠାକୁ ଆଇଲି । ଦୁର୍ଗା ପାଖରେ ଥିଲେ ଏତେ ନିର୍ବିସହ ବୋଧ କରନ୍ତିନି । ସେ ଆସିଗଲେ ଓ ମତେ ଚିଠି ଫିଠି ଦେଲେ ଗୋଟେ କଥା ବା ହେବ । କିନ୍ତୁ ବର୍ତ୍ତମାନ ମତେ ବଡ଼ ମାନସିକ ବେଦନା ଭୋଗ କରିବାକୁ ପଡୁଛି । ଗୃହ ଓ ଦାମ୍ପତ୍ୟ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରିସାରିଲା ପରେ ଏସବୁ ଲାଞ୍ଛନା ଓ ଜଞ୍ଜାଳ ବଡ଼ ଅସହ୍ୟ । Newcastleରେ ଯାଠୁ ଶସ୍ତାରେ ଚଳି ପାରିଥାନ୍ତି ମୋର ଧାରଣା ହେଉନି । ଦୁର୍ଗା ୬୦ ଟଙ୍କାର କଥା ଲେଖିଥିଲା; କିନ୍ତୁ ମୁଁ ତ ୪୦ଟଙ୍କାରେ manage କରିବାକୁ ବସିଛି । ତେଣୁ Newcastle ନଯାଇ ମୋର ଆର୍ଥିକ କ୍ଷତି ହୋଇଛି ବୋଲି ମୁଁ ଭାବୁନି । କେବଳ ଦୁର୍ଗାର ସଙ୍ଗଲାଭ କରିଥାନ୍ତି, ଏଇ ମାତ୍ର । ତମେ ଶୀଘ୍ର Air mailରେ ଚିଠି ଦେବ । ମୋର ଅବସ୍ଥା ତମେଇ କେବଳ ଅନୁମାନ କରିପାରୁଥିବ । ବାପାଙ୍କୁ ସବୁକଥା ବୁଝାଇ କହିବ । ଇଂଲଣ୍ଡରେ ଯେତେ ଛାତ୍ର ଅଛନ୍ତି ସମସ୍ତଙ୍କଠୁ ମୁଁ ଇ ବୋଧେ କମ୍ ଖର୍ଚ୍ଚରେ ଚଳୁଛି । ତଥାପି ଯଦି ମତେ ଦାରିଦ୍ର୍ୟର ଲାଞ୍ଛନା ପାଇବାକୁ ହେବ, ତେବେ ବିଧାତାକୁ ହିଁ ଦୋଷ ଦେବାକୁ ହେବ । ୨୫୦ ଟଙ୍କାରେ ବିଜୟନଗରଠୁ ଲଣ୍ଡନ ଆସିଲି; ଏଠି ୪୦ ଟଙ୍କାରେ ଚଳିବି - ମୁଁ ଆଉ ଅଧିକ କ'ଣ କରିବି କହ ?

ଧନରେ, କିଛି କାମ କରିବାକୁ ମନ ହେଉନି । କେବଳ ତୋରି କଥା ମନେପଡୁଛି । ବେଦନା ପୁଞ୍ଜିଭୂତ ହେଲେ ଅଶ୍ରୁ ଗଣ୍ଡଦେଇ ବହିଯାଉଛି । ଲେଖାଲେଖି ବା ପଢ଼ାପଢ଼ି କିଛି ହେଲେ କରିପାରୁନି । ୟୁନିଭରସିଟି ଅକ୍ଟୋବରରେ ଖୋଲିବ । Ph.D. ପାଇଁ ଚେଷ୍ଟା କରିବି । ନହେଲେ ସେଇ M.A. ନେବି - ବିଶେଷ କିଛି କ୍ଷତି ନାହିଁ । Ph.D.ରେ କିଛି ଟଙ୍କା କମ୍ ପଡ଼ିବ, ଏଇ ମାତ୍ର । କିନ୍ତୁ ମୋର ମାନସିକ ଅବସ୍ଥା ଏହିପରି ଯଦି ରହେ ଓ ଯଦି ଟଙ୍କା ପଇସାର କୌଣସି ସୁବିଧା ନହୁଏ, ତେବେ ମୁଁ କ'ଣ କରିବି ତୁଇ କେବଳ ଅନୁମାନ କରିପାରିବୁ । ଓଃ ! ଆକୁଳ ମିଶ୍ରେ ୩୦୦ ଟଙ୍କା ଦେଇଥିଲେ, ମୋର ଏହିକ୍ଷଣି ୫ ମାସ ଯାଏ ଚିନ୍ତା ନଥିଲା - ହତଭାଗ୍ୟର କପାଳକୁ ଦେବାଲୋକ ବି ମୁହଁ ମୋଡୁଛନ୍ତି ।



## ଆଠ

# ତୋ ଚିଠି ଲେଖି ପୁଣି କାନ୍ଦିଲି

୨୭.୯.୩୭

ସୋମବାର ଦିନ ୧୦ଟା

ଧନରେ, ପାଗ୍‌ଲି

କାଲି ତୋ ଚିଠି ଲେଖି ପୁଣି କାନ୍ଦିଲି । ବଡ଼ ଖରାପ ଲାଗୁଥାଏ । ମେଘୁଆ ଦିନ ମନକୁ ଆହୁରି ଉଦାସୀନ କରୁଥାଏ । ଭାବୁଭାବୁ ଚାରିଟା ବାଜିଗଲା । ମୁଁ ଭାବିଲି, 'ଏହିପରି ଯଦି ଘରେ ବସି କାନ୍ଦେ, କିମିତି ଦୁଇବର୍ଷ କଟେଇବି' । ରବିବାର ରାତି ୮ଟାରେ ଡକ୍ଟର

ଲଡ୍‌ଲାମ୍‌ଙ୍କ ଘରେ କ୍ଲବ୍‌କୁ ନିମନ୍ତ୍ରଣ - ଭାବୁଥାଏ ଯିବି କି ନାହିଁ - ଭାବୁଥାଏ ମୋର ଚିତ୍ତର ଦାବଦାହ କ'ଣ କ୍ଲବ୍ - ସାଙ୍ଗରେ ମିଟିବ ? ତେବେ ସ୍ଥିର କଲି 'ନା' ଏପରି ବସି ବସି ମ୍ରିୟମାଣ ହେବା ଅପେକ୍ଷା, ଦଶଲୋକ ସାଙ୍ଗେ ମିଶି ମନ ଫେରେଇବା ଦରକାର । ସାଙ୍ଗେ ସାଙ୍ଗେ cooker ଲଗେଇ ଦେଲି; ଘଣ୍ଟାକ ଭିତରେ ସବୁ ready । ମୁଁ ଭାତ ଇତ୍ୟାଦି ରଖିନେଇ କେବଳ ଗରମ ଦୁଧ ଟିକିଏ ଖାଇ ବାହାରି ପଡ଼ିଲି । ସାଧାରଣତଃ ମୁଁ ଟ୍ରାମ୍ ବା ବସ୍ ବ୍ୟବହାର ନକରି ଚାଲୁଛି । ଲଡ୍‌ଲାମଙ୍କ ଘର ଏଠୁ ପ୍ରାୟ ୩ ମାଇଲ୍ ହେବ । ଚାଲି ଚାଲି ଗଲି । ସେତେବେଳେ ସେ ବୁଲି ଯାଇଥିଲେ । ମୁଁ ଦୁଆରର ବୋତାମ ଟିପିବା ମାତ୍ରେ ତାଙ୍କର କନ୍ୟା ଆସି ଭିତରକୁ ନେଇଗଲେ ଓ ମୋର overcoat ଗୋଟେ ଘରେ ରଖିବାକୁ ଦେଖେଇ ଦେଇ, ଉପର ବୈଠକଖାନାକୁ ନେଇଗଲେ । ସେ ଘରେ ଜଣେ ଜର୍ମାନ୍ ତରୁଣୀ, ପିଆନୋ-ବାଦନ-ରତା । ମତେ ଦେଖି ହସି ହସି କହିଲେ, ମତେ ଚିହ୍ନ ଯେ ! - ମୁଁ ସକାଳେ ତମ ସାଥିରେ ମଟରରେ ଯାଇଥିଲି । ମୁଁ କହିଲି, 'ଓଃ ତମେ ଯାଇଥିଲ ?' ତା'ପରେ ସେ ପିଆନୋ ଛାଡ଼ି ମୋ ସାଥିରେ କଥା ହେବାକୁ ଲାଗିଲା । ସେ ଲଡ୍‌ଲାମଙ୍କ ଘରେ ରହେ - ଜର୍ମାନୀରୁ ଇଂରେଜୀ ଶିକ୍ଷା କରିବାକୁ ଏଠିକି ଆସିଛି । ପ୍ରାୟ ୬ ମାସ ରହିଲାଣି - ଆଉ ଦୁଇମାସ ଖଣ୍ଡେ ରହିବ । ଅନ୍ୟ ୟୁରୋପୀୟ ଜାତିମାନଙ୍କ ପକ୍ଷରେ ଇଂରେଜୀ ବା ଅନ୍ୟ ୟୁରୋପୀୟ ଭାଷା ଶିଖିବା ବଡ଼ ସୁବିଧା । ଖୁବ୍ କମ୍ ସମୟରେ ଏମାନେ ଭଲକରି ଶିଖିଯାଆନ୍ତି । ଆମର ଜୀବନବ୍ୟାପୀ ସାଧନାରେ ମଧ୍ୟ ତା ହୁଏନି । ଲଡ୍‌ଲାମଙ୍କ ଘରେ ପୋଲାଣ୍ଡରୁ ଗୋଟେ ପିଲା ଆସି ରହିଛି । ସେ ଆରବର୍ଷ ୪ ମାସ ମାତ୍ର ରହି ଏଠି ଇଂରେଜୀ ଶିଖିଯାଇଥିଲା; ଏବେ ସୁନ୍ଦର ଇଂରାଜୀ କହୁଛି ଓ ଇଂରାଜୀରେ ଏଠି Economics M.A. ପଢ଼ିବ - ଦେଖୁଛ କିପରି ସୁବିଧା ।

କ୍ରମେ ଡ. ଲଡ୍‌ଲାମ୍ ଓ ଅନ୍ୟ ଅତିଥିମାନେ ଆସିଲେ । ଅନେକ ଜାତିର ଲୋକେ ଏଠିକି ଆସନ୍ତି । ଆମେରିକା, ଋଷିୟା, ଜର୍ମାନ୍, ପୋଲାଣ୍ଡ, ମରିସସ୍, India, China ପ୍ରଭୃତି ସବୁ ଲୋକଙ୍କୁ ଏଠି ଭେଟିଲି । କୁଞ୍ଚିତ କେଶ ଓ କୃଷ୍ଣକାୟ ନିଗ୍ରୋ ଏଠି ଶ୍ୱେତାଙ୍ଗମାନଙ୍କ ପରି ବ୍ୟବହାର ପାଏ ଓ ସମ୍ମାନିତ ହୁଏ । ପ୍ରଥମେ ସମସ୍ତେ ଏକାଠି ହେଲାପରେ, ଚା'ପାନ ହେଲା । ପ୍ରାୟ ୧୦୦ ଜଣ ଖଣ୍ଡେ ଉପସ୍ଥିତ ଥିଲେ । ଅନେକ ପୁରାତନ ଓ ନୂତନ ଭାରତୀୟ ଛାତ୍ର ମଧ୍ୟ ଦେଖାଦେଲେ - ସେମାନଙ୍କ ସଙ୍ଗେ ପରିଚୟ ହେଲା । ମଜାର କଥା ଶୁଣିବ - କେତେକ ଭାରତୀୟ ଛାତ୍ର ମୋ ଆଗରୁ ଆସି YMCA ହଷ୍ଟେଲ୍‌ରେ ପଡ଼ି ରହିଛନ୍ତି । ବସା ଖୋଜି ପାଇନାହାନ୍ତି - ମୁଁ ଗୋଟିଏ ରାତି ମାତ୍ର ରହିଲା ପରେ ତହିଁ ଆରଦିନ ବସା ଖୋଜି ସେଠା ଛାଡ଼ି ଆସିଲି । ମତେ ସେମାନେ ସେଠି ଦେଖିଥିଲେ ଓ ମତେ ଦେଖି, ମୁଁ ସାଙ୍ଗେ ସାଙ୍ଗେ କିପରି ବସା ପାଇଲି ବୋଲି ଆଶ୍ଚର୍ଯ୍ୟ ହେଲେ । ମୁଁ କହିଲି ଯତ୍ନ ନକଲେ ରତ୍ନ ମିଳିବ କିପରି ? ଆଉ ଗୋଟେ କଥା ଏଠି ମଧ୍ୟ କହିରଖେ । ଯେଉଁଦିନ ରାତିରେ ମୁଁ ଷ୍ଟେସନ୍‌ରୁ ଓହ୍ଲେଇ ହଷ୍ଟେଲ୍‌ର ଗୋଟିଏ ନିର୍ଜନ କକ୍ଷରେ ଶୋଇ ପରଦିନର କଥା ଭାବୁଥାଏ,

ତୋର ମାନସୀ ପ୍ରତିମା ମୋତେ କହିଲା- ପ୍ରିୟ, ତୁ ଚିନ୍ତା କରନା, ତୋ ମନମୁତାବକ ଘର ନିଶ୍ଚେ ମିଳିବ । ପ୍ରଥମ ଚେଷ୍ଟା ଏକାବେଳେକେ ନିଷ୍ଫଳ, ଦ୍ୱିତୀୟ ଚେଷ୍ଟା ଆଶାଜନକ । ତୃତୀୟ ଚେଷ୍ଟାରେ ସିଦ୍ଧି । ଆଶ୍ଚର୍ଯ୍ୟର କଥା ଏହି ଯେ, ଠିକ୍ ଏହା ହିଁ ଘଟିଲା । ପ୍ରଥମ ଚେଷ୍ଟାରେ ଏକାବେଳେକେ ବିଫଳ - ଦ୍ୱିତୀୟ ଲାଣ୍ଡଲେଡି ମତେ ତୃତୀୟ ଲାଣ୍ଡଲେଡି (ତା'ର ଝିଅ) ପାଖକୁ ପଠେଇ ଦେଲା । ତୃତୀୟ ଲାଣ୍ଡଲେଡ଼ି ମତେ ଗ୍ରହଣ କଲା । ଧନ୍ୟରେ ସତୀ ! ମୁଁ ତା'ର ସାଥିରେ ଗଲି । ବୁଢ଼ୀର କି ବ୍ୟବହାର ! ଅନେକ ଦୂର ସାଥିରେ ନେଇ, ବସାଘର ପାଇଁ ଗୋଟେ ଘର ଦେଖେଇ ଦେଇ ତା' ପରେ ସେ ମୋର ମଙ୍ଗଳ କାମନା କରି ଗଲା । କି ଜାତି ଏ, ବାପ୍‌ରେ ! ଆମ୍ଭମାନଙ୍କଠୁ କେତେ ଉଚ୍ଚରେ । ରାସ୍ତାରେ ଯେତେବେଳେ ଯାହାକୁ କିଛି ପଚାରିଛି, କେବେହେଲେ ଅଭଦ୍ର ବ୍ୟବହାର ପାଇନି; ସମସ୍ତେ ମତେ ଯଥାସାଧ୍ୟ ସାହାଯ୍ୟ କରିବାକୁ ଚେଷ୍ଟା କରିଛନ୍ତି ।



## ନଅ

# ଓଃ ଏଡ଼େ ଏକାକୀ ଲାଗୁଛି ମୋତେ ଏଠି

C/o - Mrs. Guthnil<br>19,Bernard Derrace<br>Edinburgh, Scotland<br>24.9.37

ପ୍ରାଣର ଲକ୍ଷ୍ମୀରେ,

ପ୍ରାଣର ଧନ ମୋର,

ଏ ଚିଠି ଲେଖିଲା ବେଳେ ମୋର ଛାତି ଫାଟିଗଲା ପରି ହେଉଛି । ଦିନଯାକ ଘର ଖୋଜିବାରେ ବୁଲି ବୁଲି, ବର୍ତ୍ତମାନ ପାଇ ସଙ୍ଗେ ସଙ୍ଗେ ତୋ ପାଖକୁ ଲେଖୁଛି । ସକାଳ ଆଠଟାରେ ବାହାରି ୨ଟା ବେଳେ ଯେତେବେଳେ ନିରାଶ ହୋଇ ବସାକୁ ଫେରିଲି, ମୁଁ ବାଳକ ପରି ଛାତି ଫଟେଇ କାନ୍ଦିଲି, ଖାଲି ତତେ ମନେପକେଇ । ଭାବିଲି, ଦାରିଦ୍ର୍ୟ ପରେ କୌଣସିମତେ ତ କାଳ କଟେଇବାର ବନ୍ଦୋବସ୍ତ ହୋଇଥିଲା, ପୁଣି କାହିଁକି ଦାରିଦ୍ର୍ୟ ବରଣ କଲି; ମୋର ଏସବୁ କିଛି ଦରକାର ନାହିଁ, ମୁଁ ହେମକୁ ଓ ତା'ର କୁଡ଼ିଆ ଘରଟି ମାତ୍ର ଚାହେଁ । ଆଖିରୁ ଲୁହ ପୋଛି ପୁଣି ବାହାରିଲି; କିନ୍ତୁ ଭାଗ୍ୟକୁ ମନମୁତାବକ ଘରଟିଏ ମିଳିଛି । ଏଠି ନିଜେ ରାନ୍ଧି ଖାଇଲେ, ଘର ମିଳିବା ଭାରି କଷ୍ଟ । କିନ୍ତୁ ଖାଇବା ଓ ରହିବା ପାଇଁ ଅନ୍ତତଃ ସପ୍ତାହରେ ୩୦ ସିଲିଂ ଦରକାର । ତା'ର ଅର୍ଥ ମାସକୁ ୬ ପାଉଣ୍ଡ ବା ୮୪ ଟଙ୍କା ଖଣ୍ଡେ । ସେଥିରେ ପୁଣି ଖରାବେଳେ ଖାଇବାଟା ନିଜ ହାତରୁ । ତା'ମାନେ ମାସକୁ ଅନ୍ତତଃ ଶହେଟଙ୍କା । ମୁଁ ଏତେ ଦେଇପାରିବି କୁ'ଠୁ । ତେଣୁ ରହିବାକୁ ଖାଲି ଘରଟିଏ ଖୋଜିଲି - ନିଜ ହାତରେ ରାନ୍ଧି ଖାଇବାକୁ ।

୨୫.୯.୩୭

ଧନରେ, ବଡ଼ ଭୁଲ୍ କଲି । କାଲି ମୁଁ ତୋର ଚିଠି ଖୋଜିବାକୁ King's buildingsକୁ ଗଲି । Dr. Mackanzie ନାହାନ୍ତି, ତେଣୁ Dr.Laudlamଙ୍କ ସଙ୍ଗେ କଥା ହେଉ ହେଉ ସେଠି ମୋ କଲମଟା ଛାଡ଼ି ଆଇଲି । ବସାକୁ ଫେରି Landladyକୁ କଲମଟିଏ ମାଗି ଲେଖିବାକୁ ଆରମ୍ଭ କଲି । କିନ୍ତୁ ସେ ଦବୁରା କଲମ ଚାଲିଲାନି । ମୋର ଅନେକ କଥା ଲେଖିବାର କଥା । ତେଣୁ ଅଧା ଲେଖି ଛାଡ଼ିଦେଲି । କିନ୍ତୁ ଆଜି ପୋଷ୍ଟ ଅଫିସ୍‌ରେ ବୁଝିଲି India Air Mailରେ ଚିଠି ଯିବାକୁ ହେଲେ ଏଠି ଶୁକ୍ରବାର ବା ମଙ୍ଗଳବାର Post କରିବାର କଥା; କାଲି ଶୁକ୍ରବାର ଥିଲା; ଆଜି ଶନିବାର । ଏ ଚିଠି ତେଣୁ ମଙ୍ଗଳବାର ପର୍ଯ୍ୟନ୍ତ ଅପେକ୍ଷା କରିବ । ଲଣ୍ଡନ କଲିକତା ୬ ଦିନ air mail; ସେଠୁ ରାଇରଙ୍ଗପୁର ୨ ଦିନ; ଏଠୁ ଲଣ୍ଡନ ଦିନେ; ଏପରି ୯ ଦିନରେ ତୁ ମୋ ଚିଠି ପାଇବୁ । ତୁ ଶୀଘ୍ର ମତେ air mailରେ ଉତ୍ତର ଦେବୁ । ମୁଁ ଚାତକ ପରି ଅନେଇ ରହିଛି, ତୋଠୁ ଚିଠି ପାଇବା ପାଇଁ । କାଲି ଦିନଯାକ ମୁଁ ପାଗଲ୍ ପରି ତତେ ମନେପକାଇ କାନ୍ଦିଛି । ଓଃ, ଏଡ଼େ ଏକାକୀ ମତେ ଲାଗୁଛି ଏଠି, ଥରେ ଥରେ ଫେରିଯିବାକୁ ମନ ହେଉଛି; କିପରି ଦୁଇବର୍ଷ କଟେଇବି । ତା ଉପରେ ପୁଣି ଅର୍ଥଚିନ୍ତା ମତେ ପ୍ରକୃତରେ ପାଗଲ୍ କଲାଣି । ଦେଖୁଛି, ମୁଁ ଏଠି ସପ୍ତାହରେ ୧୫ ସିଲିଂରେ ଚଳିଯିବି । ତା'ର ଅର୍ଥ ମାସକୁ ୩ ପାଉଣ୍ଡ ବା ୪୦ ଟଙ୍କା । ସବୁ ଖର୍ଚ୍ଚ ମିଶି ୫୦ଟଙ୍କାରୁ କେବେହେଲେ ବେଶି ହେବନି । କାଲି ଉପରଓଳି ଚାଉଳ ଇତ୍ୟାଦି ବଜାରରୁ କିଣିଆଣି ଆଜି ସକାଳୁ କୁକର୍‌ରେ ରାନ୍ଧିଲି । ଚମତ୍କାର ହେଲା । ମୁଁ ଏତେ ଶସ୍ତାରେ ଚଳିଲେ ମଧ ଟଙ୍କା କାହୁଁ ଆସିବ ? ଶରତ ମୁଖାର୍ଜୀ ଟଙ୍କା ଦେବେ କି ନା ସନ୍ଦେହ; ଦେଲେ ୨୫ଟଙ୍କା ଦେବ । ଆଉ ଟଙ୍କା ? ଏଇ ସବୁ ଭାବି ଭାବି ମୁଁ ମ୍ରିୟମାଣ ହେଇଯାଉଛି । କଲେଜ୍ ଫିସ୍, ପୋଷାକ, ବହି ଇତ୍ୟାଦି ବାଦ୍ ଦେଲେ, ମୋ ପାଖରେ ଆଉ ଦୁଇ ମାସକୁ ମାତ୍ର ଚଳିବାର ପାଣ୍ଠି ଅଛି । ତା'ପରେ କ'ଣ ହେବ ମୁଁ ଭାବିପାରୁନି । ହଉ, ଏଇ ଦୁଇମାସ ଅନ୍ତତଃ ଶାନ୍ତିରେ ରହିବା ପାଇଁ ତୁ ମତେ ଶୀଘ୍ର ଚିଠି ଦେ । Dr. Mackenzie ଛୁଟିରେ ଉତ୍ତର Scotland ବା Highlandକୁ ଯାଇଛନ୍ତି । ତମେ ଯଦି ଚିଠି ଦେଇଥିବ, ତେବେ ତାଙ୍କ ପାଖକୁ ସେ ସବୁ redirected ହୋଇଯାଇଛି । ସେ ୩୦ ତାରିଖ ଭିତରେ ପହଞ୍ଚିବେ । ସେତେବେଳେ ଯାଇ ତମର ଯଦି ଚିଠି ଥିବ ପାଇବି ।

ଆଜି ସକାଳେ King's Buildingsକୁ କଲମ ଖୋଜିବାକୁ ଗଲି । ଡକ୍ଟର ଲଡ୍‌ଲାମ୍ ସେଠି ନଥିଲେ । ତେଣୁ ତାଙ୍କ ଘରକୁ ଗଲି । ମୁଁ ସେଠି ପହଞ୍ଚିଲା ବେଳେ ସେ ବଗିଚାରେ କାମ କରୁଥିଲେ । ହାତରେ ମାଟି ବଲବଲ । କିନ୍ତୁ ମୋ ନାମ ଶୁଣି ସେ ଘରକୁ ଚାଲିଆସିଲେ ଓ ମୁଁ ସୁପ୍ରଭାତ ଜଣାଉ ଜଣାଉ, ସେ ପକେଟ୍‌ରୁ କଲମଟି କାଢ଼ି ହସି ହସି ଦେଖେଇବାକୁ ଲାଗିଲେ । ମୁଁ କଲମଟି ଗ୍ରହଣ କଲି ଓ ସେ ଏହାର ଅଧିକତର ଯତ୍ନ ନେବାକୁ କହିଲେ । ଅତି ଚମତ୍କାର ଲୋକ । ତାଙ୍କ ଘରେ ଗୋଟେ ସାର୍ବଜନୀନ କ୍ଲବ୍ (cosmo

politan club) ସେ start କରିଛନ୍ତି । କାଲି ରବିବାର ରାତି ୮ଟାରେ ସେଠାକୁ ଯିବାକୁ ମତେ ସେ କହିଛନ୍ତି । ସେ ଇଂରେଜ - ଏଠାର ବିଜ୍ଞାନ କଲେଜର ଅଧ୍ୟାପକ । କିନ୍ତୁ ସବୁ ଜାତି ପ୍ରତି ତାଙ୍କର ସମଜ୍ଞାନ । ଭାରତର ଅନେକ ଖବର ସେ ଜାଣନ୍ତି - ଓଡ଼ିଶାର ନାଁ ଶୁଣିଛନ୍ତି । ଆଜି ପଞ୍ଜାବରେ ଯେଉଁ ଜାଲିଆନାବାଲାବାଗ୍ ଅତ୍ୟାଚାର ହେଉଥିଲା (ନ ଜାଣିଥିଲେ ବାପାଙ୍କୁ ପଚାର) ସେ ସମ୍ବନ୍ଧରେ କଂଗ୍ରେସର ପ୍ରକାଶିତ ରିପୋର୍ଟ ମତେ ଦେଖେଇଲେ । ଭାରତବର୍ଷରେ ଏ ବହି ପଢ଼ିବା ବେଆଇନ୍, ମୁଁ ସେ ବହି ଦେଖିଥିଲି, କିନ୍ତୁ ପଢ଼ିନି । ସେ ତାକୁ ଦେଖାଇ କହିଲେ, ''ଯାକୁ ତମେ ପଢ଼ନି, ରାତିରେ ଦୁଃସ୍ୱପ୍ନ ଦେଖିବ । ପ୍ରତ୍ୟେକ ଇଂରାଜ ଏଥିପାଇଁ ଲଜ୍ଜିତ - ଭାରତବର୍ଷରେ ଇଂରାଜ ଶାସନର ଇତିହାସରେ ଏହା କୃଷ୍ଣତମ କଳଙ୍କ ।'' ମୁଁ କହିଲି, ଆପଣ ସିନା ବ୍ୟକ୍ତିଗତ ଭାବେ ଲଜ୍ଜିତ ହେଉଛନ୍ତି - ସରକାର ଓ ଇଂରାଜ ଜାତି କ'ଣ କଲା ? ଯେଉଁ ଡାୟର ଏହା କଲେ, ସେ ବେଶ୍ ମୋଟା ପେନ୍‌ସନ୍ ପାଉଛନ୍ତି ଓ ସରକାର ତାଙ୍କୁ ସାମାନ୍ୟ ତିରସ୍କାର ମଧ୍ୟ କଲେନି । ସେ କହିଲେ, ତା' ଠିକ୍ । ତେବେ ଇଂଲାଣ୍ଡରେ ସାଧାରଣଙ୍କ ପକ୍ଷରୁ ଏହାର ତୀବ୍ର ନିନ୍ଦା ହୋଇଥିଲା । ଡାୟାର୍‌ଙ୍କୁ ବଡ଼ବଡ଼ିଆମାନେ ରକ୍ଷାକଲେ ମାତ୍ର ।

ତମେ ଶୁଣିଲେ ଅତ୍ୟନ୍ତ ଦୁଃଖିତ ହେବ ଯେ, ଏଠାରେ ଯେଉଁ ଭାରତୀୟ ଛାତ୍ର ଅଛନ୍ତି ସେମାନେ ଆମକୁ କୌଣସି ପ୍ରକାରେ ସାହାଯ୍ୟ କରୁନାହାନ୍ତି ବା କରିବେନି । ଅନେକ ଭାରତୀୟ ଛାତ୍ରଙ୍କୁ ଏଠି ଓ ଲଣ୍ଡନରେ ଦେଖିଲିଣି । କିନ୍ତୁ ଦେଶର ଲୋକ ବୋଲି, ଆଗ୍ରହ ପ୍ରକାଶ କରିବା ଦୂରେ ଥାଉ, ପ୍ରାୟ ସମସ୍ତେ ମୁହଁ ଆଢ଼େଇ ଦେଇ ପଳାଉଛନ୍ତି । ମୁଁ ଲଣ୍ଡନରେ ଉପରେ ପଡ଼ି ଜଣେ ଦି' ଜଣଙ୍କ ସଙ୍ଗେ କଥା ହେଲି; କିନ୍ତୁ ସହାନୁଭୂତି ନଥିଲେ, ଏସବୁ ତ ବେଶୀ ଦୂର ଯାଇପାରେନା । ଯିବା ଉଚିତ ମଧ୍ୟ ନୁହେଁ । ତେଣୁ ମୁଁ ଆଉ ଭାରତୀୟମାନଙ୍କ ସଙ୍ଗେ ମିଶୁନି ।

ଅପରପକ୍ଷରେ ଯେଉଁ ବ୍ରିଟିଶ୍ ଜାତିକୁ ଆମେ ଶତ୍ରୁ ବୋଲି ଭାବୁ, ତାଙ୍କର ଚରିତ୍ରରେ ମୁଁ ବାରମ୍ବାର ମୁଗ୍ଧ ହେଉଛି । ଏମାନଙ୍କର କି ସହାନୁଭୂତି ! କି ଭଦ୍ରତା ! କି ସୁନ୍ଦର ବ୍ୟବହାର ! ଗୋଟିଏ ସ୍କଚ୍ ଦମ୍ପତି ମତେ ରେଳରେ ଭେଟିଲେ ଓ ଏଡିନ୍‌ବର୍ଗ ଷ୍ଟେସନ୍‌ରେ ଓହ୍ଲେଇ, ମୋ ପାଇଁ କୁଲିକି ପଇସା ଦେଇ, ମୋ ପାଇଁ ଟାକ୍ସି ଡାକି, ମୋ ସାଥିରେ ଆସି ବସା ଖୋଜି ମୋତେ ରଖେଇ ଦେଇ ଗଲେ - ରାତି ପ୍ରାୟ ୧୦ଟାରେ । ଆମ ଦେଶରେ ଏହା ତମେ କେବେ ସ୍ୱପ୍ନରେ କଳ୍ପନା କରିବ ? କାଲି ସକାଳେ ଘର ଖୋଜିବାକୁ ଯାଉ ଯାଉ ଗୋଟେ ଲୋକକୁ ଗୋଟେ ଘରର ବାଟ ପଚାରୁଛି, ଏହି ସମୟରେ ଜଣେ ବୁଢ଼ୀ ସଉଦା ଧରି ସେଇ ବାଟ ଦେଇ ଚାଲିଯାଉଥିଲା । ସେ ରାସ୍ତାର ସେପଟୁ ହସି ହସି ପଚାରିଲା, ହଁ ହଁ ମୁଁ ସେଇ ଆଡ଼ିକି ଯାଉଛି । ଆସ ମୁଁ ଦେଖେଇ ଦେବି । ଡ: ଲଡ୍‌ଲାମ୍ ମତେ ଚା' ଏକ କପ୍ ବଢ଼ାଇଦେଲେ । ମୁଁ କହିଲି ମୁଁ ଚା' ଖାଏନା, କ୍ଷମା କରନ୍ତୁ । ସେ କହିଲେ,'ତମକୁ ଖାଇବାକୁ ହେବ, ଏହା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ପାନୀୟ, ନିରାମିଷ' - ମୁଁ ଗ୍ରହଣ କଲି । ଚା' ସାଥିରେ ବିସ୍କିଟ୍ ବି ଥିଲା । ମୁଁ ଗୋଟିଏ ଆଣିବାରୁ ସେ ଦୁଇଟା ଆଣିବାକୁ

କହିଲେ । ତା'ପାନ ପରେ ସମସ୍ତେ ବସିଲୁ । ସମସ୍ତଙ୍କ ପାଇଁ ଜାଗା ନାହିଁ - ଅଧିକାଂଶ ତଳେ ବସିଲେ - ସାହେବ ସାହିବାଣୀ ଚକାପକେଇ ବସି ପାରନ୍ତିନି, ସେମାନେ ଗୋଡ଼କୁ ଭାଙ୍ଗି ଗୋଟେ ଆଡ଼େ ଲମ୍ବେଇ ବସିଲେ । ତା'ପରେ ସନ୍ଧ୍ୟାର ନିର୍ଘଣ୍ଟ ଆରମ୍ଭ ହେଲା । ପ୍ରଥମେ ଜଣେ ଶ୍ୱେତ ନିଗ୍ରୋ ପିଆନୋ ବଜାଇଲେ । ତା'ପରେ ଆଉ ଜଣେ ବେହେଲା ବଜେଇଲେ । ତା'ପରେ ଜଣେ ନିଗ୍ରୋ ଇଂରେଜୀ ଗୀତ ଗାଇଲେ - ଆଉ ଜଣେ ତାଳ ରଖି ପିଆନୋ ବଜାଉଥାଏ । ଜଣେ Russian Mistress ତାଙ୍କର Club, library ସମ୍ବନ୍ଧରେ କେତେ କଥା କହିଲେ । ଯାହା music ହେଲା; ତାହା ଭାରତୀୟ ସଂଗୀତଠାରୁ ଆଦୌ ମଧୁରତର ନୁହେଁ । ଏସବୁ ହେଉ ହେଉ ରାତି ପ୍ରାୟ ୧୧ଟା - ମୁଁ ଫେରୁ ଫେରୁ ସାଢ଼େ ଏଗାର । ଅନେକଙ୍କ ସଙ୍ଗେ କଥା ହେଲା - ସେଥିରେ ମନଟା ଟିକିଏ ବଦଳିଛି । Dr. Laudlam ମଧ Ph.D. ପାଇଁ ଚେଷ୍ଟା କରିବାକୁ ବାଟ ବତେଇଛନ୍ତି - ଆଜି ତାହା କରୁଛି । ଶୀଘ୍ର ଚିଠି ଦେ' ରେ ଧନ; ନ ହେଲେ ମୁଁ ମରିଯିବି ଏଠି । ସବୁ କଥା ଲେଖିବୁ ।

ତୋର ପ୍ରିୟ

ଧନରେ, ଚିଠି ଲେଖିସାରି ପୁଣି କାନ୍ଦ କାନ୍ଦ ଲାଗୁଛି - କ'ଣ କରିବି - କିପରି କାଳ କାଟିବି ଏଠି ବୁଝିପାରୁନି । ତୁ ମତେ ଧୈର୍ଯ୍ୟ ଦେ ।



ଦଶ

## ପ୍ରାୟ ପ୍ରତିଦିନ କାନ୍ଦୁଛି

C/o - Guthnic
19,Bernard Terrace
Edinburgh, Scotland
18.10.37

ପ୍ରାଣର ପାଗ୍‌ଲିରେ,

ଏତେ ଦିନେ ତୋର ମନେ ପଡ଼ିଲି ? ଏଠାରୁ ପ୍ରଥମ ଚିଠି ଦେଲା ପରେ କେତେ ଯେ ବ୍ୟାକୁଳ ଅଶ୍ରୁ ପୁଣି ମୋର ଗଣ୍ଡ ଦେଇ ବହିଯାଇଛି, ତୁ କ'ଣ ତା'ର ଖବର ରଖିବୁ । ବର୍ତ୍ତମାନ ଦିନ ଅଢ଼େଇଟା । କଲେଜରୁ ଫେରି କୁକର୍ ବସେଇ ଦେଇଛି ଓ ଲେଖୁଛି; ଏପରି ସମୟରେ ତୋର ଚିଠି ପାଇଲି । ଖୋଲି ପଢୁଛି ଓ ଆଖିରୁ ଲୁହ ଝରଝର ବହିଯାଉଛି । ତୋର ଚିଠିରେ ଦୁଃଖର କଥା କିଛି ନାହିଁ - କିନ୍ତୁ ଏତେଦିନ ପରେ ତୋର ପତ୍ର ପାଇଲି ଓ ତୁ ସୁଖୀ ଅଛୁ, ଏହି ଭାବାବେଗ ସମ୍ଭାଳି ହେଲାନି; ବିକଳ ହୋଇ କାନ୍ଦିଲି; ଏଠାକୁ ଆସିଲା ଦିନୁ ମୁଁ ପ୍ରାୟ ପ୍ରତିଦିନ କାନ୍ଦୁଛି । ଦିନେ ଦିନେ ୨ ଘଣ୍ଟା ଖଣ୍ଡେ ଧରି କାନ୍ଦିଛି । ଏହି ମାନସିକ ଯନ୍ତ୍ରଣାରେ ମୁଁ ବହୁତ ଶୁଖିଯାଇଛି । ଦୁର୍ଗାମାଧବ ମତେ ଦେଖି ପ୍ରଥମେ ଏଇ କଥା ହିଁ କହିଲା । ମୁଁ ଜାଣେ, ମୋର ମାନସିକ ଯନ୍ତ୍ରଣା ହିଁ ଏହାର ପ୍ରଧାନ କାରଣ ।

ତମେ Thomas Cook ଠିକଣାରେ ଦେଇଥିବା ଚିଠି ମୁଁ ପାଇନି । ଦୁର୍ଗାମାଧବ ମଧ୍ୟ ଏଠାକୁ ଆସି ଦେଇଥିବା ଚିଠି ମୁଁ ପାଇନି । ସେ ୧୦ ତାରିଖରୁ ଆସିଲେଣି - କିନ୍ତୁ ମତେ ଜଣା ନଥିଲା । ମୁଁ ଅନ୍ଦାଜ କରି ୧୫ ତାରିଖ ଦିନ Newcastleକୁ ଖଣ୍ଡେ ଚିଠି ପକେଇ ଦେଲି ଓ ତହିଁ ଆରଦିନ ତାଙ୍କଠୁ ଖଣ୍ଡେ ତାର ପାଇଲି । ରବିବାର ଦିନ Rly Concession ମିଳୁଥିଲା । ମୁଁ ସଙ୍ଗେ ସଙ୍ଗେ ୧୭ ତାରିଖ ରବିବାର Newcastle ଗଲି । ଦୁର୍ଗାମାଧବ ଷ୍ଟେସନ୍‌କୁ ଆସିଥିଲେ । ଗତ ଦୁଇମାସର ସମସ୍ତ ମାନସିକ ଗ୍ଲାନି ତାଙ୍କୁ ଦେଖି ଚାଲିଗଲା । ତାଙ୍କ ଘରକୁ ଯାଇ ଖାଇଲି, କଥା ହେଲୁ । ମୋର Newcastle ଆସିବା କଥା ପଡ଼ିଲା । ମୋର ଭାରି ଇଚ୍ଛା ହେଲାଣି Newcastle ଯାଇ Ph.D. ଧରିବାକୁ । ଏଠି ଏମାନେ ନାହିଁ କଲେ - କହିଲେ ଆଗରୁ କରିବାର ଥିଲା । ତେଣୁ ବର୍ତ୍ତମାନ M.A. class attend କରୁଛି । fees ଏପର୍ଯ୍ୟନ୍ତ ଦେଇନି । ଏଣେ Newcastleକୁ Ph.D. ପାଇଁ ଆଜି ଗୋଟେ ଦରଖାସ୍ତ ଦେଉଛି । ଫଳାଫଳ ତମେ next mailରେ ଜାଣିବ । ଦୁର୍ଗା ସାଥିରେ ଏକାଠି ରହିବାକୁ ମୋର ବିଶେଷ ଇଚ୍ଛା । ଖର୍ଚ୍ଚ କମ୍ ହେବ - ଦୁହିଁଙ୍କର ଏକାଠି ମିଶି । ଦୁର୍ଗାର ଭାରତୀୟ ସାଙ୍ଗଗୁଡ଼ିକ, ଏଠାର ଭାରତୀୟମାନଙ୍କ ପରି ନୁହନ୍ତି - ମତେ ବେଶ୍ ଭଲ ଲାଗିଲା । ମୁଁ ଅଢ଼େଇଟା ବେଳେ Newcastleରେ ପହଞ୍ଚିଲି । ସେଠି ୫ ଘଣ୍ଟା ରହି ପୁଣି ୭ଟା ସନ୍ଧ୍ୟାରେ ଚାଲି ଆସିଲି । ତମେ ଦେଇଥିବା ଜିନିଷ, ଚିଠି ଓ ଫଟୋ ପ୍ରଭୃତି ଆଣିଛି । ଦୁର୍ଗାର କେତେଖଣ୍ଡ କାମିଜ୍ ମଧ୍ୟ ଆଣିଛି । ଆଜି ଡାକରେ ଦୁର୍ଗାମାଧବଙ୍କ ପାଖକୁ ୪ ପାଉଣ୍ଡ ପଠାଉଛି ।

ମୁଁ ଏଠାରେ କୌଣସି ଭାରତୀୟ ପତ୍ରିକା ପଢ଼ିବାକୁ ପାଏନି । ପୁଣି ଏଠାର ପତ୍ରିକାମାନଙ୍କରେ ଭାରତବର୍ଷର ଖବର ଆଦୌ ବାହାରୁନି । ଦୈନିକ ପତ୍ରିକା ଏଠାକୁ ଆସୁ ଆସୁ ୩ ସପ୍ତାହ ଲାଗିଯିବ । Modern Review ମଗାଇବାକୁ ମନ କରୁଛି । କିନ୍ତୁ ପଇସା ନାହିଁ । ନବଭାରତର ଖବର କ'ଣ, ମୁଁ କିଛି ଜାଣିପାରିଲିନି । ମୋର articles ବାହାରିଲା କି ନାହିଁ, ନାଟକ ପ୍ରଭୃତି କ'ଣ ହେଲା, ମୁଁ କିଛି ଜାଣିପାରିନି । ତେଣୁ ଏ ମାସରେ ଲେଖା ପଠାଇନି । ମୁଁ portsaidରୁ ବରାବର ଚିଠି ଦେଇଛି । ନବଭାରତକୁ ଲେଖାଟି ସେଇଠୁ ପଠେଇଲି । ତମେ ନପାଇଲ କେମିତି ମୁଁ ଆଶ୍ଚର୍ଯ୍ୟ ହେଉଛି । ନବଭାରତ ଅଫିସ୍‌କୁ ଶୀଘ୍ର ଲେଖ ମୋ ପାଖକୁ ନବଭାରତ ପଠାଇବାକୁ ଓ ମୋର ନାଟକାଦି ସମ୍ବନ୍ଧରେ ଖବର ଦେବାକୁ । ଏ ସମ୍ବନ୍ଧରେ ଫେରନ୍ତା ଡାକରେ ଖବର ପାଇଲେ ପୁଣି ଲେଖା ପଠାଇବି ।

Air mail କାଗଜ ମୁଁ କିଣିପାରିନି । ଆରଥରକୁ ସେ କାଗଜରେ ଲେଖିବି । ବର୍ତ୍ତମାନ ତୋର ଚିଠି ନଗଲେ ପୁଣି ୪ ଦିନ ଗଡ଼ିଯିବ । ମୁଁ ଏ ଚିଠି ଦୁର୍ଗାମାଧବଙ୍କ ପାଖକୁ ପଠାଉଛି; ସେ ତାଙ୍କ ଚିଠି ଓ ମୋ ଚିଠି ଏକାଠି ତମ ପାଖକୁ ପଠାଇବେ । ଖର୍ଚ୍ଚ କମ୍ ହେବ । ତମେ ତମର ଚିଠି ମୋ ପାଖକୁ ପଠାଇବ । ଦୁର୍ଗାମାଧବଙ୍କ ପତ୍ର ମୁଁ ଏଠାରୁ ପଠାଇ ଦେବି ।

ଆଜି ବିଦ୍ୟାଧର, ଶରତ୍ ମୁଖର୍ଜୀଙ୍କ ନିକଟକୁ ବି ଖଣ୍ଡେ ଖଣ୍ଡେ ଚିଠି ଦେଉଛି । Orissa Govt.କୁ ଏଠୁ air mailରେ ପୁଣି ଦରଖାସ୍ତ କରିଛି; କିନ୍ତୁ ଫଳ କ'ଣ ହେଲା ବା ହେବ; ଲେଖିଲନି କାହିଁକି ? ମୋର ଚିତ୍ର-ପୋଥି କଥା କ'ଣ ହେଲା ? ତମେ ଆର୍ତ୍ତବାବୁଙ୍କଠୁ ସେ ଖଣ୍ଡକ ପାଇଲା ଯାଏ କେବେ ସ୍ଥିର ହୋଇ ବସନି । ବାରମ୍ବାର ଚିଠି ଲେଖ ତ - କୌଣସିମତେ କରଗତ କରି ମୋ ପାଖକୁ ପଠାଅ - ମୁଁ କିଛି ହେଲେ ଟଙ୍କା ପାଇବି ।

ପ୍ରାଣର ସଂପଦ ମୋର, ଅହୋରାତ୍ର କେବଳ ତୁଇ ମନେ ପଡୁଛୁ । ବସିଲେ, ଖାଇଲେ, ଗଲେ, ପ୍ରାର୍ଥନା କଲେ ସର୍ବଦା ତୋରି ସ୍ମୃତି ନାଚୁଛି । ମୋର ସମସ୍ତ ଅଶ୍ରୁର ଉସ୍ତ ତୁଇ । ତୋର ଚିଠି ପାଇଲି । ଦୁର୍ଗାମାଧବ ବି ନିକଟରେ ରହିଲେ, ତୁ ସୁଖୀ ଅଛୁ - ତଥାପି ମୋର ପ୍ରାଣ ଭାରାକ୍ରାନ୍ତ । ମୋର ଏ ସବୁ କିଛି ଦରକାର ନାହିଁ । ମୁଁ ତତେ ନେଇ କୁଡିଆରେ ରହିଲେ ହିଁ ମୋର ପରମ ସୁଖ । ଲଲାଟେନ୍ଦୁ କଥା ମୋର ମନେପଡେ, କିନ୍ତୁ ତୋର ସ୍ମୃତି ଯେପରି ମର୍ମ୍ମ ବିଦାରଣ କରେ, ସେ ସେପରି କରେନା । ମୁଁ ଜାଣେ ସେ ହତଭାଗ୍ୟ ଈଶ୍ୱରଙ୍କର ଦାନ- ସେ'ଇ ତା'ର ତତ୍ତ୍ୱ ନେବେ । କିନ୍ତୁ ତୁମେ ମୋର ସୁଖ ଦୁଃଖର ଏକାନ୍ତ ସାଥୀ, ତୋର ବିରହ ମୁଁ ସହିବି କିପରି ?

ତୁ ସାଙ୍ଗେ ସାଙ୍ଗେ ପତ୍ର ଦେବୁ । ମୋର ଚିଠିରୁ ବୁଝୁଥିବୁ, ମୁଁ ଏଠି କିପରି କାଳ କାଟୁଛି । ତେଣୁ ଦୀର୍ଘ ଓ ସ୍ନେହମୟ ପତ୍ର ଲେଖିବୁ । ତୋର ପତ୍ର ହିଁ ମୋର ଶ୍ରେଷ୍ଠ ସାନ୍ତ୍ୱନା, ଏ ଦୂର ଦେଶରେ ।

ବାଟରେ ଯାହା ଯାହା ଦେଖିଛି ସବୁ ଟିପି ରଖିଛି, ନବଭାରତରେ ଭ୍ରମଣ କାହାଣୀ ଲେଖିବି । ନବଭାରତ ମୁଁ ଯେପରି ପାଏ ତା'ର ବନ୍ଦୋବସ୍ତ କର । ଶୀଘ୍ର ଚିଠି ଦେବୁ, ହେଲା ? ଧନରେ ଆ, ତତେ ନିବିଡ ଆଶ୍ଳେଷରେ ଧରି ତୋର ମୁଖମଣ୍ଡଳକୁ ଆଘ୍ରାଣ କରେ । x x x x

ପ୍ରିୟ

●

## ଏଗାର

## ଧନରେ ! ବରାବର ଚିଠି ଦେବୁ

140, Northamba Rd.
Newcastle on tyne
26.10.37

ପ୍ରାଣର ପାଗ୍‌ଲିରେ,

ପୂର୍ବ Air mail ଚିଠି ପାଇଥିବୁ । ଇ ଭିତରେ ମୁଁ Newcastle ଚାଲି ଆସିଲିଣି । ମୁଁ ପ୍ରଥମଥର ଦୁର୍ଗା ସଙ୍ଗେ ସାକ୍ଷାତ୍ ହେବାଲାଗି Newcastle ଆସିବା କଥା ଲେଖିଥିଲି ।

ଏଠୁ ଫେରି ସଙ୍ଗେ ସଙ୍ଗେ ଏଠାର Registrarକୁ apply କଲି । ଚିଠି ଓ ଟେଲିଗ୍ରାମର ଆଦାନପ୍ରଦାନ ପରେ ମୁଁ Professor of English ସଙ୍ଗେ ଦେଖାକରି ସବୁ କଥା କହିଲି । ଶେଷରେ ତାଙ୍କର ବୋର୍ଡ ମତେ Ph.D. student ଭାବରେ ବନ୍ଦୋବସ୍ତ କଲେ ଓ ମୁଁ Edinburghରୁ ବିଦାୟ ନେଇ ଗତ ରବିବାର ୨୩ ତାରିଖରେ ଏଠାରେ ପହଞ୍ଚିଲି । ସୋମବାର ଦିନ ନାମଲେଖା ସରିଛି ଓ ମୁଁ ପଢ଼ାପଢ଼ି ଆରମ୍ଭ କଲିଣି । ସେଠି ଏ ପର୍ଯ୍ୟନ୍ତ ନାମ ଲେଖାଇ ନଥିଲି । ତେଣୁ ଟଙ୍କାର ଅପବ୍ୟୟ ହେଇନି । ବର୍ତ୍ତମାନ ଦୁର୍ଗା ଓ ମୁଁ ଏକ ରୁମ୍‌ରେ ଅଛୁ । ଦୁର୍ଗାଠାରୁ ମୁଁ ଏଠାର ଆଦବ୍‌କାଇଦା ଶୀଘ୍ର ଶୀଘ୍ର ଶିଖିଯାଉଛି । ଏଡିନ୍‌ବର୍ଗର ଲୋତକଧାରା ଏଠି ଟିକିଏ ବନ୍ଦ ଅଛି । ଦୁର୍ଗା ଥିଲାଯାଏ ହୁଏତ ମତେ ଆଦୌ ଖରାପ ଲାଗିବନି । ଦୁହେଁଯାକ ଯେତେ କମ୍ ଖର୍ଚ୍ଚରେ ଚଳିପାରୁ ତା' ଦେଖୁଛୁ । ଦୁର୍ଗା ଆରବର୍ଷ ଏକାକୀ ଯାହା ଖର୍ଚ୍ଚ କରୁଥିଲା, ହୁଏତ ସେଇ ଖର୍ଚ୍ଚରେ ଆମେ ଦିହେଁ ଚଳିବୁ । ତମୁକୁ ଚିଠି ଦେବା ସଙ୍ଗେ ସଙ୍ଗେ ଶରତ ମୁଖର୍ଜୀ ଓ ବିମ୍ବାଧର ପଟ୍ଟନାୟକଙ୍କୁ air mailରେ ଚିଠି ଦେଇଛି । ଉତ୍ତର ପାଉଚି କି ନାହିଁ ଦେଖ - କାରଣ ଭାରତବର୍ଷରେ ଲୋକେ କିପରି କଥା ରଖନ୍ତି ତା ଆମକୁ ଶିଖିବାକୁ ହେବନି । ହୁଏତ ହରିଶ୍ ବରାଳଙ୍କ ନିକଟକୁ ମଧ୍ୟ ଲେଖିବି । ତୁମେ ଆର୍ତ୍ତବାବୁଙ୍କଠୁ ପୋଥିଖଣ୍ଡ ପାଇଁ ବରାବର ଲେଖି କୌଣସିମତେ ଆଣିପାରିଲେ, ବଡ଼ ଲାଭ ହୁଅନ୍ତା । ଜେମା କାବ୍ୟର ଯେଉଁ ଲମ୍ବା ହାତଲେଖା ଖାତା ଥିଲା, ସେଇଟା ମୁଁ ଆଣିଛି ବୋଲି ମୋର ଧାରଣା ଥିଲା । କିନ୍ତୁ ସେ'ଟା ତ ପାଉନି । ଟିକିଏ ଖୋଜି ଦେଖ ତ-ସେଇଟା ଓ ମୂଳ ଲେଖାଟା ତମ ପାଖରେ ଅଛି କି ନାହିଁ । ନହେଲେ ଏକାବେଳେକେ ହଜିଲା ଯେ !

ଧନରେ, ତୁ ବରାବର ଚିଠି ଦେବୁ । କେବଳ ରାଇରଙ୍ଗପୁରକୁ ଆମେ air mailରେ ଚିଠି ଦେବୁ ବୋଲି ସ୍ଥିର କରିଛୁ । ଆଉ ସବୁ sea mail । ଏଥିରୁ ଜାଣିବୁ, ତୋଠୁ (ମୋ ପାଇଁ) ବା ତମୁଠୁ (ଦିହିଙ୍କ ପାଇଁ) ଖବର ପାଇବା ପାଇଁ ଆମେ କିପରି ଉତ୍ସୁକ । ଆଗାମୀ ସପ୍ତାହରୁ ମୁଁ ପ୍ରତି ସପ୍ତାହରେ sea mailରେ ଖଣ୍ଡେ ଖଣ୍ଡେ ଚିଠି ଦେବି । ତୁ ବି sea mailରେ ପ୍ରତି ଚିଠିର ଉତ୍ତର ଦେଲେ ପ୍ରତି ସପ୍ତାହରେ ଆମେ ଚିଠି ପାଇବା । ଖର୍ଚ୍ଚ ବି କମ୍ ହେବ, ଚିଠି ବି ବେଶୀ ପାଇବା । ତୁ ଏଇୟା କରିବୁ ।

ଏଠାରେ ମା' ଓ ଶିଶୁମାନଙ୍କ କଥା ଲେଖିବାକୁ ଲେଖିଥିଲୁ - ମୁଁ ଏ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହେଇନି, ତେଣୁ ସେ ପ୍ରକାର ଅନୁଷ୍ଠାନ ସବୁ ଏଯାଏଁ visit କରିନି । କିନ୍ତୁ ନିଶ୍ଚେ କରିବି ଓ ବିଶେଷ ବିବରଣ ନିଶ୍ଚେ ଦେବି । ତେବେ ଜାହାଜରେ ଓ ଦେଶରେ ଶ୍ୱେତାଙ୍ଗୀ ଜନନୀ ଓ ଶ୍ୱେତାଙ୍ଗ ଶିଶୁ ମୁଁ ବହୁତ ଦେଖିଲିଣି । ତମେ ଶୁଣି ଆଶ୍ଚର୍ଯ୍ୟ ହେବ ଯେ ଏଠାରେ ମା' ଓ ଶିଶୁ ଓ ଆମ ଦେଶର ମା' ଓ ଶିଶୁ ଭିତରେ କିଛି ହେଲେ ପାର୍ଥକ୍ୟ ନାହିଁ, କେବଳ ଚମ ଓ ପୋଷାକ ଛଡ଼ା । ଏଠାରେ ପିଲାଗୁଡ଼ାକ, ଆମ ଦେଶର ପିଲାଙ୍କ ପରି 'ଦୁଷ୍ଟ' ଓ ଉତ୍କଟ ପଣରେ ମା'ଗୁରାଙ୍କୁ ଖାଇପକାନ୍ତି । ଏଡିନ୍‌ବରାରେ ମୁଁ ଯା' ଘରେ ଥିଲି, ତା'ର

ଦି'ଟା ପିଲା ଅଣ୍ଡିରା ଓ ମାଈ । ଭାରି ସୁନ୍ଦର ସ୍ୱାସ୍ଥ୍ୟ ସେମାନଙ୍କର । ଗୋରା ତକ ତକ ଓ ଉଲ୍‌ର ପୋଷାକ ପିନ୍ଧି ଭାରି ଚମତ୍କାର ଦେଖାଯାନ୍ତି । ମୁଁ ସେମାନଙ୍କର ମା' ଆଗରେ ଦିନେ ପିଲାଙ୍କର ପ୍ରଶଂସା କଲି । ମା' କହିଲା 'ତମେ କ'ଣ ସତରେ ଭାବୁଛ ଯେ, ଏ ପିଲା ଭଲ ? ମତେ ଯେ ସେମାନେ ଖାଇଯାଉଛନ୍ତି ! ଏତେ ଦୁଷ୍ଟ ! ସତକୁ ସତ ସେ ଲାଣ୍ଡଲେଡି ବିଚାରୀ ପିଲାଙ୍କୁ ଚିତ୍କାର କରି ଗାଳି ଦେବାର ଓ ପିଲାଗୁଡ଼ାକ ଗାଳି, ଧମକ ବା ମାଡ଼ରେ ଭେଁ ଭେଁ କାନ୍ଦିବାର ଆମେ ବରାବର ଶୁଣୁଥିଲୁ ।

ଜାହାଜରେ ବି ଏଇ ଦୃଶ୍ୟ ଦେଖୁଥିଲି । କିନ୍ତୁ ଜାହାଜର ଉପର ମହଲାରେ 1st classରେ ୪/୫ଟି ଜାପାନୀ ପିଲା ଥାନ୍ତି - ଏମିତି Happy children ମୁଁ କେଉଁଠି ଦେଖୁନି । ସେମାନଙ୍କୁ କାନ୍ଦିବାର ଆମେ କେବେ ଦେଖୁନୁ । ସବୁବେଳେ ଜାହାଜର ବାରଣ୍ଡାରେ ହସି ଖେଳି ଜାହାଜକୁ ମୁଖର କରୁଥାନ୍ତି । ମୁଁ ଶୁଣିଥିଲି ଜାପାନ୍‌ରେ ପିଲାଏ କାନ୍ଦନ୍ତିନି - ସେଠି ଦେଖିଲି ତା' । କିନ୍ତୁ ଠିକ୍ ଦେଶକୁ ନ ଗଲେ ସତକଥା ବୁଝିବା କଠିନ ।

ଏଠାରେ ନାରୀ ସ୍ୱାଧୀନ - ତା'ର ଜୀବନର ବିକାଶରେ କୌଣସି ବାଧା ନାହିଁ - ସମାଜ, ପରିବାର ବା ଧର୍ମର । ସେ ପୁରୁଷ ପରି ଯାହା ଇଚ୍ଛା ତାହା ହୋଇପାରେ ଓ କରିପାରେ । ଏ ସମ୍ବନ୍ଧରେ ମୁଁ ବୃହତ୍ତର ବିବରଣୀରେ ଆଲୋଚନା କରିବି । କିନ୍ତୁ ଗୋଟେ କଥା କହିରଖେ, ସ୍ୱାଧୀନତାକୁ ସମ୍ପୂର୍ଣ୍ଣ ଉପଭୋଗ କରିବା ପାଇଁ ଅନେକେ ବିବାହ କରନ୍ତି ନାହିଁ । ସେମାନଙ୍କର ଯୌନଜୀବନ କିପରି କଟେ ମୁଁ ଜାଣିନି ବା ଜାଣିବାକୁ ଚେଷ୍ଟା କରିବିନି । କିନ୍ତୁ ମାତୃଜୀବନ ସେମାନଙ୍କର କିପରି କଟେ ତା' ଖବରକାଗଜରେ ପଢ଼ି ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ତମେ ମଧ୍ୟ ଆଶ୍ଚର୍ଯ୍ୟ ହେବ । ଇଂଲଣ୍ଡରେ ପୋଷ୍ୟପୁତ୍ର ଗ୍ରହଣ ଲାଗି ଗୋଟେ ସୋସାଇଟି ଅଛି । ଏଇ ସୋସାଇଟିର କାମ ଅନାଥ ଶିଶୁ ଯୋଗାଇବା । ଏବେ ଏହି ସୋସାଇଟି ପ୍ରକାଶ କରିଛି ଯେ, ସେମାନେ ଅନାଥ ଶିଶୁ ଯୋଗାଇ ପାରୁନାହାନ୍ତି । କାରଣ ଅସଂଖ୍ୟ ଅବିବାହିତା ମହିଳା, ସେମାନଙ୍କର ମାତୃକ୍ଷୁଧାର ନିବୃତ୍ତି ପାଇଁ ଏହି ଶିଶୁମାନଙ୍କୁ ପୋଷିବାକୁ ନେଇଯାଉଛନ୍ତି । ସେମାନେ ବିବାହ କରିବେନି ସତ - କାହାର ଅଧୀନ ହେବେନି ସତ - କିନ୍ତୁ ଗୋଟାଏ ଗୁଲଗୁଲ୍ ମୁହଁର ଦରୋଟି କଥା ଶୁଣିବାକୁ ଓ ନବନୀତ କୋମଳ ବପୁର ସ୍ପର୍ଶ ପାଇବା ପାଇଁ ଏମାନେ ଅବରୁଦ୍ଧ ମାତୃସ୍ନେହର ମନ୍ଦାକିନୀ ଧାରା ଢ଼ାଳି ଦେବେନି କାହିଁକି ? ନାରୀ ଜୀବନର ସୁଖ ଯେ ଦେବାରେ, ତ୍ୟାଗରେ, ତା'ର ପ୍ରମାଣ ଏହିଠି । ଆଶା କରେ, ଏହା ପଢ଼ିବା ପରେ, ତମର ଶିଶୁପୁତ୍ରଟି ପ୍ରତି ମମତା ଆହୁରି ବଢ଼ିଯିବ ।

ଏକାଠି ଚିଠି ଦେବୁ - ତେଣୁ ବ୍ୟୟସଂକୋଚ ପାଇଁ ମତେ ବି ଚିଠି ସଂକୋଚ କରିବାକୁ ପଡ଼ିବ । Insurance Coy ପାଖକୁ ଗୋଟେ ଦରଖାସ୍ତ ଦେବାକୁ ପଡ଼ିବ - ତମେ Oriental Coyର ମୋ ପଲିସି ନମ୍ବର ଦେଖି ବସାଇଦେଇ ମୁଁ ଦେଇଥିବା ଠିକଣାକୁ ଶୀଘ୍ର ପଠାଇ ଦେବ ।

ପ୍ରାଣର ଧନରେ ! ଆ, ତତେ ସମଗ୍ରଭାବରେ ଆଲିଙ୍ଗନ କରେ । ଆଜି ରାତିରେ ତତେ ସ୍ୱପ୍ନରେ ଦେଖିଲି - କ୍ଷତି ହେଲା । ଆ, ତତେ ଆଲିଙ୍ଗନରେ ଧରି ତୋର ମୁଖକୁ ଆଘ୍ରାଣ କରେ । ସବୁ କଥା - ବିଶେଷତଃ ଓଡ଼ିଶାର ପ୍ରଧାନ ପ୍ରଧାନ ଘଟଣା ଲେଖିବ ।

ଇତି
ଧନ



## ବାର

# ଆଖିରେ ଲୁହ ପୂରି ଆସୁଛି

Students' Union
King's College
Newcastle on Tyne, England
୧୨.୧୧.୩୭, ଶୁକ୍ରବାର

ପ୍ରାଣର ପ୍ରାଣରେ,

ଧନଟି ମୋର,

ତୁ ଯଦି ମତେ ଏମିତି ଭୁଲି ରହିପାରୁ, ତେବେ ମୁଁ ବଞ୍ଚିବି କିପରି କହତ ? ମୁଁ ଏଠି ଆତ୍ମହତ୍ୟା କରିବି । ତୋର ଚିଠିକି ଅପେକ୍ଷା କରି କରି ପ୍ରାଣ ବ୍ୟାକୁଳ ହେଇ ଉଠୁଛି । ପ୍ରତିଦିନ ଯାଇ କେବଳ ତୋରି ଚିଠି ଆଶାରେ କଲେଜ୍ ପିଅନକୁ ବିରକ୍ତ କରେ । ଶେଷରେ ଆଜି ଆଶା କରିଥିଲି, ଆଜି ଆସିଲାନି । ତୁ ତ ଜାଣୁ ଏ ଦୂର ପ୍ରବାସରେ ମୋ ନିକଟରେ ତୋ ଚିଠିର ମୂଲ୍ୟ କ'ଣ । ମୁଁ କେବଳ ତୋର ସାନ୍ତ୍ୱନା ଉପରେ ନିର୍ଭର କରି ଏ ପ୍ରବାସ ଦୁଃଖ କଟେଇବି ବୋଲି ବସିଥିଲି । କିନ୍ତୁ ତୁ ଏମିତି ନିଶ୍ଚିନ୍ତ ଅଛୁ କିପରି ମୁଁ ଜାଣିପାରୁନି । ତତେ ଶେଷ ଚିଠି ଦେଇ, ପୁଣି ଯେ କେତେଥର ଅଶ୍ରୁପାତ କରିଛି, ତା' କ'ଣ ତୁ ଜାଣିବୁ ? ତୁ ମନେ ପଡ଼ିଲେଇ ଆଖିରେ ଲୁହ ପୂରି ଆସୁଛି । ମତେ ଏ ବର୍ତ୍ତମାନ ଓ ଭବିଷ୍ୟତ ସବୁ ତିକ୍ତ ଲାଗୁଛି । ମୋ ଜୀବନର ପରମ ସୁଖ କେବଳ ତତେ ଘେନି ଗୋଟିଏ ନିଭାଚନ କୁଡ଼ିଆରେ ରହିବାରେ । ତୁ ନ ଥିବାରୁ ମୋର ଏ ପ୍ରବାସ ଭୟଙ୍କର ଦୁର୍ବହ ହୋଇ ଉଠୁଛି ।

ଗତ ଦୁଇଦିନ ହେଲା ମତେ dysentry ଧରିଛି । କାଲି ରାତିରେ ୩/୪ ଥର ନାଳ ଝାଡା ହେଲା ; ଆଜି ଆଉ କଲେଜକୁ ଗଲିନି । ବର୍ତ୍ତମାନ ଟିକିଏ ଭଲ ଅଛି - ଔଷଧ ଖାଇଛି । ଭଲ ହୋଇଯିବି । ଦୁର୍ଗାମାଧବ କଲେଜକୁ ଗଲେ, ମୁଁ ନିଆଁ ପାଖରେ ବସି କେବଳ ତତେ ମନେପକେଇ ଅଶ୍ରାକୁ ଅଶ୍ରା କାନ୍ଦିବାକୁ ଲାଗିଲି । ହଜାର ହଜାର କୋଶ ଦୂରରେ ତୁ ରହିଲୁ - ମୋର ଦୁଃଖମୟ ଜୀବନର - ଏଇ ଦୂର ପ୍ରବାସରେ, ରୋଗ, ଶୋକରେ, ଦୁଃଖ - ଲାଞ୍ଛନାରେ ମୁଁ ଯେତେବେଳେ ଅଭିଭୂତ ହେବି (ହେଉଛି ତ !) କିଏ ମୋର କପାଳରେ ହାତ ବୁଲେଇ ସବୁ ଦୁଃଖ ମୋର ପୋଛି ନେବ ? ମୋର ତପ୍ତ ଅଶ୍ରୁଧାରା ଅବିରଳ ଧାରାରେ

ବହି ବହି ମୋର ମନକୁ କ୍ଲିନ୍ନ ଓ ଗଣ୍ଡଦ୍ଵୟକୁ ଶୁଷ୍କ କରୁଛି । ତୁ ତ ନାହୁଁରେ ପାରୁଲି, ତାହା ଦେଖି ଆହା କରିବାକୁ ବା ତା'ର ପ୍ରତିକାର କରିବାକୁ ? ଓଃ, ଧନ, ତୁ ଯଦି ଭାବୁଛୁ ବା କେହି ଯଦି ଭାବୁଥାଏ ମୁଁ ସୁଖରେ କାଳ କାଟୁଛି ଏଠି, ତେବେ ସେ ବଡ଼ ଭ୍ରାନ୍ତ ଧାରଣା । ତୋର ବିରହ ମୋତେ ଅତ୍ୟନ୍ତ ବାଧୁଛି । ଆର୍ଥିକ ଚିନ୍ତା ଓ ମୋର ଭବିଷ୍ୟତ ଏହି ବିରହ ଦୁଃଖକୁ ଇନ୍ଧନ ଯୋଗାଉଛି । ମୁଁ ଯେଉଁଆଡ଼େ ଯାଉଛି, କେବଳ ଏହି ଦୁଃସ୍ୱପ୍ନ, ମତେ ପଛେ ପଛେ ଗୋଡ଼ାଉଛି । କିମିତି ମୁଁ ଦୁଇବର୍ଷ କଟେଇବି - ମୁଁ ତ ଭାବି ଇ ପାରୁନି ।

ଶରତ ମୁଖର୍ଜୀ ବା ବିମ୍ୟାଧରଠୁ ଉତ୍ତର ପାଇନି - ପାଇବିନି ବୋଧହୁଏ । ଟଙ୍କା ପାଇଁ ବାପାଙ୍କ ଉପରେ ନିର୍ଭର କରିବା କେବଳ ଲଜ୍ଜାର କଥା ନୁହେଁ ପାପ ମଧ୍ୟ । ଆର୍ଥିକ ବନ୍ଦୋବସ୍ତ ପକ୍କା ନକରି ଆସିବାଟା ଆମର ବଡ଼ ଭୁଲ୍ ହୋଇଛି । ଜାତକରେ ତ ମୋର ଏଇକ୍ଷଣି ବର୍ଷେ ଖରାପ ଯୋଗ ଅଛି - ବିଧାତା ଜାଣି ଜାଣି ମତେ ଘଣାରେ ପକାଇଲା । ମୁଁ କି ପାଠ ପଢ଼ିବି ଏଠି, କି ଜ୍ଞାନଲାଭ କରିବି ?

ଦୁର୍ଗା ଓ ମୁଁ ବର୍ତ୍ତମାନ ଗୋଟେ roomରେ ଅଛୁ । କିନ୍ତୁ ମୁଁ ଆହୁରି ଶସ୍ତା ହେବା ପାଇଁ ଅଲଗା ଗୋଟେ room ନେଇ ହାତରେ ରାନ୍ଧିବା ପୁଣି ଆରମ୍ଭ କରିବି । ମତେ ଯେକୌଣସି ମତେ ୫୦ଟଙ୍କା ଭିତରେ ଚଳିବାକୁ ହେବ । ଦୁର୍ଗାମାଧବ ଏତେ ସୁନ୍ଦର ବ୍ୟବହାର କରୁଛି ଯେ, ଅତୀତର ସବୁ ଘଟଣା ମନେପକେଇ ମୁଁ ଅତ୍ୟନ୍ତ ଅନୁତପ୍ତ ହେଉଛି । ସେ ଭାଇଠୁ ଅଧିକ ହେଇଛି । ବିଧାତା ତା'ର ସର୍ବପ୍ରକାର ମଙ୍ଗଳ କରନ୍ତୁ । ଆମ ହାତରେ ବର୍ତ୍ତମାନ କିଛି ଟଙ୍କା ନାହିଁ । ଗତ ସପ୍ତାହରେ ଧାର୍ କରି ଚଳିଛୁ । ନିକଟରେ ଟଙ୍କା ନଆସିଲେ ଲାଞ୍ଛିତ ହେବାର କଥା । ସାହେବୀ ଖାଦ୍ୟ ଅତ୍ୟନ୍ତ ଅରୁଚିକର । ଏମାନେ କେବଳ ସିଝେଇ ଖାନ୍ତି । ମସଲା ତ ଏମାନଙ୍କ ଦେଶରେ ହୁଏନି - ଏମାନେ ତା'ର ବ୍ୟବହାର ଜାଣିବେ କାହୁଁ ? ପରଶିଲା ବେଳେ ଖାଦ୍ୟ ସଂଗେ ସଂଗେ ଲୁଣ ଓ ଗୋଲମରିଚ ଚୁନା (ସେଇ ଏକମାତ୍ର ମସଲା) ଦିଆ ହୋଇଥାଏ, ଖାଇବାଲୋକ ଖାଦ୍ୟ ସଂଗେ ସେସବୁ ମିଶାଇ ଖାଇବ । ଭାରତବର୍ଷରେ କେବେ ଯଦି ଭୁଲରେ ବ୍ୟଞ୍ଜନରେ ଲୁଣ ନ ପଡିଥାଏ ବା ଟିକିଏ ବେଶୀ ପଡିଯାଇଥାଏ, ତେବେ ରାନ୍ଧୁଣୀର କି ଦୁର୍ଦ୍ଦଶା ଓ ଅପମାନ । ଏଠି ସେସବୁରୁ ମୁକ୍ତି । ମିଶ୍ରଣ ମଧ୍ୟ ଏମାନେ ଜାଣନ୍ତିନି । ସିଝା ମାଂସ ଖାଲି ଥୋଇଦେବେ । ଆଳୁ ସିଝେଇ ଗୋଟାଏ ଥୋଇଦେବେ, ଶିମ ଗୁଡାଏ ସିଝେଇ ଥୋଇଦେବେ - ତମେ ସେ ସବୁକୁ ଲୁଣ ମସଲା ଦେଇ ମିଶାମିଶି କରି ଖାଇବ । ମଧ୍ୟାହ୍ନ ଭୋଜନର ଆରମ୍ଭରେ ଏମାନେ soup (ସୁପ) ନାମକ ତରଳ ଖାଦ୍ୟ ପ୍ରଥମେ ଖାନ୍ତି । ଏହା ଆମର ପାଣିଆ ଡାଲନା ପରି । ସାମାନ୍ୟ ଫଳମୂଳ ବା ଡାଲି ଇତ୍ୟାଦିକୁ ସାମାନ୍ୟ ମାଂସ ଲାଗିଥିବା ହାଡ ସହ ପାଣିରେ ବହୁତ ବେଳଯାଏ ସିଝାଯାଏ । ହାଡସବୁ କାଢି ଦିଆଯାଏ, ବାକି ତରଳ ବସ୍ତୁଟା ସୁପ୍ । ଏହାକୁ ମଧ୍ୟ ଲୁଣ ଦେଇ ଖାଇବାକୁ ହେବ । ଏହା କିନ୍ତୁ ବେଶ୍ ରୁଚିକର ହୁଏ ଓ ସ୍ୱାସ୍ଥ୍ୟ ପକ୍ଷରେ ଉପକାରୀ ।

ଏଠି ରାନ୍ଧୁଣୀକୁ ଆଦୌ ବେଶୀ ଶ୍ରମ କରିବାକୁ ପଡେନା । କାରଣ ଅଧିକାଂଶ ଖାଦ୍ୟ ବଜାରରେ ତିଆରି ହୋଇ ବିକ୍ରି ହୁଏ । ଆମର ସେଠି ବଜାର ଜିନିଷ ଖାଇବା ଆପଦପୂର୍ଣ୍ଣ, ଏଠି କିନ୍ତୁ ଠିକ୍ ଓଲଟା । ସରକାର ଲୋକଙ୍କ ସ୍ୱାସ୍ଥ୍ୟର ଏପରି ତତ୍ତ୍ୱ ନିଅନ୍ତି ଯେ, ଖରାପ ଜିନିଷ କେହି ବିକିବା ଅସମ୍ଭବ । ଲୋକଙ୍କର ମଧ୍ୟ ସାଧାରଣ ସାଧୁତା ଆମ ଦେଶ ଅପେକ୍ଷା ଏଠି ବେଶୀ - ତେଣୁ ଖାଇବା ଜିନିଷରେ ବିଷ ଦେଇ ଟଙ୍କା କରିବାକୁ ଏଠି କେହି କଳ୍ପନା କରିବେନି । ଘୁଷୁରି ଭାରତବର୍ଷରେ ଘୃଣ୍ୟ ଜୀବ । କିନ୍ତୁ ଏଠି ସେମାନେ ରାଜପୁତ୍ର ପରି ରଖା ହୁଅନ୍ତି । ଉତ୍ତମ ଗୃହ ଉତ୍ତମ ଖାଦ୍ୟ ଦେଇ ସେମାନଙ୍କୁ ପରିଷ୍କାର ପରିଚ୍ଛନ୍ନ କରି ରଖା ହୁଏ ଓ ସେପରି ଭାବରେ ରହି ସେମାନେ ଯେପରି ମୋଟା ହୁଅନ୍ତି, ସେମାନଙ୍କର ମାଂସର ଖାଦ୍ୟ ଭାବରେ ମୂଲ୍ୟ ସେହିପରି ବଢେ । ତମେ ସକାଳୁ ନ ଉଠୁଣୁ Co-operative storeରୁ ଦୁଧବାଲା ଠିପିମରା ବୋତଲରେ ତମର ଯେତେ ଦୁଧ ଦରକାର ତାହା ଦୁଆରେ ଥୋଇ ଯାଇଥିବ । ଦୁଆର ପଡିଥିଲେ ମଧ୍ୟ ଆଉ କେହି ତାକୁ ଛୁଇଁବେନି । ଆଉ ସେ ଦୁଧ ନିର୍ଦ୍ଦୋଷ ଓ ଖାଣ୍ଟି - ଭାରତବର୍ଷରେ ତାହା ତମେ ପାଇବନି ।

ମୁଁ ଏଠାରେ ମାଂସ ଖାଇ ପାରିଲିନି । କେବଳ ମାଛ ଓ ଅଣ୍ଡା ଖାଏ । ମଝିରେ ମଝିରେ ମୁଁ ମାଛ ବା ନିରାମିଷ ତରକାରୀ କରେ ଭାରତୀୟ ରୀତିରେ - ଆମେ ସମସ୍ତେ ଖାଉଁ । ଏଡ଼ିନ୍‌ବରା ଓ ଏଠି, ମୁଁ ଯାହା ଦେଖୁଛି, ଭାରତୀୟ ତରକାରୀର ଭାରି ପ୍ରଶଂସା । ତେବେ Curry କହିଲେ ଏମାନେ କେବଳ ମସଲାଦିଆ ମାଂସ ତରକାରୀ ବୁଝନ୍ତି । ଭାରତର ପୁରବଧୂ ଯେ ୮୪ ପ୍ରକାର ବ୍ୟଞ୍ଜନ ରାନ୍ଧି କୁଣିଆ ଚର୍ଚ୍ଚା କରିପାରେ, ତା' ଏମାନଙ୍କର ଧାରଣା ହିଁ ନାହିଁ । ତା'ଛଡା ଆମର ପିଠାପଣା ତ ଅଛି - ଖଜା, କାକରା, ରସଗୋଲା ସଂଗେ ତାଳଦେବାକୁ ଏମାନଙ୍କର କିଛି ନାହିଁ । ତେବେ ସେହି ମାଂସ ତରକାରୀଟି ଯେଉଁମାନେ ଚାଖିଛନ୍ତି ତାଙ୍କ ପାଟିରୁ ମୁଁ କେତେଥର ଶୁଣିଲିଣି "Oh Curry is lovely." 'ଓଃ କରୀ ବଡ ଚମତ୍କାର' ।

ଆମର ରନ୍ଧନ ପ୍ରଣାଳୀ ଅତ୍ୟନ୍ତ ଆସ୍ୱାଦକର ଓ ସୁକୁମାର ସତ, କିନ୍ତୁ, ପ୍ରସ୍ତୁତ କରିବାରେ କୁଳବଧୂର ଜୀବନ ନିଏ, ଲୋଭ ଦେଖାଇ ପୁରୁଷକୁ ପେଟୁ ଓ ଅଳସୁଆ କରାଏ । ସାଦାସିଧା ଖାଦ୍ୟ ଖାଇ ଏମାନେ ଅତ୍ୟନ୍ତ ଚଟ୍‌ପଟ୍ ଓ କାର୍ଯ୍ୟକ୍ଷମ । ପେଟେ ଖାଇ ସଂଗେ ସଂଗେ ଏମାନେ କାମକୁ ଯିବେ - ଖରାବେଳେ ଶୋଇବା କ'ଣ ଏମାନେ ଜାଣନ୍ତିନି । ଆମର ତ ଏଣେ ଭାତ ବଢା ହେଲାବେଳକୁ, ତେଣେ ଶେଯ ପକାହେବାର କଥା - ଜାତି ଏଥିରେ ବଢିବ କିପରି କହ ? ଓଡିୟାମାନେ ଯେ ଅଳସୁଆ - ତା'ର ଏକ ବଡ କାରଣ ଖାଦ୍ୟରେ ରହିଛି । ଆଶା କରେ ତମେ ଏଥିରେ ଏକମତ ହେବ । ତା'ଛଡା କେବଳ ରାନ୍ଧିବାରେ ଯଦି ଜାତିର ଅଧିକର - ଅର୍ଥାତ୍ ନାରୀମାନଙ୍କର - ଜୀବନ କଟେ, ତେବେ ଜାତିର ଭବିଷ୍ୟତ ବଂଶର କି ଆଶା ? ଏ ବିଷୟଟା ଅତ୍ୟନ୍ତ ଚିନ୍ତାର ଯୋଗ୍ୟ । ତମେ ଏ ବିଷୟରେ ନବଭାରତରେ ଗୋଟେ ପ୍ରବନ୍ଧ ଲେଖିଲେ, ମୁଁ ଖୁସୀ ହେବି ।

ଭାରତବର୍ଷର କଥା ଏଠା ଖବରକାଗଜରେ ଆଦୌ ବାହାରେନି । ବଡଲାଟ ଲାହୋର ବା ବିକାନୀରରେ ଦରବାର କଲେ ତା'ର ବିସ୍ତୃତ ବିବରଣୀ ବାହାରିଲା । କିନ୍ତୁ ଗାନ୍ଧି ବା ରବୀନ୍ଦ୍ରନାଥ ବା କଂଗ୍ରେସ କ'ଣ କରୁଛି ତା'ର କିଛି ହେଲେ ଖବର ଏଠିକି ଆସେନା । ଏଠାର ଲୋକେ ଯେ ଭାରତବର୍ଷ ସମ୍ବନ୍ଧରେ ଘୋର ଅଜ୍ଞ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । କେବଳ ଗାନ୍ଧି ବୋଲି ଜଣେ କିଏ ଲୋକଙ୍କୁ ମତେଇ ଇଂରେଜଙ୍କୁ ତଡିବାକୁ ଚେଷ୍ଟା କରୁଛି - ଏଇ କଥା ଏଠି ସାଧାରଣ ଲୋକେ ଜାଣନ୍ତି ଏବଂ ସେହି କାରଣରୁ ଗାନ୍ଧି ନାଁ ଚାରିଆଡେ ବ୍ୟାପ୍ତ । ଏଡିନ୍‌ବରା ଗଲାବେଳେ ମତେ ଗୋଟେ ବୁଢ୍ଢା ପଚାରିଲା - ମୁଁ କାଗଜରେ ପଢିଥିଲି ଜଣେ କିଏ ତମ ଲୋକଙ୍କୁ ବ୍ରିଟିଶ ବିରୁଦ୍ଧରେ ମତଉଥିଲା ପରା ? କାହିଁକି ସେ ସିମିତି କରୁଥିଲା ? ତମର କି ଲାଭ ସିଥିରେ ? ଆଉ ଜଣେ ବାଳିକା ଏବେ ରବୀନ୍ଦ୍ରନାଥଙ୍କ ଛବି ମୁଁ ଦେଖେଇଦେବାରେ, ପଚାରିଲା 'ସେ କ'ଣ ବଞ୍ଚିଛନ୍ତି' ? - ଏଇଥିରୁ ଏଠା ଲୋକେ ଭାରତବର୍ଷ ସମ୍ବନ୍ଧରେ କ'ଣ କାଣନ୍ତି ଜାଣିବ । ମତେ ବି ଜଣେ ମାଇକିନା ଥରେ ପଚାରିଲା - ତମେ କ'ଣ ଗୋଟିଏ ସ୍ତ୍ରୀ ବିଭା ହେଇଚ ? - ଅର୍ଥାତ୍ ତା'ର ଧାରଣା ବୋଧହୁଏ ଆମର ସେଠି ପ୍ରତି ଯୁବକର ୪/୫ଟା ସ୍ତ୍ରୀ ।

ଧନରେ ପ୍ରତି ସପ୍ତାହରେ ଚିଠି ଦେ' ରେ । ମୁଁ ଯେ ଶୋକରେ ଅଭିଭୂତ ହୋଇଯାଉଛି - ତୁ ପଚାରୁନୁ । ମୋର ଚିଠି ପାଇଲାମାତ୍ରେ next air mailକୁ ଚିଠି ଦେବୁ । ମୁଁ ପ୍ରତି ସପ୍ତାହରେ ଚିଠି ଦେବି, ତୁ ବି ସେୟା କରିବୁ । ତା' ନହେଲେ ମୁଁ ବଂଚି ପାରିବିନି । ଦୁର୍ଗା ଘର ଚିଠି କି ଆଦୌ ଖାତିର କରେନା - କେବଳ ଟଂକାକୁ ଅନେଇ ବସିଛି । ତୋ'ପରି ପ୍ରାଣପ୍ରିୟାକୁ ମୁଁ ଛାଡିଆସିଛି - ମୋର ଟଂକାରେ କି ଯାଏ ଆସେ - ମୁଁ କେବଳ ତୋର ହସ୍ତଲିପି ଚାହେଁ ।

ଆ ପାଗ୍‌ଲି, ତତେ ନିବିଡ ଆଲିଙ୍ଗନରେ ଧରି ତୋର ମୁଖକମଳକୁ ଆଘ୍ରାଣ କରେ ।

ତୋର ପ୍ରିୟ



## ତେର

## ଦୂର ପ୍ରବାସରେ ତମ ପତ୍ରର ମୂଲ୍ୟ

Students' Union
King's College, Newcastle on tyne
23.11.37

ପ୍ରାଣର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲୁ - ଯାହା ତମେ ନଭେମ୍ବର ୧୧ରେ ଦେଇଥିଲ । ଆଜି ନ ପାଇଥିଲେ, ଆମେ ଦୁହେଁ ଘୋର ଦୁରବସ୍ଥାରେ ପଡିଥାନ୍ତୁ । ଟଂକାର ଏତେ ଅଭାବ ଯେ

ଆମେ ଘଡି ଓ ବୋତାମ ବନ୍ଧା ପକେଇବାକୁ ବସିଥିଲୁ । ଟଙ୍କା ଆଜି ପହଁଚିନି- କେବେ ପହଁଚିବ କେଜାଣି । କିନ୍ତୁ ବେଶୀ ଦୁଶ୍ଚିନ୍ତାର କାରଣ ତମମାନଙ୍କୁ ନେଇ । କ'ଣ ହେଲା, ଚିଠି କାହିଁକି ଆଇଲାନି ଭାବି ଭାବି ବଡ ଅଶାନ୍ତିରେ କାଳ କଟୁଥିଲା । ତମର ଶେଷ ପତ୍ର ମୁଁ ଏଡିନବରାରେ ଆରମାସ ୧୫/୧୬ ତାରିଖରେ ପାଇଥିଲି । ଇ'ଭିତରେ ମାସେ କଟିଗଲା, ଅଥଚ ଘରର କୌଣସି ସଂବାଦ ନାହିଁ । ତମେ ବ୍ୟୟ ସଂକୋଚ କଲେ ମଧ ସପ୍ତାହରେ ଖଣ୍ଡେ ଲେଖେଁ ପତ୍ର ନିଶ୍ଚେ ଦିଅ । ଏ ଦୂର ପ୍ରବାସରେ ତମର ପତ୍ରର ମୂଲ୍ୟ କ'ଣ, ତମେ ମୋ'ଠୁ ପତ୍ର ଆଶା କରି ନ ପାଇଲେ ଯେପରି ଅନୁଭବ କରୁଛ, ସେଇଥିରୁ ବୁଝି ପାରିବ । ଜାନୁୟାରୀଠାରୁ ବ୍ୟୋମଡାକ ଶସ୍ତା ହୋଇଯିବ - ବର୍ତ୍ତମାନ ସମୁଦ୍ରଡାକ ପରି ହେବ ଓ ଚିଠି ଦୁଇଦିନରେ ପହଁଚିବ । ସେ ଶୁଭଦିନ କିପରି ଶୀଘ୍ର ଆସୁ ।

ମୁଁ ବର୍ତ୍ତମାନ ଦୁର୍ଗାମାଧବ ସଂଗେ ଗୋଟେ ରୁମ୍‌ରେ ଅଛି , କିନ୍ତୁ ଟଙ୍କା ଆସିଲେ ଅନ୍ୟ ଜାଗାକୁ ଚାଲିଯିବି ଓ Cooker ବ୍ୟବହାର କରିବି ।ଏକେ ତ ଶସ୍ତା ପଡିବ ।ତା'ଛଡା ଉଭୟଙ୍କ ପକ୍ଷରେ ବି ସୁବିଧା ହେବ ।

ମତେ କଠୋର ପରିଶ୍ରମ କରିବାକୁ ପଡିବ । ବର୍ତ୍ତମାନଠୁ ଆରମ୍ଭ ହେଲାଣି । ମୁଁ ଯେପରି ମୋ ପରିଶ୍ରମରେ ସଫଳତା ଲାଭ କରେ, ସେଥିପାଇଁ ତମର ଶୁଭେଚ୍ଛା ପାଏ - ସେଇ ମୋର ଯଥେଷ୍ଟ ।

ନବଭାରତ ମୁଁ କିପରି regularly ପାଏ ତା'ର ବନ୍ଦୋବସ୍ତ କରିବନି ? ମୋ ପତ୍ର ପାଇ, ସଂଗେ ସଂଗେ ନବଭାରତ ମାନେଜରର ପାଖକୁ ଲେଖ, ମୋର ସଚିତ୍ର ଭ୍ରମଣ-କାହାଣୀ ସେମାନଙ୍କୁ ଦେବି, ସେମାନେ ମୋ ପାଖକୁ ନବଭାରତ ଶୀଘ୍ର ପଠାନ୍ତୁ । ତାଙ୍କୁ ମୋର ଠିକଣା ଦେଇଦେବ । ଇ ଭିତରେ ରାମ ପାଖକୁ ଖଣ୍ଡେ ଚିଠି ଦେଇଛୁ । ସେ, ନାଟକ କ'ଣ ହେଲା, ତା' ଲେଖିବ ।

ଏ ପତ୍ର ପାଇଲାମାତ୍ରେ ତମେ ଶରତ ମୁଖର୍ଜି ଓ ବିଦ୍ୟାଧର ପଟ୍ଟନାୟକଙ୍କ ପାଖକୁ ଶୀଘ୍ର ପତ୍ର ଲେଖ ଓ ସେମାନଙ୍କଠୁ ଶେଷ ଜବାବ ମାଗ । ସେମାନଙ୍କୁ କହ, ସେମାନେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ରକ୍ଷା କରନ୍ତୁ, ନ ହେଲେ ନାହିଁ କରି ଦିଅନ୍ତୁ । ମତେ ଅକାରଣ ଆଶାରେ ରଖି ଅଶାନ୍ତି ଦେବା ଉଚିତ ହେଉନି ।

ମୁଁ ଏ ଚିଠିରେ ବେଶୀ ଲେଖି ପାରୁନି, କାରଣ ବହୁତ ଡାକ ସମୟ ହୋଇଗଲାଣି ବୋଲି ଦୁର୍ଗା ବ୍ୟସ୍ତ କରୁଛି - ଏ ଅବସ୍ଥାରେ ତମ ପାଖକୁ ପତ୍ର ନ ଲେଖିବା ବରଂ ଭଲ । ଆଉ ଡାକରେ ଚିଠି ପୁଣି ଦେବି ।

।ଇତି।

ତମର ପ୍ରିୟ



## ଚଉଦ

# * ରାମକୁ ଚିଠି

Students' Union
King's College, Newcastle on Tyne
23.11.37

ସ୍ନେହର ରାମ,

ତମ ପାଖକୁ କାଲି ସମୁଦ୍ରଡାକରେ ଖଣ୍ଡେ ଚିଠି ଦେଇଛୁ - ତମର ଶିକ୍ଷକ ବାସୁଦେବ ମହାପାତ୍ରଙ୍କ ଚିଠି ସାଥିରେ । ଆଜି ଅପାଠୁ ଚିଠି ପାଇ, ପୁଣି ତମ ପାଖକୁ ଲେଖୁଛି ।

ଏଠି ଲେଖାଲେଖି କରିବାକୁ ମୁଁ ସମୟ ପାଉନି । ମୋର ନିଜର ପାଠ ପାଇଁ ମତେ କଠୋର ପରିଶ୍ରମ କରିବାକୁ ପଡୁଛି । ଭାଇ ଆଉ ୯ମାସ ପରେ ପୁଣି Indiaକୁ ଫେରିଯିବ । ମତେ ଆହୁରି ଦେଢ଼ ବର୍ଷ ରହିବାକୁ ହେବ । ୩/୪ମାସ କମେଇବାକୁ ମୁଁ ଚେଷ୍ଟା କରିବି ବୋଲି ଭାବୁଛି । ଦେଖାଯାଉ କ'ଣ ହେଉଛି ।

ତମେ ଭଲକରି ପଢ । ପରୀକ୍ଷାରେ ଭଲ କଲେ ତ ଯାଇ ସବୁ କଥା । ନ ହେଲେ ଆଜିକାଲି ଯୁଗରେ କେହି ପଚାରିବେନି । ଭାଇର ମାଟ୍ରିକ୍ ପାଶ୍ ଖବର ଶୁଣିବାମାତ୍ରେ ବାପା ନିତ୍ ଭୋଜି ଦେବାର ଦିନ ବି ଗଲାଣି - ନା କ'ଣ ? ବର୍ତ୍ତମାନ ତୁମେ ବୃତ୍ତି ପାଇଲେ ଯାଇ ଭୋଜି ହେବ ।

ମୋର ଭ୍ରମଣ ବୃତ୍ତାନ୍ତ ମୁଁ ନବଭାରତରେ ଲେଖିବି । କିନ୍ତୁ ମୁଁ ଆସିଲାଦିନୁ ଏ ପର୍ଯ୍ୟନ୍ତ ଖଣ୍ଡିଏ ସୁଦ୍ଧା ନବଭାରତ ପାଇଲିନି । ମୁଁ କିପରି ପାଇବି, ଚେଷ୍ଟା କର ।

ଏଠାର ଛାତ୍ରମାନେ ଯେ ଆମ ପିଲାଙ୍କଠୁ ବେଶୀ ବୁଦ୍ଧିଆ, ଏହା କଦାପି ନୁହେଁ । ଆମ ପିଲେ ବିଦେଶୀ ଭାଷାରେ ପାଠ ପଢି ଯାହା କରନ୍ତି, ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ତମେ ଏ ଦେଶରେ ଜନ୍ମ ହୋଇଥିଲେ, ହୁଏତ ଦିନେ ଜଣେ General ବା minister ବା discoverer ହୋଇପାରନ୍ତ । କିନ୍ତୁ ଭାରତବର୍ଷରେ ଜନ୍ମ ହେବାରୁ, ପାଶ୍ କରି ତମକୁ ଓ ତମ ପାଇଁ ତମର ସାରା ବଂଶକୁ ଚାକିରି ଖଣ୍ଡେ ପାଇଁ ମୁଣ୍ଡ ଘୂରେଇବାକୁ ହେବ । ବିଦେଶୀ ଜାତିର ଅଧୀନତା ଆମର ପ୍ରତ୍ୟେକ ଯୁବକର ଜୀବନ ନଷ୍ଟ କରୁଛି ।

ନିଜକୁ ବର୍ତ୍ତମାନଠୁ ଏପରି ଭାବରେ ଗଢ, ଯେପରି ଭାରତବର୍ଷର ସ୍ୱାଧୀନତା ପାଇଁ ତୁମେ ଦରକାରରେ ଆସିବ । ।ଇତି।

ତମର ମାୟାଧର ବାବୁ

●

* ରାମ ହେଉଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ପ୍ରାଣୀବିଜ୍ଞାନ ପ୍ରଫେସର ଡକ୍ଟର ବସନ୍ତ କୁମାର ବେହୁରା । କବି ମାନସିଂଙ୍କ ଶାଳକ

ପନ୍ଦର

# ବିରହ ବେଦନା

Students' Association
King's College
Newcastle on Tyne
28.11.37

ପ୍ରାଣର ଲକ୍ଷ୍ମୀ,

ତୋର ଶେଷ ପତ୍ର ପାଇ ଆମ୍ଭେମାନେ ଟିକିଏ ଆଶ୍ୱସ୍ତ ହେଇ କାଳ କାଟୁଛୁ । କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ତଂକାର ଦେଖା ନାହିଁ । ସାରା ମାସ କଟିଗଲା, ଅଥଚ ତୋଠୁ ଖଣ୍ଡେ ମାତ୍ର ପତ୍ର ପାଇଲୁ । ଆର ମାସରେ ବି ସେଇ କଥା । ଧନରେ, ତୁ ଏମିତି କରନା । ପ୍ରତି ସପ୍ତାହରେ ଖଣ୍ଡେ ଲେଖେଁ ପତ୍ର ନିଶ୍ଚେ ଦେ । ଦୂର ପ୍ରବାସରେ ତମମାନଙ୍କର ଖବର ଜାଣିବା ପାଇଁ ମନ ସବୁବେଳେ ଉଦ୍‌ବିଗ୍ନ ରହୁଛି । ମୋ କଥା ତ ଆହୁରି ଅଧିକ । ମୋର କଠିନ ପରିଶ୍ରମ ଓ ମାନସିକ ଦୁଶ୍ଚିନ୍ତାରେ ତୋର ପତ୍ର ଔଷଧର କାର୍ଯ୍ୟ କରିବ । ଅର୍ଥର ପ୍ରାଚୁର୍ଯ୍ୟ ଥିଲେ ଓ ମୁଁ ଅନ୍ୟ ଆମୋଦ ପ୍ରମୋଦରେ ନିଜକୁ ଭୁଲେଇ ପାରୁଥିଲେ ଭିନ୍ନ କଥା ହୁଅନ୍ତା । ତା'ଯେତେବେଳେ ନାହିଁ, ତୋର ପ୍ରଣୟ ଓ ଉତ୍ସାହ ହିଁ ମୋର ଏକମାତ୍ର ଆଶ୍ରୟ । ଆମୋଦପ୍ରମୋଦରେ କାଳ କଟେଇବାକୁ ତମେ ଲେଖିଥିଲ । ତମେ କ'ଣ ଜାଣନି ବାଘ ଥରେ ମଣିଷ ମାଂସ ଖାଇବାକୁ ପାଇଲେ, ଆଉ ମାଂସ ତାକୁ ରୁଚେନା ? ଯେଉଁ ସ୍ନେହ ଅଜସ୍ର ଅଶ୍ରୁ ଓ ଗଭୀର ତ୍ୟାଗରେ ଲାଭ କରାଯାଇଛି, ତାହା କିପରି କାହାର ସ୍ମିତହାସ୍ୟ ଟିକକରେ ଭୁଲିହେବ ? ପୁଣି ଜୀବନର ସମସ୍ତ ଶକ୍ତି ଦେଇ ଥରେ ଓ ଜଣକୁ ସ୍ନେହ କଲାପରେ, ଆଉ କାହାକୁ ସ୍ନେହ କରିବାର ଶକ୍ତି ବା ଉତ୍ସାହ ଆସିବ କୁଆଡୁ ? ଆଉ ସୁଖ ସ୍ନେହରେ ଭାଗୀ ହେବାର ଲୋକ ଯଦି ନମିଳୁଛି, ଉପଭୋଗ କ'ଣ କରିବି ? ଏଇପରି ମୋର ଦିନ କଟୁଛି - ବନ୍ଧୁହୀନ ଓ ସଙ୍ଗହୀନ ଭାବରେ । ତମେ ଯେ ଏ ଦୁଃଖୀର ଏକମାତ୍ର ବନ୍ଧୁ, ଏ କଥା ଭୁଲନା । ମୁଁ ତମ ସାଙ୍ଗରେ ଥିଲାବେଳେ କେବେ ଭୁଲିଯାଇଥାଇପାରେ, କିନ୍ତୁ ଏହି ଦୂର ପ୍ରବାସରେ, ସେ କଥାଟା କେବେ ଭୁଲୁନି - ସେହି ସ୍ମୃତି ମୋର ବିରହ ବେଦନାକୁ ମଧୁମୟ ଓ ଗୌରବମୟ କରୁଛି ।

ପିଲା ଓ ମା' ମାନଙ୍କ ସଂବନ୍ଧରେ ଆହୁରି ଜାଣିବାକୁ ଚାହିଁଛ । ମୁଁ ପଢ଼ାରେ ଏତେ ବ୍ୟସ୍ତ ଯେ, ଅନ୍ୟକଥା ବୁଝିବାକୁ ସମୟ ପାଇନି । ଏଠାରେ Day Nursery ସବୁ ଅଛି, ଯେଉଁଠି ଶ୍ରମିକ-ବନିତା ସବୁ ତାଙ୍କର ପିଲାଙ୍କୁ ଛାଡିଦେଇ ୬.୩୦ ରେ କାମକୁ ଯାନ୍ତି ଓ ସଂଧ୍ୟା ୬.୩୦ ରେ ପିଲାଙ୍କୁ ଧରି ଘରକୁ ଫେରନ୍ତି, ସେଥିପାଇଁ ପ୍ରତ୍ୟେକ ମା'କୁ ଛ ପେନ୍ସ କରି ପ୍ରତିଦିନ ଦେବାକୁ ପଡେ । ମୁଁ କାଲି ତାହା ଦେଖିବାକୁ ଯାଇଥିଲି ; କିନ୍ତୁ କାଲି ଶନିବାର ହେତୁରୁ ତାହା ବନ୍ଦ - ଆଜି ତ ବନ୍ଦ ହେବାର କଥା, କାରଣ ରବିବାର । ଆଉ କେବେ ଦେଖିବାର ସୁଯୋଗ ପାଇଲେ ସେଠାର କଥା ଲେଖିବି ।

ଭାରତବର୍ଷ ପରି ଏଠି ମଧ୍ୟ ଝିଅର ପିଲା ହେଲେ ମା' ଦେଖାଦେଖି କରେ । ପୋଖ୍ତା ଘର ପାଖେଇଲେ, ହୁଏତ ଝିଅ ମା'-ଘରକୁ ଯାଏ ବା ମା' ଝିଅଘରକୁ ଆସେ । ସାଧାରଣତଃ ମା' ଯାଏ ଝିଅଘରକୁ । ପିଲା ୪ମାସ ଖଣ୍ଡେ ହେଇଆସିଲେ ଯେଝା ଘରକୁ ଯିଏ ଯାନ୍ତି । ଛୋଟପିଲା ଏଠି ମଧ୍ୟ ହଗାମୂତା କରନ୍ତି ଏବଂ ଆମେ ଯିମିତି କନା ବ୍ୟବହାର କରୁ, ଏଠି ସେପରି nappies - ଗୋଟେ ପ୍ରକାର ଛୋଟ ଜଂଘିଆ ବ୍ୟବହାର କରନ୍ତି । ସେଗୁଡାକ ବାରମ୍ବାର ବଦଳେଇବାକୁ ହୁଏ ଓ ଗୋସେଇଁମା' ରାତିରେ ବାରମ୍ବାର ଉଠି ତା' କରେ । ସାଧାରଣତଃ ଘରେ ଘରୋଇ ପୋଖତାଘର ହୁଏ । ବର୍ତ୍ତମାନ ଅବଶ୍ୟ Nursing Home ପ୍ରଭୃତି ବାହାରିଛି, କିନ୍ତୁ ସେସବୁ ବଡ ଖର୍ଚ୍ଚର କଥା । ଆମ ହୋଟେଲବାଲାର ଶଶୁର କହୁଥିଲା ତା'ର ବଡଝିଅ ଜନ୍ମହେଲା ବେଳେ ତାକୁ ୩୦ ଶିଲିଂ ଖର୍ଚ୍ଚ କରିବାକୁ ପଡିଥିଲା । କିନ୍ତୁ ଏବେ ସେ ଝିଅର ଝିଅ ଜନ୍ମହେଲା ବେଳକୁ ତାଙ୍କୁ ୨୩ ପାଉଣ୍ଡ (୨୩ X ୧୩ ଟ) ଖର୍ଚ୍ଚ କରିବାକୁ ପଡିଲା - କାରଣ ସେମାନେ ନ ଜାଣି ଝିଅକୁ Nursing Homeକୁ ନେଇ ଯାଇଥିଲେ ।

ଏଠାର ପିଲେ ଆମ ଆଡର ପିଲାଙ୍କ ପରି ଏଠି ସେଠି ହଗିବାର ଦେଖାଯାଏନି । କାରଣ ଛ'ମାସ ହେଲା କ୍ଷଣି ମା' ପିଲାକୁ ଗୋଟାଏ କୁଣ୍ଡ (Commode) ଉପରେ ବସି ହଗିବା ମୂତିବାକୁ ଶିଖାଏ । କ୍ରମେ ପିଲାଙ୍କର ଏପରି ଅଭ୍ୟାସ ହୋଇଯାଏ ଯେ ହଗ-ମୂତ ମଡେଇଲେ ପିଲେ ସେ ଜିନିଷଟା ଖୋଜିବେ- କଥା ନକହି ପାରୁଥିଲେ ମଧ୍ୟ । ଆଉ ବୁଦ୍ଧିମତୀ ମା'ତ ଚଟ୍‌କିନା ଜାଣିଦେବ ପିଲା କ'ଣ ଦରକାର କରୁଛି । ସେ ଚଟ୍‌କିନା ପିଲା ପାଖକୁ ସେ ଜିନିଷ ଆଣି ରଖିଦେବ ବା ପିଲାକୁ ସେଠିକି ନେଇଯିବ । ଲଲାଟେନ୍ଦୁକୁ ତମେ ଏହିପରି ଶିଖେଇଦେବ । ଆମ ଦେଶର ମା'ମାନେ ଏତିକି କରୁଥିଲେ ଆମର ଘରଦ୍ୱାର ଅନେକ ସଫାସୁତୁରା ରହନ୍ତା ।

ଲଲାଟେନ୍ଦୁର ଝାଡା ନ ହେବାର ଶୁଣି ମୁଁ ବଡ ଚିନ୍ତିତ । ହୁଏତ ତୁମ ଦୁଧର ଯଦି କିଛି ଦୋଷ ଥାଏ, ଅନ୍ୟ ଦୁଧ ଦିଅ । ଖାଦ୍ୟ ପରିବର୍ତ୍ତନ କଲେ ଦୋଷଟା ଚାଲିଯାଇପାରେ । ମୋର ପିଲାଦିନେ ଭୟଙ୍କର Constipation ହେଉଥିଲା - ୪/୫ଦିନରେ ଥରେ ଝାଡା ହେଉଥିଲା । ତା'ରି ଫଳରେ ମୋର ଅର୍ଶରୋଗ ଦେଖାଯାଇଥିଲା । ଲଲାଟେନ୍ଦୁ ମୋର ଦୋଷ ଯାକ ଯଦି ଆଣେ, ତେବେ ମୋ ପରି ତା'ର ଜୀବନ ମଧ୍ୟ ଦୁଃଖମୟ ହେବ । ତା'ର ଦେହ ବର୍ତ୍ତମାନ କିପରି ଅଛି ଲେଖିବ ।

ପଇସା ତ ନାହିଁ; ନହେଲେ ମୋର ଫଟୋ ଉଠେଇ ପଠାନ୍ତି । ଏଠି ଫଟୋ ବଡ ଶସ୍ତା । ଛ'ଣାକୁ ଛୋଟ ଫଟୋ ୩ଟା, ଦଶ'ଣାକୁ Card size ତିନିଟା । ଅବଶ୍ୟ ଉତ୍କୃଷ୍ଟ କାମ ହେଲେ ଚାର୍ଜ ଟିକିଏ ବେଶୀ । ଲଲାଟେନ୍ଦୁର ଫଟୋ ପଠେଇବା ସଂଗେ ସଂଗେ, ତମର ଠିଆ ହୋଇଥିବା ଗୋଟିଏ ଛୋଟ ଛବି କୌଣସିମତେ ପଠାଅ । ମୁଁ ଏଠି ତାକୁ Enlarge ଓ ରଂଜିତ କରିନେବି । ଏଠି ସେ କାମ ଖୁବ୍ ଭଲ ହୁଏ ଓ ଶସ୍ତାରେ ହେବ ।

ରବିବାରରେ ମୁଁ ଏଠି ବରାବର ଚର୍ଚ୍ଚକୁ ଯାଏ । ଚର୍ଚ୍ଚରେ ସଂଗୀତ-ପ୍ରାର୍ଥନା ମତେ ଭାରି ଭଲ ଲାଗେ । ମୁଁ ବି ସମସ୍ତଙ୍କ ସାଥିରେ ମିଶି ଇଂରେଜୀ ଗୀତ ଗାଏ । ଟୋକାଟୋକି ଚର୍ଚ୍ଚକୁ ଆଦୌ ଯାନ୍ତିନି । କେବଳ ବୟସ୍କ ଓ ବୁଢ଼ାବୁଢ଼ୀ ଯାନ୍ତି । ଆଜି ତ ଯାଇଥିଲି ଗୋଟେ ଚର୍ଚ୍ଚକୁ - ଧର୍ମଯାଜକ ଦୁଃଖପ୍ରକାଶ କରି ବକ୍ତୃତା କରୁଥିଲେ ଯେ, ଏ ଦେଶରେ ଶତକଥା ୩ ଜଣ ମାତ୍ର ରବିବାରରେ ଚର୍ଚ୍ଚକୁ ଆସୁଛନ୍ତି, ବାକି ୯୭ ଜଣ ଆମୋଦପ୍ରମୋଦରେ ସମୟ କଟାନ୍ତି । ଏଠି ବି ଲୋକେ ଧର୍ମ ପାଇଁ ପ୍ରାଣବଳି ଦେଇଛନ୍ତି ଓ ନାନା ଦୁଃଖକଷ୍ଟ ସହିଛନ୍ତି । ଆଜି ନିଜର ଧର୍ମ ପାଳନ କରିବା ପାଇଁ ଏ ଦେଶରେ କୌଣସି ବାଧା ନାହିଁ-କିନ୍ତୁ ଲୋକେ ଧର୍ମକୁ ପଚାରୁ ନାହାନ୍ତି । ଯେଉଁମାନେ ସୁଖରେ ଅଛନ୍ତି, ସେମାନଙ୍କର ଈଶ୍ୱରଙ୍କୁ ଡାକିବା ଦରକାର ପଡୁନି,ଯେଉଁମାନେ ଦୁଃଖରେ ଅଛନ୍ତି, ସେମାନଙ୍କର ଈଶ୍ୱରଙ୍କୁ ଡାକି କିଛି ଲାଭ ନାହିଁ । ଏହିପରି ଭାବରେ ବୋଧହୁଏ କ୍ରମେ ଈଶ୍ୱରବିଶ୍ୱାସ କମି ଯାଉଛି ।

କିନ୍ତୁ ଚର୍ଚ୍ଚରେ ହିଁ ତୁମେ ଏଠି ଅସଲ ଲୋକଙ୍କୁ ପାଇବ । ଆର ରବିବାର ସଂଧ୍ୟାରେ ମୁଁ ଗୋଟେ ଚର୍ଚ୍ଚକୁ ଗଲି - ପ୍ରାର୍ଥନା ସରିଲା, ଲୋକମାନେ ସବୁ ଚାଲିଗଲେ, ମୁଁ ଚର୍ଚ୍ଚ ଭିତରେ ଗୋଟେ କଣରେ ଠିଆହୋଇ କାନ୍ଥରେ ଥିବା ଚିତ୍ର ଦେଖୁଛି, ଏପରି ସମୟରେ ବିପରୀତ କୋଣରୁ ଜଣେ ଲୋକ ଆସିଲା ଓ ଦୁଇତିନିଟା ପ୍ରଶ୍ନରେ ମୋର ପରିଚୟ ନେଇ ମତେ ଏକପ୍ରକାର ଭିଡିନେଲା ତା'ଘରକୁ । ତା'ଘର ପ୍ରାୟ ସହରରୁ ୪ମାଇଲ ଦୂରରେ । ଆମେ ବସ୍‌ରେ ଗଲୁ - ସେ ଟିକଟ୍ କଲା - ତା'ର ସ୍ତ୍ରୀ ତା ସାଥିରେ ଥାଏ । ଘରେ ପହଁଚି ମତେ ଅଭ୍ୟର୍ଥିତ କରିବାକୁ ଲାଗିଲା । ମୁଁ ତାକୁ ବାଟରେ ପଚାରିଲି, ତମେ ମତେ ଏତେ ଆଗ୍ରହ କରିବାର କାରଣ ? ସେ କହିଲା - ଦେଖ, ପ୍ରକୃତ ଖ୍ରୀଷ୍ଟିୟାନ ପକ୍ଷରେ ଜଗତର ସବୁ ଜାତିର ଲୋକ ଭାଇ-ଭଉଣୀ ପରି । ଯେଉଁମାନେ ଖ୍ରୀଷ୍ଟିୟାନ ବୋଲି ପରିଚୟ ଦେଇ ଈଶ୍ୱରଙ୍କୁ ଜଗତର ପିତା ବୋଲି ମନେ କରନ୍ତି, ତାଙ୍କର ସେହିପରି ବ୍ୟବହାର କରିବା ଉଚିତ । ମୁଁ ମୋର ଧର୍ମମତକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରୁଛି - ପରଦେଶୀ ଓ ପରଧର୍ମୀମାନଙ୍କ ପ୍ରତି ବଂଧୁତା ଦେଖାଇ । ଲୋକଟି Insurance Agent । କିନ୍ତୁ ବେଶ୍ Cultured, ତା'ର ଝିଅ Cambridge University ରେ ପଢେ - ସରକାରୀ ବୃତ୍ତି ପାଇ । ସେ ନାନା ଧର୍ମର କଥା ଜାଣେ- ଯଦିବା ଖ୍ରୀଷ୍ଟଧର୍ମକୁ ଜଗତର ଶ୍ରେଷ୍ଠ ଧର୍ମ ବୋଲି ତା'ର ଦୃଢ଼ ଧାରଣା । ଆମ ଦେଶରେ Insurance Agent ଏପରି ହେଲାବେଳକୁ ଅନେକ ଦିନ ଅଛି । ତା'ସଙ୍ଗରେ ଧର୍ମ ସମ୍ବନ୍ଧରେ ମୋର ତର୍କ ହେଲା । ମୁଁ ସବୁ ପ୍ରଚାରକଙ୍କ ଭିତରେ ବୁଦ୍ଧଙ୍କୁ ଶ୍ରେଷ୍ଠ ସ୍ଥାନ ଦେଲି, ସେ ଖ୍ରୀଷ୍ଟଙ୍କୁ । କ୍ରମେ ମୁଁ ତାକୁ କୌଣସିମତେ ମୋର ମତକୁ ବାଗେଇଲି । ଏପରି ସମୟରେ ପଚାରିଲି, ଆଚ୍ଛା କହତ, ବର୍ତ୍ତମାନ ଜଗତରେ ଶ୍ରେଷ୍ଠ ଖ୍ରୀଷ୍ଟିୟାନ କିଏ ? ଲୋକଟି ବିନା ଚିନ୍ତାରେ ଉତ୍ତର କଲା, 'ବିନା ଚିନ୍ତାରେ କହିବାକୁ ହେବ ଯେ, ମି.ଗାନ୍ଧି ଓ ତାଙ୍କ ପଛକୁ ଆଣ୍ଡ୍ରୁଜ । ମୋର ତ ଗର୍ବ ଅନୁଭବ କରିବାର କଥା ଓ ମୁଁ ଗାନ୍ଧିଙ୍କର ଓ ତା ସଂଗେ ଦେଶର କଥା କହିବାକୁ ଲାଗିଲି । ମୁଁ ଯେତେବେଳେ ଜାଲିଓ୍ୱାନାବାଗ୍‌ର ହତ୍ୟାକାଣ୍ଡ ବର୍ଣ୍ଣନା କଲି ତା ସ୍ତ୍ରୀ ଆଖି ଛଳଛଳ ହୋଇଆସିଲା ।

ମତେ ଖୁଆଇ ବିଦାୟ ଦେଲାବେଳକୁ ରାତି ପ୍ରାୟ ୧୦ଟା । ଭଦ୍ରଲୋକ ଘରୁ ବାହାରି ମତେ ପୁଣି ବସ୍‌ରେ ଚଢ଼େଇ ଟିକେଟ୍ କଟେଇ ଆର ରବିବାରଦିନ ଦେଖାହେବାକୁ ଅନୁରୋଧ କରି ବିଦାୟ ନେଲେ । ଭାରତବର୍ଷର ଇଂରେଜ ସାହେବ ଓ ଏଠାର ସାହେବ ଭିତରେ କିପରି ପ୍ରଭେଦ ଏଇଥିରୁ ଜାଣିବ । ଆମେ ଯେ ପରାଧୀନ ଏ କଥାଟା ଆମେ ଆମରି ମାଟିରେ ବେଶୀ ଅନୁଭବ କରୁ । ଏଠାରେ ସ୍ୱାଧୀନ ମାଟିରେ ସମସ୍ତେ ସମାନ ।



## ଷୋହଳ

# ମନ ଆଦୌ ଠିକ୍ ରହୁନି

୦୬.୧୨.୩୭

ପ୍ରାଣର ଲକ୍ଷ୍ମୀ,

ଆରମାସ ୨୮ ତାରିଖରେ ଆର ଚିଠିତକ ଲେଖିଥିଲି । କିନ୍ତୁ ପଇସା ଅଭାବରୁ ଚିଠି ଡାକ କରିପାରିଲିନି । କାଲି ସଂଧ୍ୟାରେ ବୁଲିଗଲାବେଳେ ଦୁ ଏତେ ମନେ ପଡିଲୁ ଯେ, ମୁଁ ଏକାକୀ ମୁକ୍ତ ପ୍ରାନ୍ତରରେ ଚାଲୁଥାଏ ଓ କାନ୍ଦୁଥାଏ । ଓଃ ମାସଯାକ ଟଙ୍କା ପାଇଁ ଅପେକ୍ଷା କରି କରି ଆମେ ଦୁହେଁ କିପରି ଭାବରେ କାଳ କାଟୁଛୁ, ତମୁକୁ କ'ଣ ବୁଝେଇବାକୁ ହେବ ? ପ୍ରତିଦିନ ଆଶଂକା କରୁଛୁ ଯେପରି ହୋଟେଲବାଲା ବାହାରିଯିବାକୁ କହିବ ପରା ! ଟଙ୍କା ଆସିବାର ଆଶା କରି କରି ଡିସେମ୍ବର ପ୍ରଥମ ସପ୍ତାହ ସରିଲା । ଏ ଚିଠି ତମ ପାଖକୁ କେବେ ଯିବ ଜଣା ନାହିଁ । ଖାଲି ମନ ବ୍ୟସ୍ତ ହେବାରୁ ତମକୁ ଉଦ୍ଦେଶ୍ୟ କରି ମନର କଥା ଲେଖୁଛି ମାତ୍ର । ଆମର ଆଶଂକା ହେଉଛି ବାପାଙ୍କର ଦେହ ଖୁବ୍ ଖରାପ ହେଲା ପରା ! ଟଙ୍କା ପଛେ ନ ଆସନ୍ତା ଘରର ସମ୍ବାଦ ଦେଇ ଚିଠି ଖଣ୍ଡେ ହେଲେ ଲେଖୁନା, ଭଏ କି ପ୍ରକାର ମନୁଷ୍ୟତା ମୁଁ ବୁଝିପାରୁନି । ଆସିଲାଦିନୁ ଏତେ ଚିଠି ଦେଇଛି - ତମ ଉତ୍ତରକୁ ଅପେକ୍ଷା ନକରି ବାରଂବାର ଲେଖୁଛି, ଅଥଚ ବାରଂବାର ଅନୁରୋଧ ସତ୍ତ୍ୱେ ତମର ଆଳସ୍ୟ ଭାଙ୍ଗୁନି । ବଡ ପରିତାପର କଥା । ପ୍ରତି ସପ୍ତାହରେ, ଘରର ଓ ଅନ୍ୟାନ୍ୟ ଖବର ଲେଖି ତମର ବରାବର ଖଣ୍ଡେ ପତ୍ର ଦେବା ନିତାନ୍ତ ଉଚିତ । ବ୍ୟୋମଡାକରେ ନ ଦେଲେ, ସମୁଦ୍ର-ଡାକରେ ଦିଅ । ଏଠିକାର ଭାରତୀୟ ମାନଙ୍କର ବରାବର ପ୍ରତି ସପ୍ତାହରେ ଚିଠି ଆସୁଛି । କେବଳ ଆମେ ଦୁହେଁ ଦପ୍ତରୀକୁ 'ଆମର ଚିଠି ଅଛି ?' ପଚାରି ପ୍ରତିଦିନ ନିରାଶ ହେଉଛୁ । ତମେ ବୋଧହୁଏ ଲଲାଟେନ୍ଦୁକୁ ନେଇ ମତେ ଭୁଲିବା ଉପରେ । ମୁଁ କ'ଣ ତମର କିଛି ନୁହେଁ ? ତମ ଜୀବନରେ ମୁଁ ରେଖାପାତ କରିନି, ଆଉ ନବାଗତ କଲା ? ପ୍ରକୃତରେ ତମେ ପ୍ରତି ସପ୍ତାହରେ ଚିଠି ନ ଦେଲେ, ମନ ଆଦୌ ଠିକ୍ ରହୁନି - ତମର ଅନ୍ତତଃ ଖଣ୍ଡେ କାର୍ଡ ଲେଖି ପକାଇଦେବା ଉଚିତ ।

ଘୋର ଶୀତ ଆରମ୍ଭ ହେଲାଣି । ମୁଁ ଯେତେବେଳେ ସେପ୍ଟେମ୍ବର ମାସରେ ଏଠି ପହଁଚିଲି, ସେତେବେଳେ ଆମ ଦେଶର ଶୀତ ପରି ଶୀତ ହେଉଥାଏ । ଅକ୍ଟୋବର

ନଭେମ୍ବରରେ କ୍ରମେ କ୍ରମେ ବେଶୀ ହେଲା । ଡିସେମ୍ବରରେ କିନ୍ତୁ ପ୍ରଚଣ୍ଡ ବିଲାତି ଶୀତ ଆରମ୍ଭ ହେଲାଣି । ଆକାଶ ସବୁବେଳେ ମେଘାଚ୍ଛନ୍ନ - ବର୍ଷା ହେଉଛି, ବରଫ ପଡୁଛି, ହାତ ଗୋଡ କୋଲ ମାରିଯାଉଛି । ବାଟରେ ଗଲାବେଳେ ଟୋପି ଓ କୋଟ୍‌ରେ ବରଫ ଜମା ହୋଇଯାଉଛି । ଘରଦ୍ୱାର, ରାସ୍ତାଘାଟ, ପୁରପ୍ରାନ୍ତର ଚାରିଆଡେ ବରଫର ଶ୍ୱେତ ଆସ୍ତରଣ ଦେଖିବାକୁ ଅତ୍ୟନ୍ତ ମନୋରମ । ବାହାରେ ପ୍ରବଳ ଶୀତ ସତ, କିନ୍ତୁ ଘର ଭିତର ଏଠି ଗରମ ରଖାଯାଏ । ଘରେ ରହ ବା କଲେଜକୁ ଯାଅ ସବୁଠି ସେଇୟା । ଅବଶ୍ୟ ଘରେ ନିଜ ହାତରୁ ନିଆଁଖର୍ଚ୍ଚ ବହନ କରିବାକୁ ହୁଏ । ଆମର ପଇସା ନାହିଁ ବୋଲି ଏବେ କେତେ ଦିନ ହେଲା ଆମେ ଘରେ ରହୁନୁ । ରାତି ୯ଟା ପର୍ଯ୍ୟନ୍ତ କଲେଜ୍‌ରେ କଟେଇ ଦେଉ । କଲେଜ୍‌ରେ ନିଆଁର ବନ୍ଦୋବସ୍ତ ପାଇଁ ପିଲାମାନେ ଫିସ୍ ସାଥିରେ ଟଙ୍କା ଦେଇଥାନ୍ତି । ପ୍ରକୃତରେ ଉତ୍ତାପର ବନ୍ଦୋବସ୍ତ ନ ହେଲେ ଏଠି ଘର ଭିତରେ ବି ମଣିଷ ଜଡ ହୋଇଯିବ । ଶୀତରୁ ରକ୍ଷା ପାଇବା ପାଇଁ ତା'ଉପରେ ତା'ଉପରେ ଆମକୁ ପ୍ରାୟ ୬ଟା ଆବରଣ ଦେବାକୁ ପଡୁଛି - ସମସ୍ତଙ୍କ ଉପରେ ମୋଟା overcoat । ତଥାପି ଶୀତ ହୁଏ ।

ଭାରତରୁ ଆସିଥିବା air mail ଗତ ରବିବାର ୫ ତାରିଖରେ ଇଟାଲୀରେ ବୁଡିଯାଇଛି । ଆଶା କରେ ତମର ଚିଠି ସେଥିରେ ନଥିବ । ମାର୍କଣ୍ଡ ରଥ, Student Training College, P.O. Chandinichoukକୁ ଏଥିରେ ଥିବା ଚିଠି ପଠାଇ ଦେବ । ଧନ, ମନ ଦଗ୍ଧ ହେଇ ଯାଉଛି । ଶୀଘ୍ର ଚିଠି ଦିଅ ।

ପ୍ରିୟ

●

## ସତର

# ସାଙ୍ଗ ସାଥୀ କେହି ନାହିଁ

Students' Union, King's College
Newcastle on Tyne
23.12.37

ପ୍ରାଣର ଲକ୍ଷ୍ମୀ,

ଧନରେ, ମୋର କ୍ରିସ୍‌ମାସ କାର୍ଡ ଓ ପତ୍ର ପାଇଥିବୁ । ନଭେମ୍ବର ୨୯ ତାରିଖରେ ଲେଖିଥିବା ଚିଠି ଆମେ ଗତ ସପ୍ତାହରେ ପାଇଛୁ - ଯେଉଁ ଚିଠି ସମୁଦ୍ରରେ ବୁଡିଯାଇଥିଲା । ତା'ପରେ ଆଉ ପାଇନୁ । ଧନରେ, ଜାନୁୟାରୀ ୧୯ ତାରିଖଠୁ ବ୍ୟୋମଡାକ ଶସ୍ତା ହୋଇଯିବ ଓ ସପ୍ତାହରେ ୪ ଥର ଯିବା ଆସିବା କରିବ । ତୁ ସପ୍ତାହରେ ଥରେ ନିଶ୍ଚେ ଲେଖିବୁ । ମୁଁ ବାରମ୍ବାର ତତେ ଚିଠି ଲେଖିବାକୁ କହୁଛି - ବିରକ୍ତ ହେଉଥିବୁ । କିନ୍ତୁ ଏ ଦୂର ପ୍ରବାସରେ ସଂଗହୀନ ଅବସ୍ଥାରେ ମନିଷ ଘର ଓ ଘରର କଥା ପାଇଁ କିପରି ବ୍ୟାକୁଳ ହୁଏ,

ତା'ନ ଭୋଗିଲେ ବୁଝି ହେବନି । ତମେ ତ ବାପମା'ଙ୍କ ପାଖରେ ରହି ଓ ନବଜାତ ସ୍ନେହର କୁମାରକୁ କୋଳରେ ଧରି, ମୋ ପାଇଁ ବ୍ୟାକୁଳ ହେଉଛ । ମୋର ଯେ ସାଙ୍ଗସାଥୀ କେହି ନାହିଁ - ମୁଁ କିପରି କାଳ କାଟୁଥିବି, ଜାଣିପାର । ତମେ ଜାଣ ଯେ, ନିଃସଙ୍ଗତା ବର୍ତ୍ତମାନ ନଗର ସଭ୍ୟତାର ଏକ ପ୍ରଧାନ ଓ କରୁଣ ଅଭିଶାପ । ଛୋଟ ଛୋଟ ଗ୍ରାମରେ ପ୍ରତ୍ୟେକ ଲୋକ ଅପର ଲୋକକୁ ଚିହ୍ନେ ଓ ଗ୍ରାମର ସମସ୍ତଙ୍କ ମଧ୍ୟରେ ଗୋଟିଏ ଆତ୍ମୀୟ ସଂପର୍କ ଥାଏ । ବିରାଟ ନଗରମାନଙ୍କରେ ଲକ୍ଷଲକ୍ଷ ମନୁଷ୍ୟର ସମାଗମ ହୁଏ ସତ, କିନ୍ତୁ ମିଳନ ହୁଏନି - ପ୍ରତ୍ୟହ ତମେ ସହସ୍ର ଲୋକଙ୍କ ସଂଗେ ଦେହଘଷି ଚାଲିବ, କିନ୍ତୁ ସେଥିରୁ ଜଣେ ହେଲେ ତମର ଅନ୍ତରର କଥା ବୁଝିବାକୁ ପ୍ରସ୍ତୁତ ନୁହେଁ । ଏକାଘରେ ଲୋକ ଏଠି ରହିବେ, କିନ୍ତୁ ଗୋଟେ ରୁମ୍‌ର ଲୋକ ଆର ରୁମ୍‌ର ଲୋକଙ୍କର ଦୁଃଖସୁଖ କିଛି ହେଲେ ଜାଣିବେନି । ପ୍ରତ୍ୟେକ ପ୍ରତ୍ୟେକଙ୍କର କାର୍ଯ୍ୟରେ ବ୍ୟସ୍ତ । ପ୍ରାଣଭରି ଗପସପ କରିବାକୁ କାହାକୁ ଅବସର ନାହିଁ । ଓଃ ! ଏପରି ଅବସ୍ଥାରେ ମଣିଷ ବଂଚେ କିପରି ? ଅନେକ ବାଳିକା କିପରି ସଂଗହୀନ ଜୀବନଯାପନ କରନ୍ତି ସେ ବିଷୟରେ ଚିଠି ଲେଖନ୍ତି ଖବରକାଗଜକୁ । ଟିକିଏ ବଡ ହେଲେ ତ ସେମାନେ ବାପ ମା'ଙ୍କୁ ଛାଡି ଅର୍ଜନ କରିବାକୁ ସହରକୁ ଚାଲି ଆସନ୍ତି; ଏଠି ଆସି କିଏ କି ଅଫିସ୍‌ରେ କାମରେ ଭର୍ତ୍ତି ହୁଏ । ରହିବା ପାଇଁ କେଉଁଠି ଗୋଟେ ରୁମ୍ ଭଡା ନିଏ । ସେହି ରୁମ୍ ଓ ସେହି ଅଫିସ୍ ତା'ର ଜଗତ । ସେ ଯଦି ସୁନ୍ଦରୀ ହୋଇଥାଏ, ତେବେ ତାକୁ ଡାକରା ଆସିପାରେ; ନଚେତ ସମଗ୍ର ଜୀବନ ସେହି ରୁମ୍ ଓ ଅଫିସ୍‌କୁ ଯିବା ଆସିବା କରି କଟିଯିବ । ଅର୍ଜିତ ଟଙ୍କାରେ ଅବଶ୍ୟ ସିନେମା ଥିଏଟର ଦେଖାହୁଏ, ଭିନ୍ନ ଭିନ୍ନ ସ୍ଥାନ ବୁଲାହୁଏ - କିନ୍ତୁ ମନୁଷ୍ୟର ଆତ୍ମା ଏ ସବୁରେ କିପରି ଶାନ୍ତ ହେବ କହ ? ଏହିପରି ଶତ ଶତ ଆତ୍ମାର ଉଷ୍ଣ ଅଶାନ୍ତ ନିଃଶ୍ୱାସରେ ଏ ଦେଶର ନଗର ଜୀବନ ଅସହ୍ୟ ।

ଏଠାରେ ମଉଜ କରିବାକୁ କହନ୍ତି to have a good time. Good time ପାଇବାକୁ ହେଲେ ପଇସା ଖର୍ଚ୍ଚ କରିବାକୁଇ ହେବ । କାରଣ ପୁରୁଷର good time ପାଇଁ ନାରୀ ଦରକାର, ନାରୀର good time ପାଇଁ ପୁରୁଷ ଦରକାର । ସାଧାରଣତଃ ପୁରୁଷ ନାରୀକି ନେଇ good time ଭୋଗ କରିବାକୁ ଚାହେଁ । ସେ ସବୁର ସମସ୍ତ ଖର୍ଚ୍ଚ ପୁରୁଷ ବହନ କରିବ । ସିନେମା, ଥିଏଟର ବା ବୁଲାବୁଲି - ସବୁଠିକି ତ ପଇସା ଦରକାର । ସେଥିପାଇଁ ପୁରୁଷକୁ ପ୍ରସ୍ତୁତ ରହିବାକୁ ପଡିବ । ଆଜିକାଲି ଏଠି ଅନେକ ଯୁବକ ଓ ଯୁବତୀ ଅବିବାହିତ ରହି, ଅର୍ଜିତ ଅର୍ଥ ଏହିପରି good time ଭୋଗ କରିବାରେ ବ୍ୟୟ କରନ୍ତି । ନାରୀର ଅର୍ଜନ ପୋଷାକ ଓ ପ୍ରସାଧନରେ ଯାଏ, ପୁରୁଷର ଅର୍ଜନ ନାରୀକୁ ନେଇ good time ଭୋଗ କରିବାରେ ଯାଏ । ନୂତନ ସଭ୍ୟତା ଫଳରେ ଏ ଦେଶର ପାରିବାରିକ ଜୀବନ କ୍ରମେ ଚୂର୍ଣ୍ଣ ହେଉଛି । ଏକେତ ଜୀବନଯାପନର ପଣା ଏତେ ଉଚ୍ଚକୁ ଉଠିଛି ଓ ଖାଦ୍ୟ ଓ ଆସବାବ ଇତ୍ୟାଦିର ମୂଲ୍ୟ ଏତେ ବଢିଛି ଯେ, ବିବାହ କରି ଗୋଟେ ପରିବାର ମେଣ୍ଟେନ କରିବା କଠିନ ବ୍ୟାପାର । ତା'ଛଡା ଉପଭୋଗର ସୁବିଧା ଯେତେବେଳେ ଏତେ, ବିବାହ କରି ଜଣକଠି ବାନ୍ଧି ହେବାକୁ ଯିବ କିଏ ?

ଆମର ଯେପରି ଦରମା ମାସକୁ ମାସ ମିଳେ ଓ ଦିଆନିଆ ସବୁ ମାସ ଶେଷରେ ହୁଏ, ୟାଙ୍କର ସେହିପରି ସପ୍ତାହ ଶେଷରେ ହୁଏ । ସରକାରୀ ଅଫିସଠାରୁ ଆରମ୍ଭ କରି ସାମାନ୍ୟ ହୋଟେଲ ପର୍ଯ୍ୟନ୍ତ ସବୁଠି ସାପ୍ତାହିକ ଦେଣାନେଣା । ସୋମବାରଠୁ ଶନିବାର ଯାଏଁ ସବୁଠି କାମ । ଶନିବାର ଉପରଓଳି ଛୁଟି ପାଇ ଓ ସପ୍ତାହକର ଟଙ୍କା ପାଇ କୁମାରୀ, ଗୃହିଣୀ ଓ ଗୃହସ୍ଥ ସମସ୍ତେ ଜିନିଷ କିଣାକିଣି ବା shopping ପାଇଁ ବା Cinema theatre ପାଇଁ ବାହାରିପଡନ୍ତି । ଶନିବାର ଉପରଓଳି ରାସ୍ତାରେ ଚାଲିବା ଅସମ୍ଭବ ହୋଇଉଠେ - ଏତେ ଲୋକଗହଳ । ସେଦିନ ଆମର ହୋଟେଲରେ ଏତେ ଲୋକ ଆସି ଜମା ହୁଅନ୍ତି ଯେ, ଆମକୁ ଘଣ୍ଟେ ଖଣ୍ଡେ ଅପେକ୍ଷା କରିବାକୁ ପଡେ । ହାତରେ ଟଙ୍କା ପାଇ କୁଆଡୁ କୁଆଡୁ ଲୋକ ଆସି ଏହି ହୋଟେଲରେ ଖାଇ Cinema ପ୍ରଭୃତି ଦେଖିଯିବେ ବା କିଣାକିଣି ସାରି ଏଠି ଖାଇ ଘରକୁ ଯିବେ । କହିରଖିବା ଉଚିତ ଯେ ଏମାନଙ୍କ ମଧ୍ୟରୁ ଅଧିକାଂଶ ସ୍ତ୍ରୀ । ରାସ୍ତାରେ ଏଠି ୧୦ ଜଣ ଲୋକରେ ୬ଜଣ ସ୍ତ୍ରୀ ୪ଜଣ ପୁରୁଷ ଦେଖିବ ।

ରବିବାର ଦିନ ସକାଳେ ଉଠି ଏଠି ସହରକୁ ବୁଲିଗଲେ ତମେ ଭାବିବ ଲୋକଗୁଡା କୁଆଡେ ପଳେଇଲେ କି ? ଚାରିଆଡେ ଶୁନ୍‌ଶାନ୍ - କଦବା କିଏ କୁଆଡେ ଏଣେତେଣେ ଯିବା ଆସିବା କରୁଛି - ଟ୍ରାମ୍ ବସ୍ ଅଧଘଣ୍ଟା ଅନ୍ତରରେ ଯିବାଆସିବା କରୁଛି - ସେସବୁ ପୁଣି ଖାଲି । ଅନ୍ୟଦିନ ସେସବୁ ପ୍ରତି ପାଞ୍ଚ ମିନିଟ୍‌ରେ ଯିବାଆସିବା କରେ ଓ ପ୍ରତ୍ୟେକରେ ଲୋକ ହୁଁଟି ହୋଇଥିବେ । ରବିବାର ଏମାନଙ୍କର ଧର୍ମଦିନ ଓ ବିଶ୍ରାମ ଦିନ । ସପ୍ତାହଯାକ କାମ କରି ଓ ସହର ଭିତରେ ଆବଦ୍ଧ ରହି ଲୋକେ କ୍ଳାନ୍ତ ହୋଇପଡନ୍ତି ଓ refreshed ହେବା ପାଇଁ ବନ୍ଧୁବାନ୍ଧବ ଘରକୁ ବା ନିକଟବର୍ତ୍ତୀ ସ୍ୱାସ୍ଥ୍ୟକର ଜାଗାକୁ ଯାଇ ଦିନେ କଟେଇ ଆସନ୍ତି । ଚର୍ଚ୍ଚକୁ ଖୁବ୍ କମ୍ ଲୋକ ଯାନ୍ତି । ଟୋକାଟୋକିଏ ସଙ୍ଗୀ- ସଙ୍ଗିନୀକୁ ଧରି ଏହି ଦିନକ good time ପାଇବା ପାଇଁ ଭିନ୍ନ ଭିନ୍ନ ଜାଗାକୁ ଚାଲିଯାନ୍ତି । ଶନିବାର ଉପରଓଳି ଓ ରବିବାରକୁ ଏଠି week end ବା ସପ୍ତାହ ଶେଷ କରନ୍ତି । ସୋମବାର ଦିନ ପୁଣି ଦେଖାହେଲେ ଏଠି ଏକ ସାଧାରଣ ପ୍ରଶ୍ନ - How did you spend your week end ? ତମର ସପ୍ତାହ ଶେଷ କିପରି କଟେଇଲ ? .......... (ପ୍ରାଣର ଲକ୍ଷ୍ମୀରେ ତୁ ତ ବୁଝିବୁ good time ପାଇଁ ପଇସା ଦରକାର; ଆମର ରବିବାର ଦିନଟା ବଡ କଷ୍ଟରେ କଟେ - ଯାହା ହେଉ, ଆମେ କୌଣସି ମତେ କଟେଇ ନେବାକୁ ଚେଷ୍ଟା କରୁ ।)

କହିଛି ନା ଏଠି ୧୦ ଜଣରେ ୬ଜଣ ସ୍ତ୍ରୀ ଦେଖିବ । ଇଏ ହେଲା ଚିତ୍ରାଂଗଦାର ଦେଶ । ଦିନେ ସକାଳେ ମୁଁ ଉପରୁ ଓହ୍ଲେଇ ତଳେ ଥିବା ହୋଟେଲକୁ breakfast ଖାଇବା ପାଇଁ ଆସି ଦେଖେତ ପାଁଝାଏ ମାଇକିନା ବସି ଗପ କରୁଛନ୍ତି । ସେତେବେଳକୁ ଆଉ କେହି ଆସି ନଥାନ୍ତି । ମତେ ସଂକୋଚ ଲାଗିଲା - ମୁଁ ଥଂଗଥଂଗ ହୋଇ ଚାଲି ଆସିଲା ବେଳକୁ ସେମାନେ ଡାକିଲେ, ମୁଁ ଗଲି । ଜଣେ ଚୌକି ପକେଇ ମତେ ବସେଇଲା - ମୁଁ ସଂକୋଚରେ ନିଆଁ ପାଖରେ ବସିଲି - ସେମାନେ ନିଆଁକୁ ଘେରି ଅର୍ଦ୍ଧବୃତ୍ତାକାରରେ ବସିଥାନ୍ତି ।

ସେମାନଙ୍କର କୌଣସି ପ୍ରକାର ସଂକୋଚ ନାହିଁ । ପୁରୁଷ ପରି ସିଗାରେଟ୍ ଫୁଙ୍କା ଚାଲିଛି, ହେଁ ହେଁ ହସ, ଗପ - ଠିକ୍ ପଞ୍ଚାଏ ପୁରୁଷ ଯେପରି । ମୁଁ କ୍ରମେ କ୍ରମେ ମୋ ପାଖରେ ବସିଥିବା ସ୍ତ୍ରୀ ଲୋକଟି ସାଥିରେ କଥା ହେଇ ବୁଝିଲି ଯେ ସେମାନେ Daily mail ନାମକ ଖବରକାଗଜର Canvasser (ଯେଉଁମାନେ ବିକେଇବାକୁ ଚେଷ୍ଟା କରନ୍ତି) ଏଇ ୯ଟା ବେଳକୁ ଯିବେ ଯେ ରାତିକୁ ଫେରିବେ - ସପ୍ତାହରେ ୩୦ ଶିଳିଂ ପାରିଶ୍ରମିକ । ପଚାରି ବୁଝିଲି Daily mailର ବିକ୍ରି ଦୁଇ ମିଲିୟନ ବା ୨୦ ଲକ୍ଷ । କିନ୍ତୁ ତଥାପି ଆହୁରି ବେଶୀ ବିକ୍ରି ପାଇଁ ଚେଷ୍ଟା । ଏଇଥିରୁ ଜାଣିବ ଏମାନଙ୍କର ସବୁ ଦିଗରେ କିପରି ବିରାଟ ଚେଷ୍ଟା - ସବୁବେଳେ ଆଗକୁ ମାଡିବା ପାଇଁ ଅଭିଳାଷ । ଆମର କଥାବାର୍ତ୍ତା ଶୁଣି ମଝିରେ ଥିବା ଜଣେ ବୟସ୍କା କହିଲା - ସେ କିଏସେ ? ଇଂରାଜୀ ଭଲ କହୁଛି ଯେ ! ତା'ପରେ ମୁଁ ତା ସାଥିରେ ବି କଥା ହେଲି । କ୍ରମେ ଭଲ ଆଳାପ ହେଲା । ସେମାନଙ୍କ ଭିତରେ କିଏ ବିବାହିତ ଅବିବାହିତ ପଚାରିଲି । ସେମାନେ ବିନା ସଂକୋଚରେ ଯିଏ ଯାହା, ତାହା କହିଲେ । ତାଙ୍କ ଭିତରେ ଜଣେ ଯୁବତୀ ଥିଲା । ସେ ବିବାହ କରିଛି ଖୁବ୍ ନିକଟରେ । କିନ୍ତୁ ସେ ପିଲାପରି ଦିଶୁଛି । ମୁଁ ତେଣୁ କହିଲି, 'ସେ ତ ବିବାହ ବୟସର ହେଲାପରି ଦିଶୁନି' । ସେ ବାଳିକା ନିଜେ ଉତ୍ତର କଲା - 'କି ! ମୁଁ ଯେ ୨୦ ବର୍ତ୍ତମାନ, ମୋର ବିବାହର ବୟସ ଯଥେଷ୍ଟ' । ଆମ ଦେଶରେ ବିବାହ କଥା ପକେଇଲେ ବାଳିକାମାନେ କାହିଁ ଯାଇ ବାରିଆଡେ ଲୁଚନ୍ତି । ମୁଁ ପୁଣି ପଚାରିଲି 'ତମର ସ୍ୱାମୀ କ'ଣ କରେ ?' ସେ କହିଲା ସେ post officeରେ କାମ କରେ । ବେଶ୍ ! ସ୍ୱାମୀ ସ୍ତ୍ରୀ ଉଭୟେ କାମ କଲେ ଓ ପଇସା ପାଇଲେ । ବର୍ତ୍ତମାନ ସେମାନେ ପଇସା ଜମା କରୁଛନ୍ତି - ବେଶ୍ କିଛି ହେଲେ ଘର କିଣିବେ - ସ୍ତ୍ରୀ ହୁଏତ କାମ ଛାଡି ଘର ଦେଖିବ, ପିଲା ହେଲେ ପିଲା କଥା ବୁଝିବ । ସେମାନେ ଯେତେବେଳେ ବିଦାୟ ନେଲେ ସମସ୍ତଙ୍କ କରମର୍ଦ୍ଦନ ସଂଗେ ସୁଖମୟ କ୍ରିସ୍‌ମାସ୍ ଜଣେଇଲି (ତାହା ହିଁ ପ୍ରଥା) । ବିବାହିତ ବାଳିକାଟିର କରମର୍ଦ୍ଦନ କଲାବେଳେ କହିଲି 'ତମର ବିବାହିତ ଜୀବନ ସୁଖମୟ ହେଉ, ଏହା ହିଁ ଇଚ୍ଛା କରେ' । ସେ ଧନ୍ୟବାଦ ଦେଲା ଓ ମୁଁ ବିବାହ କଲେ ମୋ ଭାଗ୍ୟରେ ବି ସେଇୟା ଘଟୁ ତାହା ଜଣେଇଲା ।

କଥା ହେଲାବେଳେ ଜଣେ କହିଲା ତମର ବୟସ କେତେ ? ବୋଧହୁଏ ୨୦ । ମୁଁ କହିଲି ନା ମତେ ପଚିଶି । (ମୁଁ ୩୦/୩୧ କହି ଗଣ୍ଡଗୋଳ ଉଠେଇବାକୁ ଇଚ୍ଛା କଲିନି) । ଲକ୍ଷ୍ମୀରେ, ମତେ ମୋର ବୟସକୁ ନେଇ ଏହି ମିଛ କଥାଟା ବରାବର ଏଠି ବ୍ୟବହାର କରିବାକୁ ପଡୁଛି । ଜାହାଜରେ କେହି ବିଶ୍ୱାସ କଲେନି ଯେ ମତେ ଏତେ ବୟସ ଓ ମୁଁ ବିବାହିତ । ସମସ୍ତେ ଭାବିଥିଲେ ମୁଁ ସଂଗେ ସଂଗେ କଲେଜ ଛାଡିଛି । ମୁଁ ଜାଣେନା ଭବାନୀପାଟଣା ଛାଡିବା ପରେ ମୋର ସ୍ୱାସ୍ଥ୍ୟର ଖୁବ୍ ଉନ୍ନତି ହେଇଛି କି ନାହିଁ - କିନ୍ତୁ ମୋର ବୟସ ସମ୍ବନ୍ଧରେ ଏଠି ମୁଁ ଏଇ ମତ ଶୁଣୁଛି । ହାୟ, ଲୋକଙ୍କ କଥା ଅନୁସାରେ ମୋର ବୟସ କିଏ କାଢିନିଅନ୍ତା କି । ଏଣେ ଯେ ମୋର ବାଳ ପାଚିବାକୁ ଆରମ୍ଭ କଲାଣି,

ସେ କଥା ତ କିଏ ବୁଝୁଛି - ସେ କଥା କେବଳ ତୁଇ ବୁଝିବୁ - କାରଣ ତତେ ଉପାଡିବାକୁ ପଡିବ । ନ ହେଲେ ବୁଢାବର ପାଇଛୁ ବୋଲି ମର୍ମଦହନ ଭୋଗ କରିବାକୁ ପଡିବ । ସେମାନେ ବିଦାୟ ନେଲାବେଳେ ଯେଉଁମାନେ ଅବିବାହିତା ସେମାନଙ୍କୁ ପଚାରିଲି 'ତମେ ସବୁ ଆଉ ବିଭା ହେବନି ? ଏ ଦେଶରେ କେବେ ବିଭା ହୁଅନ୍ତି ?'(ଯାହାକୁ ପଚାରିଲି ତାକୁ ୩୦ ବର୍ଷ) ଉତ୍ତର ମିଳିଲା ଯେ 'ବର୍ତ୍ତମାନ good time ମିଳୁଛି । ଯେତେବେଳେ ମନ ହେବ ସେତେବେଳେ ବିଭାଘର ହେବ' - ଏ ଦେଶରେ ବିବାହ ପାଇଁ ବୟସର ବାଧା ନାହିଁ । ୮୦/୯୦ ବର୍ଷରେ ବି ବିଭାଘର ହୋଇପାରେ । ସେମାନେ ବିଦାୟ ନେଲାପରେ ମୁଁ ଭାବିଲି ମୋ ଦେଶର ଓ ଏ ଦେଶର ସ୍ତ୍ରୀମାନଙ୍କ ଭିତରେ କି ପାର୍ଥକ୍ୟ । ଏବେ ଗୋଟେ ମାଗାଜିନ୍‌ରେ ପଢିଲି ଦି'ଟା ସ୍ତ୍ରୀ କାହାରିହେଲେ ସାହାଯ୍ୟ ନ ନେଇ କୌଣସି ମଫସଲରେ କାଠର ଦୁଇମହଲା ଘର ତୋଳି ଦେଇଛନ୍ତି । ଏମାନେ ଯେ ପୁରୁଷର ସମାନ, ତା'ତ ସେମାନେ ନିଜେ ପ୍ରମାଣ କରି ଦେଉଛନ୍ତି ନା !

ଧନରେ, ମୁଁ କଠିନ ପରିଶ୍ରମ କରୁଛି । ତୋର ଶୁଭେଚ୍ଛା ମିଶିଲେ ମୋର କୌଣସି କର୍ମ ଅସିଦ୍ଧ ହେବ ବୋଲି ଆଶଙ୍କା କରୁନି । ମୋ ପାଇଁ ତୁ ଅଶ୍ରୁପାତ କରୁ ରେ ପାଗ୍‌ଲି ? ଲୋକେ ଶୁଣିଲେ ହସିବେ ଯେ, ଓଡିୟା ଯୁବକ ବିଲାତ ମାଟିରେ ରହି ପୁଣି ଘରକଥା ଭାବୁଛି ! - କାନ୍ଦୁଛି ! ଏଠି ଯେ ସବୁ ଭୁଲିବାର କଥା - ବାପ, ମା', ସ୍ତ୍ରୀ ସବୁ । କାରଣ ଏଠି good timeର ଅଭାବ ନାହିଁ । ହାୟରେ ପାଗ୍‌ଲି, ତୋର ପବିତ୍ର ସ୍ନେହ ଦୀର୍ଘ ୫ ବର୍ଷ ଉପଭୋଗ କଲାପରେ, ଜଗତରେ ମୋ ଲାଗି ଏପରି କୌଣସି ସୁଖ ବା ଭୋଗ ନାହିଁ ଯାହାକି ମୋ'ଠାରୁ ତୋର ସ୍ମୃତିକି ନେଇଯିବ । କେବେ ଯିବି ଦିନ ଗଣୁଛି । କିପରି ଦୀର୍ଘ ଦେଢ଼ ବର୍ଷ ଆହୁରି କଟିବ ତାହା ହିଁ ଅନେକ ସମୟରେ ଭାବିବସେ । କୌଣସିମତେ କଟିବ ଅବଶ୍ୟ । ତମେ କିନ୍ତୁ ସପ୍ତାହରେ ଥରେ ବରାବର ଚିଠି ଦେବ । ଏ'ଟା ଭାରି ଦରକାର ପଡୁଛି । ବାପାଙ୍କର, ଲଲୁର ଓ ତମର ସ୍ୱାସ୍ଥ୍ୟ କଥା ବରାବର ଲେଖୁଥିବ ।

Air mail ଟଙ୍କା ଓ ଟେଲିଗ୍ରାମ ଟଙ୍କା ପାଇଛୁ। ଏଥିରେ ଆମର ୩ ମାସ ଚାଲିଯିବ । ବାଳ ଉପୁଡିବା ସମ୍ବନ୍ଧରେ ଚିନ୍ତା କରିବନି - ସେସବୁ ପୁଣି ଉଠିବ । ଏଠି ଜଣେ ମାଡ୍ରାସୀ ଡାକ୍ତର ଓ ତାଙ୍କର ସ୍ତ୍ରୀ ଅଛନ୍ତି । ଆଶ୍ଚର୍ଯ୍ୟର କଥା ୩/୪ଟା ପିଲା ଜନ୍ମ କରି ଓ ବର୍ତ୍ତମାନ ମଧ୍ୟବୟସର ହେଲେ ହେଁ ତାଙ୍କର ପ୍ରଚୁର ବାଳ । ତାଙ୍କୁ ପଚାରି ବୁଝିଲି ଯେ ସେ ଆୟୁର୍ବେଦୀୟ ତୈଳ ବ୍ୟବହାର କରୁଛନ୍ତି - ତାଙ୍କ ମା' ତେଲରେ ନାନା ମସଲା ପକେଇ ତାକୁ ଘରେ ତିଆରି କରେ । ଆଉଜଣେ ଶିଖ ଓ ତାଙ୍କର ସ୍ତ୍ରୀ ବି ଅଛନ୍ତି । ସେ ବି ପ୍ରୌଢା ଓ ତାଙ୍କର ବି ପ୍ରଚୁର ବାଳ । ତାଙ୍କୁ ପଚାରି ବୁଝିଲି ଯେ ସେ କେବଳ ସୋରିଷତେଲ ଲଗାନ୍ତି । ପଞ୍ଜାବରେ ସମସ୍ତେ ମୁଣ୍ଡରେ ସୋରିଷ ତେଲ ଲଗାନ୍ତି। ତେଣୁ ବୋଧ ହେଉଛି ବାଳର ସ୍ୱାସ୍ଥ୍ୟ ତେଲ ଉପରେ ନିର୍ଭର ନ କରି ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ଉପରେ ବୋଧହୁଏ ବେଶୀ ନିର୍ଭର କରେ ।.......... ଏଠି ଆମେ ସାତ ଦିନରେ ଥରେ ଗାଧୋଉ । ମୁଣ୍ଡରେ

ତେଲ ଦରକାର ହୁଏନା । ଏଠାର ଜଳବାୟୁ ଏମିତି ଯେ ବିନା ତେଲରେ ବାଳ କୋମଳ ହୋଇ ରହେ । ଏଠି ସ୍ତ୍ରୀ ପୁରୁଷ ସମସ୍ତଙ୍କର ଗହଳ ଓ ପ୍ରଚୁର ବାଳ । ବାଳକୁ କାଟି ପକାନ୍ତି ଓ ବାଳର ବର୍ଣ୍ଣ କହରା ହେବା ଯୋଗୁଁ ଭାରତୀୟ କୃଷ୍ଣକେଶର ସୌନ୍ଦର୍ଯ୍ୟ ସେମାନେ ଗର୍ବ କରିପାରନ୍ତିନି ।

ଧନରେ, ଆ ତତେ ଆଲିଙ୍ଗନ କରେ । ଲଲ୍ଲୁକୁ ମୋତେ ଦେ, ମୁଁ ଦକ୍ଷିଣ କୋଳରେ ଧରେ, ତତେ ବାମକୋଳରେ ନିବିଡ ଭାବରେ ଯାକି ତୋର ମୁଖ ଆଘ୍ରାଣ କରେ । ଧନ ଧନ ଧନ ମତେ ଆଶ୍ଳେଷ ଦେ ......... ଧର, ମୁଖ ଆଘ୍ରାଣ କର.......

ମୋର ସ୍ୱାସ୍ଥ୍ୟ ଓ ଦୁର୍ଗାର ସ୍ୱାସ୍ଥ୍ୟ ଭଲ ଅଛି । ଶୀଘ୍ର ଚିଠି ଦେବ ।

।ଇତି।

ତମର ପ୍ରିୟ

ସ୍ନେହର ପାଗ୍‌ଲିରେ,

ଦୁର୍ଗାମାଧବ ଲେଖିବାକୁ ନାହିଁ କଲେ । ତେଣୁ ମୁଁ ଆଉ ଟିକିଏ ଲେଖି ଦେଉଛି । ତମେ ଚିଠିରେ ଓଡିଶା ଓ ଭାରତବର୍ଷର ପ୍ରଧାନ ପ୍ରଧାନ ଘଟଣା ଲେଖି ଦେଉଥିବ । କାରଣ' ମୁଁ ଏ ପର୍ଯ୍ୟନ୍ତ ଏଠି ଭାରତୀୟ କୌଣସି ଖବରକାଗଜ ପଢିବାକୁ ପାଇନି । ଶୁଣୁଛି ଜଣେ ଛାତ୍ର ଏଠାରେ ଗୋଟିଏ ପ୍ରଧାନ ଭାରତୀୟ ଇଂରାଜୀ କାଗଜ ମଗାନ୍ତି । ଆଜି କାଲି ଭିତରେ ତାଙ୍କଠୁ ଆଣି ପଢିବି ।

ଆମ ପାଖେ ଟଙ୍କା ପଇସା କିଛି ନାହିଁ ବର୍ତ୍ତମାନ ।

Insurance coy ପାଖକୁ ଚିଠି ଏଇ ଠିକଣାରେ ପଠାଇବ -

Manager
Oriental Government Assurance coy
Katchery Road, Ranchi P.O
Bihar
C.I. Ry.

ରାମକୁ ପରେ ଖଣ୍ଡିଏ ଚିଠି ଦେବି । ମୁଁ ବାଟଯାକ ଓ ଏଠାରେ ଅନେକ ଦୃଶ୍ୟର (ମୁଁ ଦେଖିଥିବା) ଛବି ସଂଗ୍ରହ କରି ରଖିଛି । - ସେସବୁ ମୋ articles ସାଥିରେ ଦେବି । ଛପା ସରିଲେ ରାମକୁ ସବୁ ଦେଇଦେବି । ରାମ ପାଇଁ ବାଟରେ ଆସିଥିବା ଦେଶମାନଙ୍କର ମୁଦ୍ରା ମଧ୍ୟ ସଂଗ୍ରହ କରି ରଖିଛି, ତାକୁ ଏ ଖବର ଦେଇଦେବ । ତାକୁ ମୋର ଆଶୀର୍ବାଦ ଜଣାଇ ଦେବ । ସେ ଭଲ ପଢୁ - 1st divisionରେ ପାଶ୍ କରୁ - ସବୁ ଛାଡି ଏଇୟା ଏଇକ୍ଷଣି ଚେଷ୍ଟା କରୁ - ଏଇକଥା ମୁଁ କହିଛି ବୋଲି ଜଣାଇ ଦେବ । ତା ସମ୍ବନ୍ଧରେ ମୁଁ ବାସୁବାବୁଙ୍କ ନିକଟକୁ ଖଣ୍ଡେ ପତ୍ର ଦେବି ।



ଅଠର

## କାହିଁକି ବ୍ୟାକୁଳ ହୁଏ, ମୁଁ ଜାଣେନା

Students' Union
King's College
Newcastle on Tyne
28.12.37

ପ୍ରାଣର ଲକ୍ଷ୍ମୀରେ,

ପାଗ୍‌ଲି, ତୋର ଓ ବାପାଙ୍କର ପୋଷ୍ଟକାର୍ଡ ଏଇକ୍ଷଣି ପାଇଲି । ଆମେ ସବୁ ଟଙ୍କା ପାଇଛୁ - ପୂର୍ବ ଚିଠି ମାନଙ୍କରେ ଜଣାଇଛୁ, ଇ ଭିତରେ ପାଇବଣି । ତୁ ଲେଖିଛୁ ଆମେ କାହିଁକି ଅକାରଣ ବ୍ୟାକୁଳ ହେଉଛୁ । ଦୁର୍ଗା ବ୍ୟାକୁଳ ହୁଏନି । ଯେ ହେବାର ସେଇ ହୁଏ । ଏବଂ ବିଧାତା କରନ୍ତେ ସେ ନ ହୁଅନ୍ତା କି । ଏ ଦେଶରେ ନାରୀ ଓ ନାରୀର ସଙ୍ଗ ବଡ ସୁପ୍ରାପ୍ୟ - ଜାଣ ତ ? ତଥାପି ଗୋଟେ ଓଲୁ ହଜାର ହଜାର କୋଶରେ ଥିବା ଗୋଟେ ଟୋକିଟା କଥାଇ କେବଳ ଭାବି ହେଉଛି ଓ ଏ ଦେଶର ସୁଲଭ ସୁଖାମୋଦକୁ ଦୂରକୁ ଠେଲି ଏକାକୀ ଜୀବନ କଟାଉଛି, ବଡ ଆଶ୍ଚର୍ଯ୍ୟର କଥା ନିଶ୍ଚୟ । ଓଃ ବିପରୀତ ସତ୍ୟ ହୁଅନ୍ତା ବୋଇଲେ, ମୋର ଗଣ୍ଡଦେଶ ଉଷ୍ଣ ଅଶ୍ରୁରେ ସିକ୍ତ ହୁଅନ୍ତୁ ନାହିଁ ପରା ! ପାଗ୍‌ଲି, ତୁ ଏପରି ପ୍ରଶ୍ନ ପଚାରିଲୁ କାହିଁକି ? ମୁଁ ଯେ କାହିଁକି ବ୍ୟାକୁଳ ହୁଏ ମୁଁ ଜାଣେନା । ସବୁ ସୁଖ ସୁବିଧା ଭିତରେ ପ୍ରାଣ ଭିତରେ ଏକ ଶୂନ୍ୟତା ଅନୁଭବ କରୁଛି - କେବଳ ଏଇ ଯୋଗୁ ଯେ ତୁ ପାଖରେ ମୋର ନାହୁଁ । ଆଉ ନ ହେଲେ କି ଚିନ୍ତା ? ଥରେ ଥରେ ଘର କଥା ମନେପଡେ, ଅପା କଥା ଭାବେ - ଭାବେ ତାକୁ ଅବହେଳା କଲି ପରା, ତା'ର ରୋଗ-ଶୋକରେ ଦୀର୍ଘ ଦୁଇବର୍ଷକାଳ ମୁଁ କିଛି କରିପାରିବିନି ଯେ - ଏ ସବୁ ପ୍ରାଣରେ ଆଘାତ ଦିଏରେ ଲକ୍ଷ୍ମୀ । ଦେବାର କଥା... ତା'ଛଡା ଭବିଷ୍ୟତ ଓ ଆର୍ଥିକ ଚିନ୍ତା ଲାଗିଛି ପୁଣି ।

ତା'ବୋଲି ଆମର ଦୈନନ୍ଦିନ କର୍ତ୍ତବ୍ୟ ପଡିରହିନି । ମତେ ତ କଠିନ ପରିଶ୍ରମ କରିବାକୁ ପଡୁଛି । ଦୀର୍ଘ ଦୁଇବର୍ଷ, ବିନା ଅବସରରେ ମତେ ଖଟିବାକୁ ପଡିବ । ମୁଁ ସେଥିପାଇଁ ପ୍ରସ୍ତୁତ ଅଛି ଓ ହେଉଛି । ମୋର ସବୁ କଷ୍ଟର ପୁରସ୍କାର ସ୍ୱରୂପ ତୁ ପ୍ରତି ସପ୍ତାହରେ ଖଣ୍ଡେ ଚିଠି ନିଶ୍ଚେ ଦେ । ମୋର ବଡ ଚିଠି ଦରକାର ନାହିଁ । ଏଇ ଖଣ୍ଡେ କାର୍ଡରେ ତୋର, ବାପାଙ୍କର ଓ ଲଲୁର ଖବର ଲେଖି ପକେଇ ଦେଉଥା - ବେଶ୍ ସେଇ ଯଥେଷ୍ଟ । ତମର ଅନ୍ୟାନ୍ୟ ଖବର ଦେବା ଦରକାର ନାହିଁ । ଚିଠି ବ୍ୟକ୍ତିଗତ କଥା କି ନା - ଅନ୍ୟ କଥା ରହିଲେ ତା'ର ମର୍ଯ୍ୟାଦା ନଷ୍ଟ ହେଇଯାଉଛି । ତେଣୁ ମୋର ଅନୁରୋଧ ବଡ ଚିଠି ଲେଖି ପଇସା ନଷ୍ଟ କରନି । ଖଣ୍ଡେ ଖଣ୍ଡେ କାର୍ଡ ଲେଖି ପ୍ରତି ସପ୍ତାହରେ ବରାବର ଦିଅ । ଧନରେ,ତୋ ପାଖରୁ ଚିଠି ପାଇଲେ ମନ କେମିତି ଫୁର୍ତ୍ତି ହୁଏ, ତା ତୁ ମୋର ଚିଠି ପାଇ ଯିମିତି ଅନୁଭବ କରୁଥିବୁ, ସେଇଥିରୁ ଜାଣିପାରିବୁ । ନିଜ ମନ ତ ପର ମନର ମାପକାଠି

- ସେଇଥିରୁ ଜାଣିବୁ ପ୍ରତି ସପ୍ତାହରେ ଚିଠି ଦେବା କେତେ ଦରକାର । ନିଶ୍ଚେ ଦେ - ଖଣ୍ଡେ କାର୍ଡ ।

ମୁଁ ଇଭିତରେ ଏକାବେଳକେ ମାଂସ ଛାଡି ଦେଲିଣି । ଏଠାରେ କଂସାଇ ଦୋକାନମାନଙ୍କରେ ଚମଡା ଓଲାରିଦେଇ ପ୍ରକାଣ୍ଡ ପଶୁ ଶବଗୁଡାକୁ ସେଇମିତି ଓହଳେଇ ଦିଅନ୍ତି - ସେଗୁଡାକ ଯେପରି ଦେଖିବାକୁ ଜଘନ୍ୟ, ଦୁର୍ଗନ୍ଧ ସେଇପରି । ତାକୁ ସବୁ ଦେଖି ମୋର ଭୟଙ୍କର ଘୃଣା ଜନ୍ମିଛି - ମୁଁ କେବଳ ରୁଟି, ଅଣ୍ଡା, ଦୁଧ ଓ ଫଳମୂଳ ପ୍ରଭୃତି ଖାଉଛି । ଯେଉଁ ହୋଟେଲରେ ଅଛୁ ସେ ଅନେକ ସମୟରେ ପାଣିଆ ଦୁଧ ଦେଉଛି ଓ ପୁରୁଣା ଅଣ୍ଡା ମେଷେଇ ଦେଉଛି - ମତେ ବିରକ୍ତ ଲାଗିଲାଣି - ନିକଟରେ ଅନ୍ୟଗୋଟେ ଜାଗାକୁ ପରିବର୍ତ୍ତନ କରିପାରେ ।

ଦୁଇ ସପ୍ତାହ ତଳେ ଭୟଙ୍କର ବରଫ ପଡିଥିଲା । ଛ'ସାତଇଞ୍ଚ, କେଉଁଠି କେଉଁଠି ଫୁଟେ ବହଳର ଧପ୍‌ଧପ୍-ଧଳାବରଫ । ରାଜ୍ୟର ଚାରିଆଡେ-ଗଛର ଡାଳପତ୍ରଠୁ ଆରମ୍ଭ କରି ଛାତ, ସଡକ, ପ୍ରାନ୍ତର, ରାସ୍ତା - ଯେଉଁଆଡେ ଆଖି ପଡିବ-କେବଳ ଧଳାବରଫ । ବଡ ଚମତ୍କାର ଦୃଶ୍ୟ । ଦିନେ ସଂଧ୍ୟାବେଳେ ମୁଁ ନିକଟବର୍ତ୍ତୀ ପ୍ରାନ୍ତରରେ ବରଫର ଆସ୍ତରଣ ଉପରେ ଦଉଡିଲି । ବହୁଦୂର ଯାଇ ଫେରିଲା ବେଳକୁ କରକାର ବର୍ଷା ଓ ପବନ ମୁହଁ ଉପରେ ବାଜୁଛି । ହାତ ଗୋଡ କାଲ ମାରିଗଲା - କୋଟ୍ ଟୋପି ଓଦା - କୁଆପଥର ମାଡରେ ମୁହଁ ଟେକି ହେଉ ନଥାଏ - ବଡ କଷ୍ଟରେ ସେଦିନ ଫେରିଲି । ଏହିପରି ଅବସ୍ଥାରେ ପଡି ଗୋଟେ ବାଳିକା ପ୍ରାଣତ୍ୟାଗ କରିବାର ସଂବାଦ ଚାରିଆଡେ ଖବରକାଗଜରେ ବାହାରିଥିଲା । ଆମର ସେଠି ବନ୍ୟାରେ ଯେପରି ସବୁ ଘଟେ, ଏଠି ବରଫ ଯୋଗୁ ସେହିପରି ଘଟେ । ଗାଁ ଗଣ୍ଡାକୁ ରାସ୍ତା ବନ୍ଦ ହୋଇଯାଏ । ରେଳ ଓ ରାସ୍ତା ଦୁର୍ଘଟଣା ହୁଏ, ଲୋକେ ଖାଦ୍ୟ ପାଇପାରନ୍ତିନି ଇତ୍ୟାଦି । ଏ ବର୍ଷ ଗୋଟେ ରେଳ ଦୁର୍ଘଟଣାରେ ୩୬ ଜଣ ଲୋକ ମରିଗଲେ । ଅବଶ୍ୟ ତମର ଧାରଣା ଥାଇପାରେ ଏଠି ଶୀତଦିନଯାକ ବରଫ - ମୋର ବି ସେଇ ଧାରଣା ଥିଲା । ତା ନୁହେଁ । ଆମର ଯେମିତି ବର୍ଷାକାଳରେ କେବେ କେବେ କୁଆପଥର ପଡେ, ଏଠି ବରଫ ସେହିପରି । ତେବେ ବରଫ ପ୍ରତିବର୍ଷ ଏଠି ପଡିବଇ ପଡିବ, ଏକାଧିକ ଥର । ଆମର କୁଆପଥର ପଡିପାରେ ନପାରେ । ବର୍ତ୍ତମାନ ରାସ୍ତାଘାଟ ସଫା । ଶୀତ ବି ଟିକିଏ କମିଛି । କହିବାକୁ ଗଲେ ଏଠାର ଶୀତର ଅତିରଂଜିତ ଧାରଣା ଆମର ଅଛି । ଶୀତ ଏକାବେଳେକେ ଅସହ୍ୟ ନୁହେଁ-ପୋଷାକପତ୍ର ଥିଲେ ଶୀତ ଆଦୌ ଜଣାପଡିବାର ନୁହେଁ ।

ମାତା ଓ ଶିଶୁର ଗୋଟେ ଚିତ୍ର ପଠେଇଲି । ଏହା ଏଠାର ଚିତ୍ର-ଶାଳାର ଗୋଟେ ବଡ ଚିତ୍ରର ପ୍ରତିକୃତି ମାତ୍ର । ନିକଟରେ ଏଠାର ମିଉଜିଅମ୍‌ରେ ଗୋଟେ ଚିତ୍ର ପ୍ରଦର୍ଶନୀ ହେଇଥିଲା । ଜଣେ ବିଖ୍ୟାତ ଚିତ୍ରକରଙ୍କର 'ମା ଓ ଶିଶୁ' ଚିତ୍ରଟି ମତେ ଭାରି ଭଲ ଲାଗିଲା - ମା' ବସିକରି ଛୋଟ ଶିଶୁକୁ ଗଭୀର ଭାବରେ ଚୁମ୍ବନ ଦେଉଛି, ତା'ର ପ୍ରତିକୃତି ଏଠି

ମିଳିଲାନି - ମୁଁ ସେଇ ବିଖ୍ୟାତ ଚିତ୍ରକରଙ୍କ ନିକଟକୁ ଚିଠି ଲେଖିଛି - ଯାହା ଉତ୍ତର ପାଇବି ଜଣାଇବି ।

ଶୀତଦିନ - ଏଠି ଦିନ ସାଢ଼େ ୪ଟା ବେଳୁ ରାତି ହେଇଯାଉଛି ଓ ଦିନ ୮ଟା ବେଳକୁ ଆଲୁଅ ହେଉଛି । ଏଠାର ଲୋକେ ରାତିରେ କାମ କରିବାରେ ଅଭ୍ୟସ୍ତ- ନହେଲେ ଦୀର୍ଘ ରାତ୍ରି କଟିବ କିପରି ? ଏଠାରେ ପାର୍ଲାମେଣ୍ଟ ରାତିରେ ବସେ । ନାଚ ଇତ୍ୟାଦି ମଉଜ ତ ରାତି ଗୋଟେ ଦି'ଟା ପର୍ଯ୍ୟନ୍ତ ଚାଲେ । ଦିନଯାକ ମେଘୁଆ - ସୂର୍ଯ୍ୟଙ୍କର ଦେଖା ନାହିଁ - ଯେବେ ଦେଖାହେବ ତେବେ ଆମର ଅସ୍ତଗାମୀ ସୂର୍ଯ୍ୟପରି ରକ୍ତପିଣ୍ଡ, କାରଣ ଆକାଶ ସବୁବେଳେ କୁହେଳି ଓ ମେଘରେ ଆଛନ୍ନ । ସୂର୍ଯ୍ୟ ମୁଣ୍ଡ ଉପରକୁ ଆସେନା - ଦିଗ୍‌ବଳୟର ଗୋଟିଏ ଧାରରେ ଗୋଟିଏ କ୍ଷୁଦ୍ର ଅନୁଦ୍ଧ ବୃତ୍ତାଂଶ ଅଙ୍କନ କରି ସେ ଚାଲିଯାଏ । ଏ ହେଲା ପଶ୍ଚିମ ଦେଶ - ଯେଉଁଠି ସୂର୍ଯ୍ୟ ତା'ର ତେଜ ହରେଇ ଅସ୍ତ ଯିବାର କଥା - ତେଣୁ ସୂର୍ଯ୍ୟର ବୋଧେ ଏ ହୀନଦଶା ।

ଏ ଦେଶର ଆଚାର ବ୍ୟବହାର ଯେତେ ପୃଥକ୍ ହେଲେ ମଧ୍ୟ, ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି ସବୁ ଯେ ସବୁଠି ସମାନ, ତାହା ଏମାନଙ୍କ ସଙ୍ଗେ ମିଶି ଏମାନଙ୍କର ଜୀବନ-ଇତିହାସ ଜାଣିଲେ ସହଜରେ ବୁଝାପଡେ । ଦିନେ ଖବରକାଗଜରେ ୫ଟି ବାଳିକାର କରୁଣପତ୍ର ପଢ଼ିଲି - ସେମାନେ ସେମାନଙ୍କର ବା ସେମାନଙ୍କର ସନ୍ତାନ ମାନଙ୍କର ଜାରଜ ଜୀବନ ବର୍ଣ୍ଣନା କରିଛନ୍ତି । ଓଃ ! କରୁଣ ଓ ଜୀବନ୍ତ ସେ ଇତିହାସ । ମୁଁ ତୁମକୁ ଜଣକର କଥା ତଳେ ଅନୁବାଦ କରିଦେଲି ।

"ମତେ ଯେତେବେଳେ ସାଢେ ୧୯ ବର୍ଷ - ମୁଁ ଗୋଟେ ଦୋକାନରେ ଚାକିରି ପାଇଲି । ମୋର ମାଲିକ ମୋଠୁ ୫ ବର୍ଷ ବଡ଼ । ମତେ ଚାକିରିରୁ ତଡିଦେବ ଏଇ ଭୟରେ ତା'ର ମୋର ସମ୍ବନ୍ଧ ଘଟିଲା । .......... ପନ୍ଦରଦିନ ଖଣ୍ଡେ ଭୟରେ ମୁଁ ଆତ୍ମସମର୍ପଣ କଲି ଓ ତା'ପରେ ମତେ ସେ ବାହାର କରିଦେଲା । କେତେ ସପ୍ତାହ ପରେ ଜାଣିଲି ଯେ ମୁଁ ମା' ହେବାକୁ ଯାଉଛି । ମୋ ପିଲାକୁ ୧୧ ଦିନ ହେଲାବେଳେ ତା'ର ବାପ ଆସି ମତେ କହିଲା ଯେ, ମାସକ ପୂର୍ବରୁ ଆଉଜଣକୁ ବିବାହ କରିସାରିଛି । ........ ମୁଁ ମୋର ନିଜ ପରିବାରରେ ରହିଲି, କିନ୍ତୁ ସେମାନେ ମୋ ସଙ୍ଗେ କୌଣସି ପ୍ରକାର ସମ୍ପର୍କ ରଖିବାକୁ ଏକାନ୍ତ ଅନିଚ୍ଛା ପ୍ରକାଶ କଲେ... । ଦିନେ ରାତିରେ ମୁଁ ଶୋଇବାକୁ ଚେଷ୍ଟା କରୁଥାଏ, କିନ୍ତୁ ପ୍ରତିଥର ଅଶ୍ରୁଧାରା ମତେ ବିହ୍ୱଳ କରିପକାଉଥାଏ । ମୁଁ ଶେଯରୁ ଉଠିଲି । ମୋର ବାଇବଲ ବାହାର କଲି ଓ ଈଶ୍ୱର ମତେ କ୍ଷମା ଓ ସାହାଯ୍ୟ କରିବେ କି ନାହିଁ ଦେଖିବାକୁ ଚେଷ୍ଟା କଲି । ............. ମୁଁ ଏହି ବାକ୍ୟ ପଢିବାକୁ ପାଇଲି "ତତେ ଦୀର୍ଘ ଜୀବନ ଦ୍ୱାରା ସନ୍ତୋଷଦାନ କରିବି ଓ ମୋର ତ୍ରାଣଶକ୍ତି ଦେଖେଇବି ।" ............. ସେଇ ମୁହୂର୍ତ୍ତରୁ ମୁଁ ଦୃଢପ୍ରତିଜ୍ଞା କଲି ଯେ ମୁଁ, ପ୍ରତି ଶିଶୁର ପ୍ରାପ୍ୟ ମାତୃସେବା ଓ ମାତୃସ୍ନେହ ମୋ ଶିଶୁକୁ ନିଶ୍ଚେ ଦେବି ଓ ସେଥିପାଇଁ ପ୍ରାଣପାତ କରି ଯୁଦ୍ଧ କରିବି । ସେଥିଲାଗି ମୁଁ ମୋର ସ୍ୱାସ୍ଥ୍ୟକୁ

ଆହୁତି ଦେଇଛି । ଦୁଇ ସପ୍ତାହ ବେକାର ରହିବା ପରେ ମୋର ଭାଗ୍ୟ ଦିନେ ବଦଳିଲା ଓ ମୁଁ ଗୋଟେ ଚାକିରି ପାଇଲି ଏବଂ ମୋର girlie (ଟୋକଲି) ଗୋଟେ ସ୍କୁଲରେ ମାହାଳିୟା ପଢିବାର ସୁବିଧା ମଧ୍ୟ ପାଇଲା । ଭଗବାନ ମତେ ଓ ମୋର ଶିଶୁକୁ ଯେ ଏପରି ଦୟା କଲେ, ଏହା ଭାବି ମୁଁ ଆନନ୍ଦରେ ବିହ୍ୱଳ ହୋଇଗଲି । ବର୍ତ୍ତମାନ ସେ ସୁନ୍ଦର ହୋଇ ବଢିଗଲାଣି ଓ ମୁଁ ତାକୁ ନେଇ ଗର୍ବ କରେ । ବର୍ତ୍ତମାନ ମୁଁ ତାକୁ ଅନେକ ଗତକଥା ସବୁ ମନେପକେଇଲେ ଓ ଏକାଏକା କିପରି ତାକୁ ବଢେଇ ଆଣିଲି ଭାବିଲେ ମୋର ହୃଦୟ ଈଶ୍ୱରଙ୍କ ପ୍ରତି କୃତଜ୍ଞତାରେ ଭରିଉଠେ । ଗୋଟିଏ ବାଳିକା ଯୌବନର ଭ୍ରମ ପାଇଁ ସାମାନ୍ୟତମ ସୁଖ ଓ ସୁବିଧାରୁ ବଂଚିତ ହୋଇଥିଲା - ଦୟାମୟ ଈଶ୍ୱର ତାକୁ ସାହାଯ୍ୟର ଉପଯୁକ୍ତ ବିବେଚନା କଲେ ।

ବର୍ତ୍ତମାନ ଖ୍ରୀଷ୍ଟମାସ ଛୁଟି । ୨୧ଦିନ । ଜାନୁୟାରୀ ୧୩ ତାରିଖ କଲେଜ ଖୋଲିବ । College Union ବା Common Room ଖୋଲା ଅଛି । ମୁଁ ଓ ଆଉ କେତେକ ସେଇଠିକି ଆସି ପଢାପଢି କରୁଛୁ । ଭାଇ Edinburg ଯାଇଛି ଓ ସେଠୁ Glasgow (ଗ୍ଲାସଗୋ) ଯିବ । ଆର ମାସ ପ୍ରଥମ ସପ୍ତାହରେ ଫେରିବ । ରାମର ପରୀକ୍ଷା ଖବର ଶୁଣି ଭାରି ଖୁସି ହେଲି । ଗୋଟେ ବୃତ୍ତିଟା କେମିତି ପାଇଯାନ୍ତା କି । ଧନରେ, ମୋର ଅଶେଷ ସ୍ନେହ ନେବୁ । ତତେ ଏବେ ପ୍ରାୟ ପ୍ରତିଦିନ ରାତିରେ ସ୍ୱପ୍ନ ଦେଖୁଛି । କାର୍ଡ ଚିଠି ବରାବର ଦେ ।

।ଇତି।

ତୋର ପ୍ରାଣର ପ୍ରିୟ

●

**ଉଣେଇଶି**

## ପ୍ରେତ-ମିଳନକୁ ଯାଉଥିଲି

Students' Union
King's College, Newcastle on Tyne
England.
05.01.1938

ପ୍ରାଣର ଲକ୍ଷ୍ମୀ,

ଦେଖୁ ଦେଖୁ ୬ ମାସ ଚାଲିଗଲା । ଲଲାଟେନ୍ଦୁକୁ ୬ମାସ ହେଇଯିବଣି । ମତେ ପୁଣି ଆଉ ୩-୬ମାସ ବା ଦେଢ଼ ବର୍ଷ କଟେଇବାକୁ ପଡିବ । ଦୁର୍ଗାମାଧବ ତ ଏଇ ମେ'ରେ ଚାଲିଯିବେ । ମୁଁ ଆରବର୍ଷ, ୧୯୩୯ ମେ'ରେ ଯିବି । କିନ୍ତୁ ଇ ଭିତରେ କେତେ ଟଙ୍କା ଦରକାର ହେବ ଜାଣିଛ ? ଭାଇର ଯିବାଖର୍ଚ୍ଚ ପ୍ରାୟ ୩୦ ପାଉଣ୍ଡ, ଏଠାରେ ଆଉ ଦୁଇମାସର ଖର୍ଚ୍ଚ ପ୍ରାୟ ୧୫ ପାଉଣ୍ଡ, ମୋର ଛୁଟି ୪ମାସ ଓ ତା'ପର ଖର୍ଚ୍ଚ ମିଶି ପ୍ରାୟ ୫୦ ପାଉଣ୍ଡ -

ଏହିପରି ପ୍ରାୟ ୧୦୦ ପାଉଣ୍ଡ ବା ୧୩୦୦ ଟଙ୍କା ଖଣ୍ଡେ ପଡ଼ିବ । କୁଆଡ଼ୁ ଟଙ୍କା ଆସିବ, ମୁଁ ଥଳକୂଳ ପାଉନି । ଭାଇ ଛୁଟିରେ ଏତିନବରା ଯାଇଛି, ଏ ପର୍ଯ୍ୟନ୍ତ ଆସିନି । ଆଗାମୀ ୯ରେ ଆସିବ ।

ଇତିମଧ୍ୟରେ ମୁଁ ଗୋଟିଏ ପ୍ରେତ-ମିଳନକୁ ଯାଇଥିଲି । କେତେଜଣ ଲୋକ ମିଶି ଗୋଟେ ଘରେ ପ୍ରାର୍ଥନାଦି କରନ୍ତି ଓ ସେସବୁ ସରିଲେ ପ୍ରେତ ସବୁ ଆସି ସେମାନଙ୍କ ଭିତରୁ କାହାକୁ କାହାକୁ ଦେଖାଦିଅନ୍ତି ଓ କଥା କହନ୍ତି । ମୁଁ ଘଟଣା କ'ଣ ଦେଖିବାକୁ ଯାଇଥିଲି । ଜଣେ କହିଲା ଯେ, ଦୁଇଜଣ ଭାରତୀୟ ପ୍ରେତ, ଜଣେ ପୁରୁଷ, ଜଣେ ସ୍ତ୍ରୀ, ତାକୁ ଆସି ଦେଖାଦେଲେ ଓ ମୋ ପାଇଁ ଏହି ସଂବାଦ ଦେଇଗଲେ, ମୋର ଯେଉଁ ଉଦ୍ଦେଶ୍ୟ ଅଛି ତାହା ସିଦ୍ଧ ହେବ, କିନ୍ତୁ ସେଥିପାଇଁ କଠିନ ପରିଶ୍ରମ କରିବାକୁ ପଡ଼ିବ । ଭଗବାନ ମତେ ରକ୍ଷା କରନ୍ତୁ । ମୁଁ ଏ ସବୁରେ ବିଶ୍ୱାସ କରୁନି । କିନ୍ତୁ ଆଗାମୀବର୍ଷ ମୋର ଖରାପ ସମୟ - ଜାତକରେ ବି ଅଛି । 'ମୁଁ ଜାଣେନା ଏଇ ଦୂରପ୍ରବାସରେ ମୋତେ କ'ଣ ଭୋଗିବାକୁ ପଡ଼ିବ । ବିଶେଷରେ ଆର୍ଥିକ ଜଂଜାଳ ଲାଗି ମତେ କଷ୍ଟ ପାଇବାକୁ ହେବ ବୋଧହୁଏ ।

ଏହି ସପ୍ତାହରେ ଚିନ୍ତାମଣି ମିଶ୍ରଙ୍କ ନିକଟରୁ ଖଣ୍ଡେ ଚିଠି ପାଇଛି । ସେ ଲେଖିଛନ୍ତି ଯେ ସେ ମତେ ଆଗରୁ ଚିଠି ଦେଇଥିଲେ । କିନ୍ତୁ ମୁଁ ତା ପାଇନି । ପ୍ରାୟ ଛପା ସରିଲାଣି । ଆଜି ତାଙ୍କ ପାଖକୁ ଖଣ୍ଡେ ପତ୍ର ଦେଉଛି । ମୋର ଭ୍ରମଣକୁ ନବଭାରତରେ ପ୍ରକାଶିତ ହେବା ପାଇଁ ଲେଖିବା ଆରମ୍ଭ କରିବି ।

ହେମବାବୁ ମଧ୍ୟ ଚିଠି ଦେଇଥିଲେ । ସେ ବିଲାତ ସମ୍ବନ୍ଧରେ ଅନେକ କଥା ଜାଣିବାକୁ ପ୍ରଶ୍ନ ପଚାରିଛନ୍ତି । ସେଥିରୁ ଜଣାପଡୁଛି ସେ ଆସିବେ ବୋଧହୁଏ । ଭ୍ରମଣ କାହାଣୀ ତ ଲେଖିବି । ତେଣୁ ଏ ଦେଶର କଥା ଲେଖି ତମ ଚିଠି ଭର୍ତ୍ତି କରିବିନି । ଚିଠି ତ ବରାବର ଦେବ, ବ୍ୟୋମଡାକରେ ନ ଦେଇ ସମୁଦ୍ରଡାକରେ ଦେଲେ ହେଲା । ଖର୍ଚ୍ଚ ବି କମିବ । କିନ୍ତୁ ପ୍ରତି ସପ୍ତାହରେ ଘରର ଖବର ଇତ୍ୟାଦି ଲେଖି ବରାବର ଲେଖୁଥିବ । ସମୁଦ୍ରଡାକରେ ଖଣ୍ଡେ କାର୍ଡ ଲେଖି ପକାଅ ପଛେ, ବରାବର ପ୍ରତି ସପ୍ତାହରେ ଲେଖ । ଗୋଟେ ସପ୍ତାହରେ ଖବର ନ ପାଇଲେ, ମନ ସ୍ଥିର ରହେନା - ଏ କଥାଟା ମନେ ରଖିଥିବ ।

ଭାରି ଶୀତ ଏଠି ବର୍ତ୍ତମାନ । ବାହାରକୁ ବାହାରି ହେଉନି । ଭୟଙ୍କର ଥଣ୍ଡାପବନ ବହୁଛି । ଦୁଇଦିନ ହେଲା ଝିପିଝିପି ବର୍ଷା ହେଉଥିଲା, ଆଜି ଆକାଶ ପରିଷ୍କାର ଅଛି । ସୂର୍ଯ୍ୟ ଅନେକ ଦିନ ପରେ ଦେଖା ଦେଇଥିଲେ ।

ଇତି ମଧ୍ୟରେ ମୁଁ ଘର ପରିବର୍ତ୍ତନ କରୁଛି । ଏଇ ଶନିବାର ବା ସୋମବାର ଆଉ ଗୋଟେ ଘରକୁ ଯିବି ଓ cookerରେ ରଂଧା ଆରମ୍ଭ କରିବି । ଭାଇ ସେଇଠି ରହିବ କି ମୋ ସାଥିରେ ରହିବ, ସେ ଆସିଲେ ଠିକ୍ ହେବ । ଚିଠି କିନ୍ତୁ ସେଇ ଠିକଣାରେ ଦେବ ।

ମୋର ଅଶେଷ ସ୍ନେହ ଗ୍ରହଣ କରିବ । ଏଠାରେ କ୍ରିସ୍‌ମାସ ଓ ନବବର୍ଷରେ ଲୋକେ ମଉଜ କରନ୍ତି । ମୁଁ ବଡ଼ ଏକା ଏକା ହେଇ କଟେଇଲି - ଓଃ ! ଭାରି କଷ୍ଟରେ କାଳ

କଟିଲା ମୋର, କିନ୍ତୁ ନବବର୍ଷରେ ଜଣେ ବଂଧୁ ଘରକୁ ଯାଇ ମୋର କ'ଣ ଅନୁଭୂତି ହେଲା ତାହା ଭ୍ରମଣ ବୃତ୍ତାନ୍ତରେ ଲେଖିବି ।

ଆଉରି ଦେଢ଼ ବର୍ଷ କାଳ କିପରି କଟିବ - ମୁଁ ପୁଣି ତୁମକୁ ସବୁ ଦେଖିବି । ଓଃ ! କେବେ ସେ ଦିନ ଆସିବ ? ମୋର ଗଭୀର ସ୍ନେହ ନେ'ରେ ଧନ- ମୋର ସବୁ ନେ - ମତେ ନେଇଯା ।

ଚିଠି ଶୀଘ୍ର ଦେ -

।ଇତି।
ତୋର ପ୍ରିୟ

●

**କୋଡ଼ିଏ**

# ପ୍ରଥମ ରାତ୍ରି ପରି ଉଦ୍‌ବିଗ୍ନ

Students' Union
King's College
Newcastle on Tyne
11.01.38

ପ୍ରାଣର ଲକ୍ଷ୍ମୀ,

ତମର ଜାନୁୟାରୀ ୩ ତାରିଖର ଚିଠି ପାଇଲି । ତମର-ମୋର ସମ୍ବନ୍ଧ କଥା ଯେଉଁଥିରେ ଲେଖିଥାଅ, ସେ ଚିଠି ପଢୁ ପଢୁ ମୁଁ ଗଳଦଶ୍ରୁ ହୋଇପଡେ । ଏ ଚିଠିରେ ତାହାର ଉଲ୍ଲେଖ ଅଛି । ତେଣୁ ମୁଁ ଅନ୍ୟମାନଙ୍କ ଉପସ୍ଥିତିରେ ପଢୁଥିଲେ ମଧ ମୋର ଆଖି ଛଳଛଳ ହୋଇ ଆସିଲା - ମୁଁ ଆପଣାକୁ ସମ୍ବରଣ କରିନେଲି । କେହି ନ ଥିଲେ, ଅଜସ୍ର ଅଶ୍ରୁଧାରା ଶୁଖିବାକୁ ବହୁତ ସମୟ ନେଇଥାନ୍ତା ।

ମୁଁ ଲାଲୁ ସମ୍ବନ୍ଧରେ ଆକ୍ଷେପ କରିଛି - ବଡ ଅପରାଧ, ବଡ ପାପ ବାସ୍ତବିକ - କିନ୍ତୁ ତମର ସ୍ନେହ ଦାବି କରିବାକୁ ମୁଁ କୌଣସି ପ୍ରକାର ପାପ ବା ଅପମାନକୁ ମାନିନି । ଲାଲୁ ଯଦି ଭଲପିଲା ହୁଏ ଓ ପ୍ରତିଭାର ଅଧିକାରୀ ହୁଏ, ତେବେ ତା'ର ପରିବର୍ଦ୍ଧନ ପାଇଁ ମୋର ରକ୍ତମାଂସ ମୁଁ ଦେବି । ବିଧାତା ମୋ ନିକଟକୁ ତାକୁ ପଠାଇଛନ୍ତି, ମୋ ଦ୍ୱାରା ତା'ର ରକ୍ଷଣାବେକ୍ଷଣ ହେବ ବୋଲି । ମୁଁ ତାହା କରିବି । କିନ୍ତୁ ତା'ବୋଲି ତମେ କାହିଁକି ମତେ ପଚାରିବନି ? ତମେ ଯେତେଦିନ ମୋ ହୃଦୟରେ ଅଛ, ଲାଲୁ ପ୍ରତି ସେତେଦିନ ଯାଏ ମୋର ହୃଦୟ ବିଶେଷ ଭାବରେ ସ୍ନେହଶୀଳ ରହିବ । ଲାଲୁ ତ ଆମର ପରସ୍ପରକୁ ଅଧିକ ସ୍ନେହ କରିବାର ଏକ ଅଧିକା କାରଣ । ମୁଁ ଆଶଙ୍କା କରିଥିଲି - ମୋର ଆଶଙ୍କା ଅବଶ୍ୟ ସାଧାରଣ ବିଶ୍ୱାସ ଉପରେ ପ୍ରତିଷ୍ଠିତ - ଯେ ତମେ ମା' ହେଇ ପ୍ରିୟକୁ ଭୁଲି ଯାଉଛ । ମୁଁ ଭାଗ୍ୟବାନ ଯେ ମୋର ସେ ଆଶଙ୍କା ଭୁଲ୍ । ତମେ ମୋର ସେଇ ପ୍ରଥମ ବିବାହ

ଦିବସଗୁଡିକର ସେହି ଚିର ମିଳନ-ପ୍ରତୀକ୍ଷମାଣା ପ୍ରେମମୟୀ ହେମ ଅଛ । ପ୍ରେମିକ-ପ୍ରେମିକାର ସମସ୍ତ ସ୍ୱପ୍ନ ଆମ ଜୀବନରେ ଭୋଗ ହେଇଥିଲେ ମଧ୍ୟ, ପରସ୍ପରର ଦେହ ଓ ମନ ପରସ୍ପର ଚିପୁଡି ପିଇ ସାରି ମଧ୍ୟ, ଦୀର୍ଘ ଓ ଅନବଚ୍ଛିନ୍ନ ପ୍ରଣୟ-ପିହିତ କାଳଯାପନ କରି ମଧ୍ୟ, ଆଜି ଯେ ଆମେ ସେହି ପ୍ରଥମ ରାତ୍ରି ପରି ସେହିପରି ପରସ୍ପର ପାଇଁ ଉଦ୍‌ବିଗ୍ନ ହେଇ ଚାହିଁ ରହିଛେ ଓ ଆଜି ଯଦି ମିଳନ ଲାଗି ଅବସର ଘଟେ ତେବେ ତମେ ଯେ ସେହି ପ୍ରଥମରାତ୍ରିର ନବବଧୂ ପରି ନିଶ୍ଚୟ-ଦ୍ୱନ୍ଦ୍ୱ-ଜଡିତ ପଦରେ ସ୍ନେହ-ଶଂକା-କ୍ଷୁବ୍ଧ ହୃଦୟରେ ମୋ ପାଖକୁ ଆସି ମଧ୍ୟ ମୋର ଆଲିଙ୍ଗନକୁ ଅପେକ୍ଷା କରି ଠିଆ ରହିବ - ହେ ପ୍ରଣୟିନୀ, ତାହା ଆମ୍ଭମାନଙ୍କର ଭାଗ୍ୟ ଓ ତମର ଜୟ ପତାକା । ଏ ଦେଶରେ ପ୍ରକୃତ ପ୍ରଣୟକୁ ସ୍ୱପ୍ନ, ମାୟା, ମିଥ୍ୟା ବୋଲି ଭାବନ୍ତି - ମନେ କରନ୍ତି ତାହା କେବଳ କେତୋଟି ମୁହୂର୍ତ୍ତର ଉନ୍ମାଦନା, ଯାହା ଆସେ କେବଳ ଯିବା ପାଇଁ ଓ ପଛରେ ରଖିଦେଇଯାଏ କେବଳ ଗୋଟାଏ ଆସଂଗଲିପ୍ସା, ଯାହାକୁ କି ଲୋକେ ଭୁଲ୍‌ରେ ପ୍ରେମ କରନ୍ତି । ବିବାହିତ ଜୀବନର ପ୍ରେମ କେବଳ ଏହି ଅାସଗଲିପ୍ସା - ପାଖରେ ଜଣେ ଲୋକ ରହିବାର ଇଚ୍ଛା । ଅଧିକାଂଶ ବିବାହରେ ପ୍ରେମ ଶେଷରେ ଏହିଥିକି ଆସେ ମଧ୍ୟ । ତମର ମୋର ମନୋମାଳିନ୍ୟ ହେଲେ, ଘରର ଜଂଜାଳ ଓ ଅଭାବ ଭିତରେ ମୁଁ ଯେତେବେଳେ ମଜ୍ଜି ହୋଇଯାଇଛି, ମତେ ଜଗତ ପିତା ଲାଗିଛି, ଜୀବନ ବ୍ୟର୍ଥ ବୋଧ ହେଉଛି - ତମେ ମଧ୍ୟ ତିକ୍ତ ହେଇଛ । କିନ୍ତୁ ଘରର ଜଞ୍ଜାଳରୁ ମୁଁ ଯେତେବେଳେ ଟିକିଏ ଦୂର ହୋଇଯାଏ, ମୋର ଅନ୍ତରାତ୍ମା କାହିଁକି ଯେ ଏପରି ବିରହପୀଡିତ, ନିରାଶ୍ରୟ ଉନ୍ମନା ଉଦ୍‌ବିଗ୍ନ ହୋଇ ତମରି ଆଡକୁ ପୁଣି ଭିଡି ହୁଏ, ମୁଁ ଜାଣେନା । ତମେ ଜାଣ ? କହତ ଭଲା ଉତ୍ତର ?

ଜଣେ ପାର୍ଲାମେଣ୍ଟ ମେମ୍ବର ଏବେ ଇସ୍ତଫା ଦେବେ ବୋଲି ଜଣାଇଛନ୍ତି । କାରଣ କ'ଣ ଜାଣ ? ତାଙ୍କର ପୁଅ ବଡ ହେଇଗଲାଣି - ଇସ୍କୁଲକୁ ଯିବ, କିନ୍ତୁ ତାକୁ ଦେଖାଦେଖି କରିବାକୁ କେହି ନାହିଁ । ଏଣେ ପାର୍ଲାମେଣ୍ଟ କାମ କଲେ, ପୁଅର ଭବିଷ୍ୟତ ନଷ୍ଟ ହେବ - ତେଣୁ ସେ ମେମ୍ବର ପଦର ଦାୟିତ୍ୱ ଆଉ ମୁଣ୍ଡେଇବେନି - ବାପ-ପଦର ଦାୟିତ୍ୱ ତାଙ୍କୁ ମୁଣ୍ଡେଇବାକୁ ହେବ । ଏଇଥିରୁ ତମେ ଅନୁମାନ କରିବ, ଏ ଦେଶରେ ପିଲାଙ୍କୁ ମଣିଷ କରିବାକୁ ଏମାନେ କ'ଣ ନ କରନ୍ତି । ଏଥିରେ ଜାତି ଗଢା ନହେବ କାହିଁକି ? ଆଜିର ପିଲାଏ ତ କାଲିର ଜାତି - ଆଜିର ପିଲା ଯେମିତି ମନିଷ ହେବେ, କାଲିର ଜାତି ସେମିତିକା ଜାତି ହେବ । ଏହି ମନିଷ କରିବାର ଚିନ୍ତା ଯୋଗୁଁ ଅନେକ ବାପ-ମା' ନିଃସନ୍ତାନ ରହୁଛନ୍ତି ପଛେ, ପିଲା କରୁନାହାନ୍ତି । ମୁଁ ଅନେକ ପତି-ପତ୍ନୀ ଏଠି ଦେଖିଲିଣି, ସେମାନଙ୍କର ପିଲା ନାହିଁ -ପଚାରିଲେ କହିବେ, ଆମେ ଦରକାର କରୁନା - ନହେଲେ କହିବେ, ତୋପର ଖାଦ୍ୟ ହେବାକୁ ପିଲା ଜନ୍ମ କରିବୁ ? ଅବଶ୍ୟ ଏହି ଜନ୍ମ-ନିରୋଧ ପାଇଁ ଏ ଦେଶରେ କେହି ବ୍ରହ୍ମଚର୍ଯ୍ୟ ପାଳନ କରନ୍ତିନି । ବ୍ରହ୍ମଚର୍ଯ୍ୟର ଧାରଣା ଏମାନଙ୍କର ନାହିଁ । ସାଧାରଣତଃ ବିବାହିତ ପୁରୁଷ-ସ୍ତ୍ରୀ ଜନ୍ମ-ନିରୋଧ ଲାଗି ନବାବିଷ୍କୃତ ଯନ୍ତ୍ରସବୁ ବ୍ୟବହାର କରନ୍ତି ।

ଗାନ୍ଧିଜୀ ଏ ସବୁର ଭୟଙ୍କର ଶତ୍ରୁ । କିନ୍ତୁ ମୁଁ ଏଥିରେ କୌଣସି ଅନ୍ୟାୟ ଦେଖୁନି । ବ୍ରହ୍ମଚର୍ଯ୍ୟ ଅତ୍ୟନ୍ତ କାମ୍ୟ ସାଧନା । କିନ୍ତୁ ଯେଉଁ ସାଧନାର ପଥ ମହାଯୋଗୀ ପାର ହୋଇପାରିନାହାନ୍ତି, ସାଧାରଣ ନରନାରୀ ପକ୍ଷରେ ତାହା କିପରି ସମ୍ଭବ, ଗାନ୍ଧି ବୁଝୁନାହାନ୍ତି । ଦୈହିକ ମିଳନ ଯେ ମାନବିକ ପ୍ରେମାନୁଭୂତିର ସୁଖ-ସମାପ୍ତି ତାହା ତ କାବ୍ୟ କବିତାରେ ଜଗତର ଶ୍ରେଷ୍ଠ କବିମାନଙ୍କ ଦ୍ୱାରା ପ୍ରଚାରିତ ହୋଇଛି । କିନ୍ତୁ ଜଗତର ସକଳ ସୁଖ ଭିତରେ ଦୁଃଖର ମଞ୍ଜି ନିହିତ ଥିଲା ପରି, ଏହି ମଧୁର ମିଳନ ଭିତରେ ବିଧାତା ବଂଶବୃଦ୍ଧିର ଦାୟିତ୍ୱକୁ ଲୁଚାଇ ରଖିଛି । ଆଜିକାଲିର ଜଗତରେ ଏହି ବଂଶବୃଦ୍ଧି ଏକ ବିରାଟ ଦାୟିତ୍ୱ । ପିଲା ଜନ୍ମ ହେଲାଠୁ ଅଜସ୍ର ଭାବରେ ଅର୍ଥବ୍ୟୟ ଦରକାର- ତାକୁ ମନିଷ କରିବାକୁ । ମନିଷ କରିସାରିଲା ପରେ ଦେଖିବ ଯେ ସେ ବେକାର । ଜଣେ ପିତାର ଯଦି ଏହିପରି ୪/୫ଟି ପିଲା ହୁଅନ୍ତି, ତା'ର ଜୀବନର ଦୁଃଖ ଅନୁମେୟ । ଆମ ଦେଶ ଅପେକ୍ଷା ଏ ଦେଶରେ ବିପଦ ଅଧିକତର ତୀବ୍ର ଓ ଭୟଙ୍କର । କାରଣ ଏଠି ବଂଚିବା, ଆମ ଦେଶର ବଂଚିବା ଅପେକ୍ଷା ବହୁଗୁଣ ବ୍ୟୟସାଧ୍ୟ । ଏଥିରେ ଦମ୍ପତିମାନେ ଯଦି ଜନ୍ମ-ନିରୋଧଦ୍ୱାରା ବଂଶ କ୍ଷୀଣ କରିବାକୁ ବସନ୍ତି, ମୁଁ ତ କିଛି ଅନ୍ୟାୟ ଦେଖୁନି । ବର୍ତ୍ତମାନ ଏମାନଙ୍କର ଜନ୍ମସଂଖ୍ୟା ଭୟଙ୍କର ଭାବରେ କମୁଛି - ଦେଶରେ ଚାରିଆଡେ ଆନ୍ଦୋଳନ - ଇସ୍କୁଲ ମାନଙ୍କରୁ ପିଲା କମି ଯାଉଛନ୍ତି । ଭାରତବର୍ଷରେ ଏହାର ଠିକ୍ ଓଲଟା । ସେଠି ଜନ୍ମସଂଖ୍ୟା ଏତେ ବଢୁଛି ଯେ, ଆଉ କେତେ ବର୍ଷରେ ଭୟଙ୍କର ଖାଦ୍ୟାଭାବ ଘଟିବ । ଦୂର କଥା ଛାଡ, ବର୍ତ୍ତମାନ ମଧ କେତେଟା ପିଲା ଭଲ ଖାଇବାକୁ ପାନ୍ତି ? ଅବାଧ-ଜନନ ଫଳରେ ଆମ ପରି ଦୁରାହାର ଓ ରୋଗକ୍ଲିଷ୍ଟ ପିଲା ପଲ ସୃଷ୍ଟି କରି ଦେଶରେ ଖାଦ୍ୟାଭାବ ଘଟେଇବା ଅପେକ୍ଷା, ନିରୁଦ୍ଧ-ଜନନ ଫଳରେ ଅଳ୍ପପିଲା ଜନ୍ମ କରି ସେମାନଙ୍କୁ ମନିଷ ପରି ବଂଚିବାର ସୁବିଧା ଦେବା ଅଧିକ ଶ୍ରେୟସ୍କର ।

ମୁଁ ଚର୍ଚ୍ଚକୁ ବରାବର ଯାଏ । ଅନେକ ଭଲ ମନିଷ ଦେଖିବାକୁ ମିଳନ୍ତି । ଗତ ଶୁକ୍ରବାର ଚର୍ଚ୍ଚ-ସଂପର୍କୀୟ ଗୋଟିଏ ନୀତି-ସଭାକୁ ଯାଇଥିଲି । ପାଦ୍ରୀ 'ଆତ୍ମ-ଜ୍ଞାନ' ସମ୍ବନ୍ଧରେ ଚମତ୍କାର ବକ୍ତୃତାଟିଏ ଦେଲେ । ଅନେକ ପୁରୁଷ-ସ୍ତ୍ରୀ ସହିତ କଥା ହେଲା । ଏସବୁକୁ ଯୋଗଦେବାରେ ଉଭୟ ଆଡୁ ଲାଭ । ମୁଁ ସେମାନଙ୍କୁ ଜାଣୁଛି । ସେମାନେ ମୋ ଦେଇ ଭାରତବର୍ଷର କଥା ଜାଣୁଛନ୍ତି । ଜାନୁୟାରୀ ୨୩ ରବିବାର ଦିନ, ମୁଁ ଏହିପରି ଏକ ଚର୍ଚ୍ଚ-ସଂପର୍କିତ ଗୋଟିଏ ଛୋଟ ସଭାରେ 'ଭାରତରେ ଖ୍ରୀଷ୍ଟଧର୍ମ' ସମ୍ବନ୍ଧରେ କିଛି କହିବା ପାଇଁ ଅନୁରୁଦ୍ଧ ହେଇଛି । କିଛିଦିନ ତଳେ ଯେଉଁ ପାଦ୍ରୀ 'ଆତ୍ମ ଜ୍ଞାନ' ବିଷୟରେ ବକ୍ତୃତା ଦେଇଥିଲେ, ତାଙ୍କ ଘରକୁ ମତେ ସେ ନିମନ୍ତ୍ରଣ କରିଥିଲେ ।

ଏ ଦେଶରେ ଭାରତବର୍ଷ ସମ୍ବନ୍ଧରେ ଜ୍ଞାନ ଅବଶ୍ୟ କମ୍ । କିନ୍ତୁ ଭାରତବର୍ଷ ସମ୍ବନ୍ଧରେ ଏଠାର ଖବରକାଗଜରେ କିଛି ହେଲେ ବାହାରେନି-ଲୋକେ ଜାଣିବେ କୁଆଡୁ ? ଅବଶ୍ୟ ପାଟିଆଲା, ଆଗା ଖାଁ ପ୍ରଭୃତିଙ୍କ କଥା ବାହାରେ - ଲୋକେ ତାଙ୍କ କଥା ବେଶ୍

ଜାଣନ୍ତି । ଗାନ୍ଧିଙ୍କ ସମ୍ବନ୍ଧରେ ଲୋକସାଧାରଣଙ୍କର ବଡ ଅପରିପକ୍ୱ ଧାରଣା - ଖବରକାଗଜରେ ତାଙ୍କ କଥା ବେଶୀ ବାହାରେନା । କିନ୍ତୁ ଯେତିକି ବାହାରେ ଖବରକାଗଜରେ, ଲୋକେ ସେତକ ଜାଣନ୍ତି । ଭାରତବର୍ଷରେ New-Constitution ବା ନୂତନ ଶାସନ ବିଷୟରେ ପାଦ୍ରୀଠୁ ଆରମ୍ଭ କରି ଆମର ହୋଟେଲବାଲା ପର୍ଯ୍ୟନ୍ତ ମୋ ସଂଗରେ କଥା ହେଇଛନ୍ତି । ହୋଟେଲବାଲା କହେ ଯେ, ଭାରତବର୍ଷକୁ ସ୍ୱାଧୀନତା ଦେଲେ ସେଠାର ଲୋକେ ନିଜ ନିଜ ଭିତରେ ବାଡିଆପିଟା ହୋଇ ମରିଯିବେ, ଓ ତା'ର ଜାତି ଭାରତବର୍ଷକୁ ଧୀରେଧୀରେ ସ୍ୱାଧୀନତା ଦେବ । ମୁଁ ମୋ ଜୀବନକାଳରେ ଭାରତବର୍ଷର କୌଣସି ହୋଟେଲବାଲା ସହିତ ଏହିପରି କଥା ହେଇପାରିଲେ ସୁଖରେ ମରନ୍ତି । ସେ ହୋଟେଲବାଲା ପୃଥିବୀର ସବୁ ଅଞ୍ଚଳ ବୁଲି ଆସିଛି - ତା'ର ଶ୍ୱଶୁର ମଧ୍ୟ । ଓଡିଶା ପରି ଦେଶରେ ଏପରି ଗୋଟାଏ ଲୋକ ଗଣ୍ୟମାନ୍ୟ ହୁଅନ୍ତା - କିନ୍ତୁ ଏ ଦେଶରେ ଏମିତି ଲୋକ ଗଣ୍ଡାଗଣ୍ଡା - ଇଂରେଜର ସମଗ୍ର ପୃଥିବୀ ଘର । ଆମେ ସିନା ଅଜ୍ଞାତ ଭାବରେ ପୃଥିବୀର କେଉଁ ଅଜ୍ଞାତ କୋଣରେ ପଡି ରହିଛୁ - ଆମକୁ ଆମ ଦେଶ ଆରପଟେ କେହି ଜାଣନ୍ତିନି । ଓଃ କି ପ୍ରଭେଦ ! କି ପତନ ! କେବେ କିପରି ବା ଆମେ ଉଠିବା ?

ଭାଇ ଆସିଲାଣି । ସେ ଅନ୍ୟ ଏକ ବସାରେ ଉଠିଛି । ମୁଁ ଏଇ ଶନିବାର ତା' ସଂଗେ ମିଶିବି । ସେଠି ଖୁବ୍ ଶସ୍ତାରେ ଚଳିବୁ । ମୋର ସବୁ ଭଲ । ଦିନେ ଯାଇ ଛ'ଣି କା ଫଟୋ ନେଇଥିଲି - ଛ'ଣା ରେ ଭଲ ହେବ କୁଆଡୁ ? ତେବେ ଗୋଟେ ପଠେଇ ଦେଲି । ମୁଁ ଏଠିକି ଆସି ନିଶ କାଟି ଦେଇଛି - ନିଶ ରଖିବା ଏଠାରେ ଆଧୁନିକ ଫାଶନ୍ ନୁହେଁ । ପରେ ଭଲ ଫଟୋ ପଠାଇବି ।

ପ୍ରାଣର ଲକ୍ଷ୍ମୀରେ, ଭୟଙ୍କର ମନେପଡୁ - ତତେ ଆଖିରେ ଦେଖିବା ପାଇଁ ମୋର ସହସ୍ର ମନଶ୍ଚକ୍ଷୁ ଉତ୍ପ୍ଲକ୍ଷୁ ହୋଇ ରହିଛନ୍ତି, ତତେ ପୁଣି ଆଲିଙ୍ଗନ କରିବା ପାଇଁ ମୋର ସକଳ ଶୋଣିତ କଂପିତ ହେଉଛି । ଶୀଘ୍ର ଚିଠି ଦେ- କେବେ କେବେ ବଡ ଚିଠି ନ ଦେଲେ ବିରକ୍ତ ହେବୁନି - ତୁ ଭଲ କରି ଲେଖିବୁ ।

।ଇତି।
ପ୍ରିୟ

ପ୍ରାଣର ଲକ୍ଷ୍ମୀ,

ତୁ ନବଭାରତ ପଠାଇବୁନି - ମୁଁ ନବଭାରତ ଅଫିସକୁ ସେଥିପାଇଁ ଲେଖିଛି ।

କିନ୍ତୁ ମୋର ବହିପତ୍ର ଖୋଜି, କାଳିଦାସ ଗ୍ରନ୍ଥାବଳୀ (ପ୍ରଥମ ଓ ଦ୍ୱିତୀୟ ଖଣ୍ଡ) ମୋ ପାଖକୁ ଶୀଘ୍ର ପଠା । ମୋର ପଢାରେ ସେ ବହି ଦରକାର ହେଉଛି । ନିଶ୍ଚେ ପଠା ।

।ଇତି।
ତୋର ପ୍ରିୟ

ପାଗ୍‌ଲିରେ,

ମୋ ଚିଠି ପାଇଲା ସଂଗେ ସଂଗେ ଉତ୍ତର ଦେବୁ । ସମୁଦ୍ର ଡାକରେ ଚିଠି ପ୍ରାୟ ୩ ସପ୍ତାହ ଲାଗେ ଯିବାକୁ । ତେଣୁ ଥରେ ହୁଡିଲେ ବହୁଦିନ ଅପେକ୍ଷା କରିବାକୁ ପଡିବ - ପ୍ରତି ସପ୍ତାହରେ ନିଶ୍ଚେ ଚିଠି ଦେବୁ ।



## ଏକୋଇଶି

# ମୁଁ ବର୍ତ୍ତମାନ ସଂପୂର୍ଣ୍ଣ ତୋହରି

Students's Union
King's College
Newcastle on tyne
England

ପ୍ରାଣର ଲକ୍ଷ୍ମୀ,

19 Jan, 38

ତୋର ଓ ରାମର ଚିଠି ଆଜି ପାଇଲୁ । ଅନେକ ଦିନ ଚିଠି ନପାଇ ମୁଁ ବ୍ୟସ୍ତ ହୋଇ ସେଥର ଟେଲିଗ୍ରାମ କରିଦେଇଥିଲି । ପରେ ବଡ ଅନୁତାପ କରିଛି । ମତେ କ୍ଷମା ଦେ । ମୁଁ ତମ ନିକଟରେ ବହୁ ଅପରାଧ କରିଛି, ବାପାଙ୍କ ନିକଟରେ ଅପରାଧ ସଂଖ୍ୟା ତମଠାରୁ ବେଶୀ ଓ ଗୁରୁତର । ସେ ଅପରାଧର ମାର୍ଜନା ବାପା ବଞ୍ଚି ଥାଉଥାଉ ମତେ କରିବାକୁ ହେବ - ମୁଁ ଦେଖିବି ସେ ଶେଷମୁହୂର୍ତ୍ତରେ ଯେପରି ମତେ ଆନନ୍ଦରେ ଆଶୀର୍ବାଦ କରିଯାନ୍ତି । ଆନନ୍ଦର କଥା ଏହି ଯେ, ମୋର ପୂର୍ବର ଭ୍ରମ ସବୁ ମୁଁ ବୁଝିପାରୁଛି ।

ଇତି ମଧ୍ୟରେ ଆମ୍ଭେମାନେ ବସା ପରିବର୍ତ୍ତନ କରି ଦେଇଛୁ । ଗୋଟିଏ ଘରେ ରହିଛୁ ଓ କୁକର୍‌ରେ ରାନ୍ଧୁଛୁ । ଖୁବ୍ କମ୍ ଖର୍ଚ୍ଚରେ ଚଳୁଛୁ - ଅର୍ଥାତ୍ ଏଠାରେ ଜଣଙ୍କର ଖର୍ଚ୍ଚରେ ଦି'ଜଣ ଚଳୁଛୁ । ଭାଇରେ ଆଉ ପାଞ୍ଚମାସ ରହିଲା - ଏଇ ପାଞ୍ଚମାସ କୌଣସି ମତେ ଚଳିଗଲେ ଯାଏ । ପାଞ୍ଚମାସ ପରେ ଦୀର୍ଘ ୪ମାସ ଛୁଟି । ସେଇ ଛୁଟିରେ ମୁଁ ଅନ୍ୟତ୍ର ଯାଇ ପଢିବାର ଇଚ୍ଛା କରିଥିଲି । କିନ୍ତୁ ମୁଁ କହିବାରେ, ମୋର ଅଧ୍ୟାପକ ଲାଇବ୍ରେରିୟାନ୍‌କୁ କହି ମୋ ଲାଗି ଅନେକ ବହି କିଣେଇ ଦେଇଛନ୍ତି । କିଣିବାକୁ ନ ମିଳିଲେ ମଧ୍ୟ, ଯେକୌଣସିଠାରୁ ତାଙ୍କ ଖର୍ଚ୍ଚରେ ସେମାନେ ମତେ ବହି ଆଣି ଦେବେ ବୋଲି କହୁଛନ୍ତି । ତେଣୁ ମୋର ସୁବିଧା ହେଲା - ମୁଁ ଏଇଠି ରହି ପଢାପଢି କରିବି । ଅବଶ୍ୟ ଛୁଟିରେ ଠାଏ ଠାଏ ବୁଲିଆସିବି - ସେକ୍ସପିୟରଙ୍କ ଜନ୍ମସ୍ଥାନ, କବି ୱାର୍ଡ୍‌ସୱାର୍ଥଙ୍କ ଲୀଳାଭୂମି ଓ ଲଣ୍ଡନ ପ୍ରଭୃତି । ସେସବୁ ନ ଦେଖିଲେ ଏଠାକୁ ଆସିବା ବୃଥା ହେଇଯିବ ।

ଆମର ବର୍ତ୍ତମାନ ଲାଣ୍ଡଲେଡିଟି ବଡ ଭଲ ମନିଷ । ସେ ବୟସ୍କା-ଅବିବାହିତା । India କୁ ଯିବ ବୋଲି କହୁଛି । ମୁଁ ତାକୁ କହିଲି ଦିନେ, ତୁମେ ଚାଲ ମୋ ପିଲାର ମାଷ୍ଟ୍ରାଣୀ ହେବ - ତମର ଖାଇବା-ପିଇବା ଖର୍ଚ୍ଚ ମୁଁ ଦେବି । ସେ ହଁ କରିଛି; କିନ୍ତୁ କହୁଛି 'ମୁଁ ପରେ

ଶେଷ ଜବାବ ଦେବି' । ସେ ମାଂସ ଏକାବେଳେକେ ଖାଏନା । ତା'ର ଜଗତରେ ଦୁଇଟି ଭଉଣୀ ଛଡା ଆଉ କେହି ନାହିଁ । ଯିବାଆସିବାର ଭଡା ନିଜ ହାତରୁ ଦେବ । ପ୍ରସ୍ତାବଟା କାର୍ଯ୍ୟରେ ପରିଣତ ହେଲେ ଭଲ ହୁଅନ୍ତା । ତମର ମୋର ଫଟୋ ଦେଖି ପ୍ରୌଢା ତମ ଛବିକି ଚୁମ୍ବନ କରିବାକୁ ଲାଗିଲା । Oh She is lovely ! I would like to see her. ଏହିପରି କହିବାକୁ ଲାଗିଲା । ଭାରି ଭଲ ମନିଷଟିଏ ।

ରାମ ଯଦି ଆସିବ, ତେବେ କ'ଣ ପଢିବାକୁ ଆସିବ ଠିକ୍ କରି ଆସିବା ଉଚିତ । ମୁଁ ଥାଉ ଥାଉ ଆସିଲେ ତା'ର ଅବଶ୍ୟ ସୁବିଧା ହେବ । ମୁଁ ମୋର ଅଧ୍ୟାପକଙ୍କୁ କହିଛି, ମୋର କାମ ମୁଁ ଆଗରୁ ସାରିଦେବି - ମତେ କିମିତି ମାସେ ଦି'ମାସ ଆଗରୁ ମୁକ୍ତି ମିଳିବ, ସେ ଦେଖିବେ ବୋଲି କହିଛନ୍ତି । ତାହା ହେଇଗଲେ ମୁଁ ଆଉ ବର୍ଷେ ୪ମାସ ମାତ୍ର ରହିବି । କାମ ଶୀଘ୍ର ସାରିବା ଲାଗି ମତେ ବଡ଼ ଖଟିବାକୁ ପଡୁଛି ।

ଆଜି ଡାକରେ ନବଭାରତକୁ ମୋର ଭ୍ରମଣ କାହାଣୀର ପ୍ରଥମ ଅଧ୍ୟାୟ ପଠେଇଲି । ସିଂହଳର ୩ଟି ଛବି ଦେଇଛି । ତାଙ୍କର କାମ ସରିଲେ, ଛବିଗୁଡିକ ରାମ ପାଖକୁ ପଠାଇ ଦେବାକୁ ଲେଖିଛି ।

ପ୍ରାଣର ପାଗ୍‌ଲିରେ, ତୁ ମୋ ସମ୍ବନ୍ଧରେ କାହିଁକି ଏଣୁତେଣୁ କହୁଛୁ । ମୁଁ ବର୍ତ୍ତମାନ ସଂପୂର୍ଣ୍ଣ ତୋରି । ଦିନରାତି ତୋରି ସ୍ମୃତିରେ ମୁଁ ବୁଡି ରହିଛି । ଦେଶକୁ ଫେରିଯିବାକୁ ମନ ବ୍ୟାକୁଳ ହେଉଛି । କେବଳ ତୋରି ଲାଗି - ଏଠି ମନ ଲାଗୁନି, କେବଳ ତୁ ନାହୁଁ ବୋଲି । ଏକାଠି ରହିଲେ, ବିଶେଷତଃ ଅର୍ଥାଭାବ ଭିତରେ, କନ୍ଦଳ ଜାତ ହେବାର କଥା । ତା'ଛଡା ଆମେ ଉଭୟେ ଅନଭିଜ୍ଞ - କିପରି ଅନ୍ୟର ମନ ବୁଝି କାମ କରିବାକୁ ହୁଏ ଆମେମାନେ ଜାଣୁନା । ଏ ଅଭିଜ୍ଞତା ଭୁଲ୍ କଲେ ଯାଇ ମିଳେ । ଏହି ଭୁଲ୍ ଯୋଗୁ ହିଁ, ପରେ ସ୍ନେହ ଗାଢ଼ତର ହୁଏ । କାରଣ ଉଭୟେ କ୍ରମେ ଜାଣନ୍ତି ଯେ, ସେମାନଙ୍କର ସୁଖ ପରସ୍ପର ପ୍ରତି ତ୍ୟାଗ କରିବାରେ । ମୋର ପୂର୍ବର ଭ୍ରମ ମୁଁ ଜାଣିପାରୁଛି - ମୁଁ ସେସବୁକୁ କାର୍ଯ୍ୟରେ ଲଗେଇବି ।

ଲଲାଟେନ୍ଦୁର ବାଳଲୀଳା ଦେଖିବାକୁ ମୋର ଭାରି ଇଚ୍ଛା ହେଉଛି । ପିଲାଟା ଯଦି ବୁଦ୍ଧିଆ ନ ହୁଏ ତେବେ ମୋର ସବୁ ସ୍ୱପ୍ନ ମାଟି ହୋଇଯିବ ।

ପ୍ରାଣର ପାଗ୍‌ଲି, ଆ, ମୋର ବାହୁବେଷ୍ଟନୀ ଭିତରକୁ, ତତେ ନିବିଡ ଭାବରେ ଯାକି ଧରେ ଓ ତୋର ମୁଖମଣ୍ଡଳକୁ ଆଘ୍ରାଣ କରେ । ଧର ମତେ ।

ଲଲାଟେନ୍ଦୁ ଓ ବାପାଙ୍କର ସ୍ୱାସ୍ଥ୍ୟ କଥା ଲେଖ୍ । ଆମ ଘରୁ କିଛି ପାଇଥିଲୁ ? ମୋର ବହିରୁ କାଳିଦାସ ଗ୍ରନ୍ଥାବଳୀ ଦୁଇଖଣ୍ଡ ପଠାଇବାକୁ କହିଥିଲି - ପରେ ଲେଖିବି - ସେମାନେ ତ ଆଣି ଦେବେ ବୋଲି କହୁଛନ୍ତି - ଅକାରଣ ଖର୍ଚ୍ଚ କାଇଁ କରିବା ।

।ଇତି ।

ତୋର ପ୍ରିୟ



## ବାଇଶି

# ଲଲାଟେନ୍ଦୁ ଆସିଲା

Students' Union
King's College
Newcastle on Tyne
28.01.38

ପ୍ରାଣର ସଂପଦରେ,

ତୋର ପତ୍ର ପାଇଲି - ଯେଉଁଥିରେ ତୁ ଲକ୍ଷ୍ମୀ ନାମକ ବାଳିକାର ଗପ ଲେଖିଛୁ । ଲକ୍ଷ୍ମୀର ଚିନ୍ତା କରିବାର କିଛି ନାହିଁ । ତା'ର ପ୍ରିୟ ଯଦି କେବେ ଉଦ୍‌ଭ୍ରାନ୍ତ ହୋଇଥାଏ ଓ ଲକ୍ଷ୍ମୀର ସ୍ନେହ ତାକୁ ବାଟକୁ ଆଣିଥାଏ, ତେବେ ଭଲକଥା । ସଂସାରରେ ନାରୀର ଏଇ କାମ । ଜଗତରେ ସ୍ନେହର ଯାଦୁକରୀ ମାୟା ଦେଖାଇବା ଲାଗି ଜନ୍ମ ତା'ର । ନାରୀ ଅତି ଦୁର୍ବଳ; ସେ ବୁଦ୍ଧିମାନ ଜୀବ ନୁହେଁ; ସେ ଅର୍ଜନ କରି ଜଗତକୁ ପୋଷେନା, ସେ ଜଗତର ସଭ୍ୟତାକୁ କିଛି ବିଶିଷ୍ଟ ଦାନ ଦେଇପାରିନି; ତଥାପି ପୁରୁଷ ମା' ରୂପେ, ଭଗିନୀ ରୂପେ, ପ୍ରିୟାରୂପେ, କନ୍ୟାରୂପେ ନାରୀ ନିକଟରେ ନାନା ଭାବରେ ବନ୍ଦୀ - ସେ ବଂଧନରୁ ସେ ମୁକ୍ତ ହେବାକୁ ତ ଚାହେଁନା, ଚାହିଁଲେ ବି ସେ ଯାଇପାରିବନି । ଦୁର୍ଦ୍ଧର୍ଷ ପୁରୁଷ, ନାରୀର କୋମଳ କରପଲ୍ଲବର ସ୍ପର୍ଶରେ ବଶ ମାନେ । ଜଗତର ଶ୍ରେଷ୍ଠ ସାଧକମାନଙ୍କ ନିକଟରେ ନାରୀର ସମ୍ବନ୍ଧ ଛିଣ୍ଡାଇବା ସବୁଠୁ ବଡ ସାଧନା । ଅନେକ ତ ଆଦୌ ପାରି ନାହାନ୍ତି । ସାଧାରଣ ମନୁଷ୍ୟ କଥା - ଅର୍ଥାତ୍ ଲକ୍ଷ୍ମୀର ପ୍ରିୟ କଥା କାହିଁକି ଉଠିବ । ଲକ୍ଷ୍ମୀର ପ୍ରିୟ ଯାହା କରିଛି, ପୁରୁଷ ସେପରି କରିଥାଏ । କାରଣ ପୁରୁଷ ବନ୍ୟଜନ୍ତୁ - ସେ ସହଜରେ ପଞ୍ଜରାରେ ପଡିବାକୁ ମଙ୍ଗେନା । ଲକ୍ଷ୍ମୀ ତା'ର କର୍ତ୍ତବ୍ୟ କରିଯାଉ । ତା'ର କର୍ତ୍ତବ୍ୟ ତା'ର ହୃଦୟର ଅଗାଧ ସ୍ନେହରେ ଓ ଆଖିର ଅଶ୍ରୁରେ । ଏ ଦୁଇଟି ପଦାର୍ଥର ଶକ୍ତି ଏ ଜଗତରେ ଅପରିମେୟ । ଏଇ ଦେଇ ନାରୀ ପୁରୁଷକୁ ବଶ କରେ । ଆରଣ୍ୟକ ପୁରୁଷ ଯେଉଁଆଡେ ଗଲେ ମଧ, ବଣକୋଣରେ ପଡିଥିବା ଗୋଟିଏ ବାଳିକାର ହୃଦୟର ଗଭୀର ବେଦନା ଓ ଅଶ୍ରୁ ଭୁଲିପାରେନା - ତା'ର ଉଦ୍‌ଭ୍ରାନ୍ତ ଚିତ୍ତରେ ଏ ଆଘାତ ବାରଂବାର ବାଜେ ଓ ଶେଷରେ ସେ ସେଇ ବାଳିକାର ଗଛତଳକୁ ଫେରେ ।

ଆଶା କରେ ଏ ଦୀର୍ଘ ଦୁଇବର୍ଷର ବ୍ୟବଧାନ ପରେ ଆମର ନୂତନ ଜୀବନ ଆରମ୍ଭ ହେବ । ଲଲାଟେନ୍ଦୁ ଆସିଲା । ଆମ୍ଭେମାନେ ସ୍ୱପ୍ନରେ ଭାବି ନ ଥିଲେ ଯେ ଆମର ପିଲା ହେବ ଓ ସେ ପିଲା ପୁଣି ପୁଅ ହେବ; ସେ ପୁଅ ପୁଣି ଆମର ଓ ଅନ୍ୟମାନଙ୍କର ଆନନ୍ଦର କାରଣ ହେବ । ଆର୍ଥିକ ଓ ନୈତିକ କାରଣରୁ ଓ ତମର ଦୈହିକ ଓ ମାନସିକ ସ୍ୱାସ୍ଥ୍ୟ ଦିଗରୁ ଲଲାଟେନ୍ଦୁ ଆମର ଏକମାତ୍ର ସନ୍ତାନ ହେବା ଉଚିତ । ମୁଁ ଓ ତମେ ତ ବରାବର ଦରିଦ୍ର ରହିବା । ବିଲାତରୁ ଫେରି ଲୋକେ 'ସାହେବ' ହୁଅନ୍ତି । ଆମର ସେ ସବୁ ସ୍ୱପ୍ନ

ନାହିଁ ବୋଧହୁଏ । ଦେଶର ସାଧାରଣ ଦଶଜଣଙ୍କ ପରି ଜୀବନଯାପନ କରି ଦଶଜଣଙ୍କର କିଛି ଉପକାର କରିପାରିଲେ ଯଥେଷ୍ଟ ହେବ । ଲଲାଟେନ୍ଦୁର ଜୀବନ ଗଢ଼ିବା ପାଇଁ ତମର ଓ ମୋର ପ୍ରତି ରକ୍ତକଣିକା ଦରକାର । ସେଥିରେ, ତା'ର ଆଉ ଭାଇ ଭଉଣୀ କରିବା ତା'ପ୍ରତି ତ ଅନ୍ୟାୟ, ଆମର ଦୁଃଖ ଓ ଜଂଜାଳ ।

ଭାଇ ଓ ମୁଁ ବର୍ତ୍ତମାନ ଗୋଟେ ରୁମ୍‌ରେ ଅଛୁ । ସେ ରୁମ୍‌ରେ ଗୋଟେ ଗାସ-ଚୁଲି ଅଛି । ଆମ୍ଭେମାନେ ରାତି ୧୦-୧୧ ଭିତରେ ଶୋଉ ଓ ଉଠୁ ପ୍ରାୟ ୭ଟା ପରେ । ଏଠି ସକାଳ ୮ଟା ପର୍ଯ୍ୟନ୍ତ ଅନ୍ଧାର । ତେଣୁ ଆଗରୁ ଉଠିବା କୌଣସିମତେ ହୋଇପାରେନି । ମୁଁ ଆଗ ଉଠେ: ଉଠି ସଂଗେ ସଂଗେ ତଳକୁ ଯାଇ ବାଥ୍‌ରୁମ୍‌ରେ ମୁହଁ ଧୋଏ ଓ ପାଣି ପିଏ । ଦାନ୍ତ ବି ଘଷିନିଏ । କେବଳ ବ୍ରୁଶ୍ ସାହାଯ୍ୟରେ । ମୁଁ ଏବେ କୌଣସି ପାଉଡର ବା ପେଷ୍ଟ ବ୍ୟବହାର କରେନା । ଦାନ୍ତ ଭଲ ଅଛି । ଏଠି ମୁହଁ ଧୋଇବା ଅର୍ଥ, ମୁଣ୍ଡଟା ଅନ୍ତତଃ ଧୋଇବା ଓ ମୁହଁ ହାତକୁ ସାବୁନ ଦେଇ ପରିଷ୍କାର କରିବା । ସେଇ ହେଲା ଏଠାର ପ୍ରାତଃସ୍ନାନ । ଭଲ ସ୍ନାନ ସପ୍ତାହରେ ଥରେ କରିବାକୁ ହୁଏ । ସେଥିପାଇଁ ପଇସା ଦେବାକୁ ପଡେ । ମୁଁ ପ୍ରାୟ କଲେଜରେ ଗାଧୋଏ - ଚାରି ପେନି ବା ଚାରଣା ଦେବାକୁ ପଡେ । ସପ୍ତାହରେ ଥରେ ଗାଧୋଇବାରୁ, ବେଶ୍ ଘଣ୍ଟାଏ ଖଣ୍ଡେ ମୁଁ ଗାଧୋଏ - ଦେହକୁ ସାବୁନରେ ପରିଷ୍କାର କରିବାକୁ ହୁଏ । ସାଧାରଣତଃ ଗାଧୋଇବା ଘରେ ବଡ ଧଳା କୁଣ୍ଡ ଥାଏ, ସେଇ କୁଣ୍ଡ ଦେହରେ ଗରମ ଓ ଥଣ୍ଡା ପାଣିର କଳ ଥାଏ- ମୋଡି ଦେଲେ ଚମତ୍କାର ଉଷୁମପାଣି ୨/୩ ମିନିଟରେ ଭର୍ତ୍ତି ହୋଇଗଲା - କବାଟ ବନ୍ଦକରି ଲୁଗାପଟା କାଢି ଆରାମରେ ଗାଧୁଆ ହୁଏ । ସେମାନେ ପରିଷ୍କାର ଟାୟେଲ ଦେଇଥାନ୍ତି - ସେଇଥିରେ ପୋଛି ହେବାକୁ ହୁଏ ।

ବାଥ୍‌ରୁମ୍‌ରେ ଆମର ଦୈନିକ ସ୍ନାନଟା ସାରି ମୁଁ ବାଲଟିରେ ପାଣି ନେଇଆସେ । ସେଇ ପାଣି ଦେଇ ଚାଉଳ, ଡାଲି, ପରିବା ସଜାଡି କୁକର୍ ବସେଇ ଦିଏ ଗାସ୍ ଚୁଲି ଉପରେ । ପରିବାପତ୍ର ରାତିରୁ କାଟି ରଖିଥାଏ । ଅଧଘଣ୍ଟା ଭିତରେ ସବୁ ଠିକ୍ । କିନ୍ତୁ କୁକର୍ ରନ୍ଧା ସକାଳେ ଖାଉନା - ଖରାବେଳେ ଖାଉ । କାରଣ ସେତେବେଳେ ଭଲ ଭୋଜନ ଦରକାର, କିନ୍ତୁ ଘଣ୍ଟାଏ ମାତ୍ର ସମୟ ମିଳେ । ତେଣୁ ଏଣୁ ରାନ୍ଧି ରଖିଥାଉ - କୁକର୍‌ରେ ଖାଦ୍ୟ ବହୁତ ସମୟ ଉଷୁମ ରହେ । ପ୍ରାତଃ ଭୋଜନ ପାଇଁ ଦୁଧ ଉଷୁମ କରିଦେଉ ଓ ଗହମ ବା ଓଟ୍‌ର ବଜାରରେ ମିଳୁଥିବା ମୁଢିଜାତୀୟ ଏକ ଖାଦ୍ୟ ସଙ୍ଗେ ମିଶାଇ ତାକୁ ଖାଉ । ମୁଁ ଏସବୁ କରିବା ସାଙ୍ଗେ, କସରତ କରେ, ପାଇଖାନା ଯାଏ, ପୋଷାକ ପିନ୍ଧେ । ଦୁର୍ଗା ଇତିମଧ୍ୟରେ ଉଠି ତା'ର କାମ ସାରିନିଏ । ଆମେ ସବୁ ସାରି ଘରୁ ବାହାରିବା ବେଳକୁ ୯ଟା ୧୫ ମିନିଟ୍ ହୋଇଥାଏ । ଆମ ଘରୁ କଲେଜ୍ ପ୍ରାୟ ୧୦ ମିନିଟର ବାଟ । ଯାଇ, କଲେଜ କମନ୍‌ରୁମ୍‌ରେ ଦୈନିକ ଖବରକାଗଜଟା ଦେଖିନେଉ - ସବୁବେଳେ ଆମର ନଜର ଥାଏ, ଭାରତବର୍ଷର କିଛି ଖବର ବାହାରିଛି କି ନାହିଁ । ଆମେ ସାଧାରଣତଃ Times ଖବରକାଗଜଟା ପଢୁ । ସେଟା ଏଠାରେ ଶ୍ରେଷ୍ଠ କାଗଜ । ତା'ର ଦାମ୍ ପ୍ରତିଦିନ ୨ଅଣା

ବା ୨ପେନି । 'ମାନ୍‌ଚେଷ୍ଟର ଗାର୍ଡିଆନ୍' ନାମକ କାଗଜ ଟାଇମ୍‌ସ ପରି ଉଚ୍ଚ ଦରର-ଭାରତର ପକ୍ଷରେ-ଦାମ୍ ବି ଦୁଇ ପେନି । ଆଉ ସବୁ କାଗଜ ପେନିଏ । କିନ୍ତୁ ବଡ ବଜାରୀ କାଗଜ - ବାଜେ ଖବରରେ ପୃଷ୍ଠା ଭର୍ତ୍ତି କରନ୍ତି । ଟାଇମ୍‌ସ ଭାରତର ବିପକ୍ଷରେ । କିନ୍ତୁ ଭଲ ଖବର ଦିଏ । ଆଜି, ଯୁକ୍ତ ପ୍ରଦେଶରେ କିମିତି ସାମ୍ୟବାଦୀମାନେ ବିପ୍ଳବ ସୃଷ୍ଟି କରୁଛନ୍ତି ଓ କଂଗ୍ରେସ ମନ୍ତ୍ରୀମାନେ କିମିତି କଠିନ ସମସ୍ୟାର ସମ୍ମୁଖୀନ ହେଉଛନ୍ତି, ସେ ସମ୍ବନ୍ଧରେ ଏକ ଦୀର୍ଘ ଲେଖା ବାହାରିଛି । କିଛିଦିନ ତଳେ News Chronicle ନାମକ କାଗଜରେ ସୁଭାଷ ବୋଷଙ୍କର ପ୍ରକାଣ୍ଡ ଛବି ସହିତ 'ଭାରତୀୟ ସମସ୍ୟା' ବୋଲି ତାଙ୍କର ଏକ ଲେଖା ବାହାରିଥିଲା ।

ଖବରକାଗଜ ଶେଷ କରି ଯେଝା କାମରେ ଯାଉ । ଗୋଟେ ପର୍ଯ୍ୟନ୍ତ ବ୍ୟସ୍ତ ରହୁ । ମୁଁ ଟିକିଏ ଆଗରୁ ଯାଇ ତରକାରିଟା ବସାଇ ନିଏ । ଦୁର୍ଗା ଆସି ପହଁଚିଲା ବେଳକୁ ସବୁ ରେଡି । ବେଶ୍ ଭୋଜନଟାଏ ପକାଉ - କଣ୍ଟା ଚାମଚ ଦେଇ ଓ ଟେବୁଲ୍ ଉପରେ ଅବଶ୍ୟ ଖାଉ । ଦୁଧ ବି ପୁଣି ପିଉ । ତା'ପରେ ଫେରିଆସୁ । ଫେରି ମୁଁ ୬ଟା ବେଳକୁ ଫେରେ, ଦୁର୍ଗା ଆଗରୁ ଯାଏ ଚାଲି । ଘରକୁ ଯାଇ ପୋଷାକ କାଢି, ତରକାରିଟାଏ କରିନେଉ ଓ ପାଉଁରୁଟି ଓ ଦୁଧ ଦେଇ ନୈଶ ଭୋଜନ ସମାପ୍ତ କରୁ । ୮ଟାରୁ ୧୦/୧୧ଟା ଯାଏଁ ପୁଣି ପଢୁ । ତା'ପରେ ଶୋଉ । ଏହି ହେଲା ଆମର ଦୈନିକ ବ୍ୟବସ୍ଥା । ଆମର ସ୍ୱାସ୍ଥ୍ୟ ବେଶ୍ ଭଲ ଅଛି । ମୋର ସ୍ୱାସ୍ଥ୍ୟ ବେଶ୍ ଅଛି । କୋଷ୍ଠ ପରିଷ୍କାର - କୌଣସି ଅଭିଯୋଗ ନାହିଁ । ଭବାନୀପାଟଣାର କାଛୁ କିନ୍ତୁ ଏଠାଯାଏଁ ଆସିଲା - ପ୍ରଥମ ଦୁଇ ତିନିମାସ ପୁଣି ଥରେ ଆଚ୍ଛାକରି ବାହାରିଲା - ଏବେ କମିଛି, ତେବେ ଜଂଘର ଠାଏ ଏପର୍ଯ୍ୟନ୍ତ କୁଣ୍ଡେଇ ହେଉଛି ଓ ଗୋଟେ ଯୋଡେ କାଛୁ ଏ ପର୍ଯ୍ୟନ୍ତ ବାହାରୁଛି । ଆଶା କରେ, ବସନ୍ତ ଆରମ୍ଭରେ ସେସବୁ ଚାଲିଯିବ । ଗତ ରବିବାର ମୁଁ ଏଠାରେ ଏକ ଚର୍ଚ୍ଚରେ ଏକ କ୍ଲାସରେ 'ଭାରତରେ ଖ୍ରୀଷ୍ଟଧର୍ମ' ସମ୍ବନ୍ଧରେ କହିଥିଲି । ଭାରତରେ ଖ୍ରୀଷ୍ଟଧର୍ମ କାହିଁକି ଅପ୍ରିୟ, ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କର ଦୋଷ କ'ଣ ସବୁ କହିଲି । ସେମାନେ ବଡ ସୁନ୍ଦର ଭାବରେ ତାହା ଗ୍ରହଣ କଲେ ଓ ନିଜର ଦୋଷ ସ୍ୱୀକାର କଲେ । ଅବଶ୍ୟ ଖ୍ରୀଷ୍ଟଧର୍ମ ଭାରତର ପତିତ ଜାତିମାନଙ୍କୁ କିପରି ଉଦ୍ଧାର କରିଛି ସେ କଥାର ପ୍ରଶଂସା ମଧ କରିଥିଲି । କିନ୍ତୁ ନିଜର ଦୋଷ ମାନିଯିବା, ଆମ ଲୋକଙ୍କ ପକ୍ଷରେ ସହଜ କଥା ନୁହେଁ । ଆମର ଦୁଃଖ ଦୁର୍ଦ୍ଦଶା ସତ୍ତ୍ୱେ, ଆମେମାନେ ମନେକରୁ, ଆମର କାହାଠୁ କିଛି ଶିଖିବାର ନାହିଁ - ଆମ ତାଳପତ୍ର ପୋଥିରେ ଜଗତର ସବୁ ଜ୍ଞାନ ଠୁଳ ହୋଇ ରହିଛି । ବକ୍ତୃତା ପରେ ଜଣେ ଭଦ୍ରଲୋକଙ୍କ ଘରକୁ ଚା'ଖାଇବାକୁ ସେ ସେଇଠୁ ଡାକିନେଲେ । ତାଙ୍କର ସ୍ତ୍ରୀ, ଛୋଟ ଝିଅପୁଅମାନଙ୍କ ସହିତ କଥାଭାଷା ଓ ଖିଆପିଆରେ ମୁଁ ଅନିର୍ବଚନୀୟ ଆନନ୍ଦ ପାଇଲି । ମି: ବେଲ୍(ସେହି ଭଦ୍ରଲୋକ) ମତେ ଯେକୌଣସି ରବିବାର ଅପରାହ୍ନରେ ତାଙ୍କ ଘରେ ବିନା ଆମନ୍ତ୍ରଣରେ ଚା ଖାଇବାକୁ ଯିବାକୁ କହି ରଖିଛନ୍ତି । ଛୋଟ ବାଳକବାଳିକା ଗୁଡିକ ମୂଷା ପାଳିଛନ୍ତି । ମତେ ଆଣି କୌତୁକରେ

ଦେଖେଇଲେ, ଆସିଲାବେଳକୁ ହସହସ ମୁଖରେ କରମର୍ଦ୍ଦନ କରି ବିଦାୟ ଦେଲେ - ଏମାନଙ୍କର ପାରିବାରିକ ଜୀବନ ଓ ସାମାଜିକ ପ୍ରଥାରେ ତମେ ମୁଗ୍ଧ ହୋଇଯିବ ପରା !

ପ୍ରାଣର ଲକ୍ଷ୍ମୀରେ, ତତେ ପରଦିନ ସକାଳେ ଉଠିବାର ଠିକ୍ ପୂର୍ବରୁ ସ୍ୱପ୍ନ ଦେଖିଲି । ପରିଷ୍କାର ଭାବରେ ତତେ ଧରି ମୁଁ ତୋର ମୁଖକମଳକୁ ନିବିଡ ଭାବରେ ଆଘ୍ରାଣ କରୁଛି । ଓଃ ସେ ଦିନଯାକ ତୋ'ର ସ୍ମୃତି ମତେ ଘେରିରହିଥାଏ । କେହି ନ ଥିଲେ ତୋ'ର ଛବିକି ଚୁମ୍ବନ ଦିଏ । କେତେବେଳେ ଯେ ତୁ ମୋ'ଠୁ ଦୂରରେ ଅଛୁ ମୁଁ ଜାଣେନା ।

ଆଉ ସମୁଦ୍ରଡାକରେ ଚିଠି ଦେବିନି । ଦୁର୍ଗା ତ ବ୍ୟୋମଡାକରେ ଚିଠି ଦେଉଛି । ମୁଁ ଆଉ ଅଲଗା ପଇସା କାହିଁକି ଖର୍ଚ୍ଚ କରିବି ? ତମେ ବି ସେଇ ଆକାଶ ଡାକରେ ବରାବର ଚିଠି ଦିଅ ।

ଇତି
ତମର ପ୍ରିୟ



ତେଇଶି

## ଦେଶ ଜନନୀକୁ ସମ୍ମାନ

Students' Union
King's College, Newcastle on Tyne
04.02.1938

ପ୍ରାଣର ପାଗ୍‌ଲି,

ଏ ସପ୍ତାହରେ ଚିଠି ଦେଲୁନି କାହିଁକି ? ବାପା କଟକ ଯାଇ କ'ଣ ବୁଝିଲେ ଆମ୍ଭେମାନେ ଜାଣିବାକୁ ଉଦ୍‌ବିଗ୍ନ, ଭାଇର ପରୀକ୍ଷା-ଫି ଦେବାର କଥା - ତମଠୁ ଏ ସପ୍ତାହରେ ଚିଠି ନପାଇ ମନ ଭଲ ନାହିଁ । ସମୁଦ୍ରଡାକରେ ଚିଠି ଦିଅନି । ଏହି ବ୍ୟୋମଡାକ ହିଁ ସୁବିଧା । ମୋର ସମୁଦ୍ରଡାକର ସବୁ ଚିଠି ପାଇଥିବ । ମୁଁ ଆଉ ସେଥିରେ ଦେବିନି ।

ଫେବୃୟାରୀ ଦୁଇକୁ ଲଲାଟେନ୍ଦୁକୁ ୭ମାସ ହେଇଯିବଣି । ସେ ବର୍ତ୍ତମାନ କିପରି ଅଛି ? ଚାଲିଲାଣି କି ନାହିଁ ? ତମକୁ କି ପ୍ରକାରେ ସେ ସୁଖ ଦେଉଛି ?

ନବଭାରତକୁ ମୋର ଭ୍ରମଣ କାହାଣୀର ପ୍ରଥମ କିତା ପଠାଇଦେଇଛି । ହୁଏତ ଫେବୃୟାରୀ ସଂଖ୍ୟାରେ ବାହାରିବ - ନଚେତ୍ ମାର୍ଚ୍ଚରେ । ଦ୍ୱିତୀୟ କିତା ଆର ସପ୍ତାହରେ ପଠାଇବି । ଲକ୍ଷ୍ମୀଧର ନାୟକଙ୍କ ନିକଟକୁ ବିଛିନ୍ନା ଲାଗି ମୋର ପୁରୁଣା ନାଟକ ଖାରବେଳ ପଠାଇପାରେ । ସେଇଟାକୁ କୌଣସିମତେ କାମରେ ଲଗେଇଲେ ହେଲା - ସେଇମିତି ବା ଗପ ଆକାରରେ ।

ଜାନୁୟାରୀ ୨୯ ତାରିଖ ଦିନ ଆମ୍ଭେମାନେ 'ଭାରତର ସ୍ୱାଧୀନତା ଦିବସ' ପାଳନ କରିଥିଲୁ । ଜଣେ ଭଦ୍ରଲୋକଙ୍କର 'ଜନଗଣମନ ଅଧିନାୟକ'-ରେକର୍ଡ ଅଛି ।

ଆମେ ଭାରତୀୟମାନେ ଯେତେବେଳେ ଏକାଠି ହେଉ, ସେଟା ବୋଲାହୁଏ ଓ ଆମ୍ଭେମାନେ ଠିଆ ହେଇ, ବହୁଦୂରର ଦେଶ-ଜନନୀକୁ ସମ୍ମାନ କରୁ । ଆଉ ଜଣେ ଭାରତୀୟ ତାଙ୍କର ସେତାର୍ ନେଇ ଆସିଛନ୍ତି । ସେତାର୍ ବଜାଇବା ଲାଗି ତାଙ୍କୁ ବହୁ ଡାକରା ଏଠି । ସେ ଆମ ମେଣ୍ଟରେ ବସି ସେତାର ବଜାଇଲା ବେଳେ, ଭାରତର ନିଜସ୍ୱ ସ୍ମୃତିସବୁ ଘନୀଭୂତ ହୋଇ ଉଠେ ମନରେ ।

ଏଠାର ପ୍ରତି ବଡ଼ ସହରରେ ଅନ୍ତର୍ଜାତୀୟ ସଭା ଅଛି । ଏଠି ବି ଅଛି - ଛୋଟ ଦରରେ । ସେଇ ଜାନୁୟାରୀ ୨୯ରେ ଏଠାର ଅନ୍ତର୍ଜାତୀୟ ସଭାରେ ଜଣେ ଭାରତୀୟ ଖ୍ରୀଷ୍ଟାନ ଭଦ୍ରଲୋକ 'ଭାରତୀୟ ସଂସ୍କୃତି ଉପରେ ଖ୍ରୀଷ୍ଟଧର୍ମର ପ୍ରଭାବ' ବିଷୟରେ ବକ୍ତୃତା ଦେବାକୁ ନିମନ୍ତ୍ରିତ ହେଇଥିଲେ । ସେ ଭଦ୍ରଲୋକ ଗ୍ଲାସ୍‌ଗୋ ଅନ୍ତର୍ଜାତୀୟ ସଭାର ସଭାପତି । ଖ୍ରୀଷ୍ଟାନ୍ ହୋଇ ମଧ ଭାରତ ପ୍ରତି ଗଭୀର ଅନୁରକ୍ତି ମୁଁ ତାଙ୍କଠି ପ୍ରଥମ ଦେଖିଲି । ସେ ବି ସେଇ ଧରଣରେ କହିଲେ । ସେ ଖ୍ରୀଷ୍ଟାନ୍ ପାଦ୍ରୀମାନଙ୍କର ଧର୍ମପ୍ରଚାର ରୀତିକୁ ନିନ୍ଦା କଲେ । ସେ କହିଲେ ଯେ, ଏମାନେ ଭାରତବର୍ଷର ଖ୍ରୀଷ୍ଟାନ୍‌ମାନଙ୍କୁ ଭାରତର ମାଟିରୁ ଅଲଗା କରିବାକୁ ଚାହାନ୍ତି । ଏହାର ଫଳ ଅତ୍ୟନ୍ତ ମାରାତ୍ମକ । ଭାରତର ଏକ ସ୍ୱତନ୍ତ୍ର ଓ ସୁନ୍ଦର ସଂସ୍କୃତି ଅଛି । ଖ୍ରୀଷ୍ଟାନ୍ ହେଲେ ମଧ ସେ ସଂସ୍କୃତିରେ ପ୍ରତ୍ୟେକ ଭାରତୀୟ ବଢ଼ିବା ଦରକାର । ଖ୍ରୀଷ୍ଟାନ୍ ପାଦ୍ରୀମାନେ ସେ ସଂସ୍କୃତିକୁ ବୁଝିବାକୁ ଚେଷ୍ଟା କରନ୍ତିନି । ସେମାନେ ଆତ୍ମ-ଗର୍ବରେ ଖ୍ରୀଷ୍ଟଧର୍ମକୁ ଭାରତବର୍ଷରେ ଅପ୍ରିୟ କରିଛନ୍ତି ।

ତାଙ୍କ କହିବା ଶେଷରେ ଆଲୋଚନା ହେଲା । ସେ ବାରଂବାର ଅନୁରୋଧ କଲେ ମଧ୍ୟ, ଗୋରାମାନଙ୍କ ଭିତରୁ କେହି କହିଲେନି । ଆମେ ଦି'ଜଣ ଭାରତୀୟ କହିଲୁ । ମୁଁ କହିଲି ଯେ, ମୁସଲମାନ୍, ବୌଦ୍ଧଧର୍ମ ପ୍ରଭୃତି ସବୁ ଧର୍ମ ଭାରତର ସଂସ୍କୃତିକୁ ଉପାଦାନ ଯୋଗାଇଛି, କିନ୍ତୁ ଖ୍ରୀଷ୍ଟଧର୍ମ କିଛି ଦେଇନି । ଖ୍ରୀଷ୍ଟଧର୍ମ ଭାରତବର୍ଷର ଜାତୀୟ ଜୀବନରେ କୌଣସି ପ୍ରକାର ଛାପ ଦେଇନି । ତା'ଛଡା, ଯେହେତୁ ଖ୍ରୀଷ୍ଟଧର୍ମର ଲୋକେ ବର୍ତ୍ତମାନ ଜଗତରେ ସବୁଠୁ ଶକ୍ତିଶାଳୀ ଓ ଧନଶାଳୀ, ତେଣୁ ସେମାନେ ନିଜ ଧର୍ମକୁ ଅନ୍ୟମାନଙ୍କ ଉପରେ ନଦିବାକୁ ଚେଷ୍ଟା କରୁଛନ୍ତି । ସେମାନଙ୍କର ଟଙ୍କା ଥିବାରୁ ସେମାନେ ଡାକ୍ତରଖାନା, ହଲ ପ୍ରଭୃତି ଖୋଲି ପାରୁଛନ୍ତି ଓ ଏ ପ୍ରକାର ଗରିବ, ଅନାହାର ଓ ପତିତ ଲୋକଙ୍କୁ ନିଜ ଧର୍ମ ଭିତରେ ପୂରେଇ ପାରୁଛନ୍ତି । କିନ୍ତୁ ଡାକ୍ତରଖାନା ଖୋଲିବା ଧର୍ମର କାମ ନୁହେଁ, ସରକାରର । ଭାରତରେ ଗରିବ ଲୋକ ଖାଇବାକୁ ନ ପାଉଥିଲେ ବା ଓଷଦ ନ ପାଉଥିଲେ, ତାହା ହିନ୍ଦୁଧର୍ମର ନିନ୍ଦାର କାରଣ ନୁହେଁ - ବ୍ରିଟିଶ୍ ସରକାରର ନିନ୍ଦାର କାରଣ । ଧର୍ମ ଭାବରେ ତୁଳନା କଲେ ହିନ୍ଦୁଧର୍ମକୁ ନୂଆ କଥା ଶିଖେଇବାକୁ ଖ୍ରୀଷ୍ଟଧର୍ମରେ ବିଶେଷ କିଛି ନାହିଁ । କିନ୍ତୁ ତଥାପି ଖ୍ରୀଷ୍ଟାନ୍ ପାଦ୍ରୀ ହିନ୍ଦୁକୁ ବର୍ବର, ମୂର୍ଖ ଓ ଅସଭ୍ୟ କହିବ । ଜଗତରେ ଆଜି ଯେ ଜାତି ଜାତି ଭିତରେ ଘୃଣା, ଏହାର ମୂଳରେ ଏହି ପ୍ରକାର ପାଦ୍ରୀମାନଙ୍କର ପ୍ରଚାର । ଏହା ସମୂଳେ ବନ୍ଦ ହେବା ଦରକାର । ସବୁ ଧର୍ମରେ ସତ୍ୟ ଅଛି । କୌଣସି ଧର୍ମ ଅନ୍ୟ

ଧର୍ମର ଲୋକଙ୍କୁ ନିଜ ମତକୁ ଆଣିବାକୁ ଚେଷ୍ଟା କରିବା ଉଚିତ୍ ନୁହେଁ । ପାଦ୍ରୀ ପୁରୋହିତମାନଙ୍କ ପ୍ରେରଣାରେ ଜଗତରେ ଅନିଷ୍ଟ ଘଟି ଯାଇଛି । ଆଉ ଦରକାର ନାହିଁ । ଖ୍ରୀଷ୍ଟଧର୍ମ ନେଇ ଗୋରାମାନଙ୍କର ମାୟା ପ୍ରଚାର ଆଉ ଦରକାର ନାହିଁ । ଏହା ବନ୍ଦ ନହେଲେ ଜଗତରେ ଶାନ୍ତି ନାହିଁ ।

ମୁଁ କିମିତି କହିଲି ମୁଁ କହିପାରୁନି । କିନ୍ତୁ ଆଶ୍ଚର୍ଯ୍ୟର କଥା, ମୁଁ କହିଲା ପରେ ଘନଘନ କରତାଳି ଶୁଣିବାକୁ ପାଇଲି ଓ କହିବା ଶେଷରେ ଗୋରା ତରୁଣତରୁଣୀମାନେ ମୋର କରମର୍ଦ୍ଦନ କରି ମୋର ସମ୍ବର୍ଦ୍ଧନା କରିବାକୁ ଲାଗିଲେ - ଗୋରା ପ୍ରେସିଡେଣ୍ଟ ମଧ୍ୟ । 'ଆମ୍ଭେମାନେ ଧର୍ମ ଚାହୁଁନା' - 'ହାତ ମିଳାଅ' - କେତେଜଣ ଏ ପ୍ରକାର ଚିତ୍କାର କରିବାକୁ ଲାଗିଲେ ।

ମୋର କହିବାଟା ସେଦିନ ସମସ୍ତଙ୍କ ମନକୁ ଯେ ଘେନିଛି ପରି ବୋଧ ହେଉଛି । ମୁଁ ଯେ ଭଲ କହିପାରେ, ଏହା ମୋର ଆଦୌ ଧାରଣା ନୁହେଁ । କିନ୍ତୁ ଭଗବାନଙ୍କ ଦୟା ହେଲେ, ଯଦି ମୋର କହିବାର ଶକ୍ତି ଥାଏ, ତେବେ ଭାରତବର୍ଷ ସମ୍ବନ୍ଧରେ ଯଦି କିଛି କହିବୋଲି ପାରେ ଏଠି । ମୁଁ ବୃହତ୍ତର ଜନତା ଆଗରେ ଭାରତ ସମ୍ବନ୍ଧରେ କହିବାକୁ ଆମର କ୍ଷୁଦ୍ର ଭାରତୀୟ ସଭା ଯୋଗାଡ କରୁଛି ।

ପ୍ରାଣର ହେମ,ତମେ ପ୍ରାର୍ଥନା କର, ମୁଁ ଯେପରି ଦେଶର କଥା ଭଲକରି କହିପାରେ ଏଠି । ଜାନୁୟାରୀ ମାସ ଯାକ ଏଠି ଭୟଙ୍କର ଶୀତ ଓ ପ୍ରବଳ ପବନ । ପବନ ଏପରି ଖର ହୁଏ ଯେ ରାସ୍ତାରେ ଚାଲି ହୁଏନି । ଫେବୃୟାରୀ ଆରମ୍ଭରେ ଶୀତ ଟିକିଏ କମିଛି । ମୁଁ ଏବେ ପ୍ରତିଦିନ ସକାଳୁ ଥଣ୍ଡାପାଣିରେ ଗାଧୋଉଛି । ଏଇଟା ଏଠି ବଡ ଆଶ୍ଚର୍ଯ୍ୟର କଥା । କିନ୍ତୁ କେହି କରିବାକୁ ସାହାସ କରନ୍ତିନି । ମତେ କିଛି କଷ୍ଟ ହେଉନି - ବରଂ ଗାଧୋଇ ପଡିଲେ ବଡ ଭଲ ଲାଗେ । ଭାଇ ତମର ଏ ଦେଶର କି ସେ ଦେଶର ହେଉନି - ସ୍ୱାସ୍ଥ୍ୟ ପାଇଁ ଔଷଧ ଖାଲି ଖାଉଛି । ସେଥିରେ ପୁଣି କୋଷ୍ଠବଦ୍ଧତା । ଭଗବାନଙ୍କୁ ଧନ୍ୟବାଦ ମୋର ସେସବୁ କିଛି ନାହିଁ । ମୁଁ ବେଶ୍ ଭଲ ଅଛି ।

ବରାବର ପତ୍ର ଦେବୁଟି ପାଗ୍‌ଲି । ତୋର ପତ୍ର ନ ପାଇଲେ ମନ କାହିଁରେ ଲାଗେନା । ପଢାରେ ବ୍ୟାଘାତ ହୁଏ । ତୁ ବରାବର ପତ୍ର ଦେବୁ । ଲଲାଟେନ୍ଦୁ ଓ ବାପାଙ୍କ କଥା ବରାବର ଲେଖୁଥିବୁ ।

ଏଠାର କଲେଜର ମାଷ୍ଟ୍ର-ମାଷ୍ଟ୍ରାଣୀମାନେ ଶକୁନ୍ତଳା ନାଟକ ଅଭିନୟ କରୁଛନ୍ତି । ଆମେ କାଲି ଦେଖିବାକୁ ଯିବୁ । ଅବଶ୍ୟ ଅଭିନୟ ଇଂରେଜୀ ଅନୁବାଦକୁ ନେଇ । କିପରି ହେବ ଦେଖିବା ।

ଧନରେ, ସର୍ବସ୍ୱ ତୁ ମୋର, କେବେ ତତେ ପୁଣି ଦେଖିବି ? ଆ.........

ତୋର ପ୍ରିୟ



## ଚବିଶି

# ତତେ ଦୁଇଥର ସ୍ୱପ୍ନ ଦେଖିଲି

Students' Union
King's College
NewCastle on Tyne
13.04.38

ପ୍ରାଣର ଧନରେ,

କାଲି ରାତିରେ ତତେ ଦୁଇଥର ସ୍ୱପ୍ନ ଦେଖିଲି । ପରିଷ୍କାର ଭାବରେ ତତେ ଦେଖିଛି । ଦୁଇଥରଯାକ ଗଭୀର ଆଲିଙ୍ଗନ ଓ ଚୁମ୍ବନ ଦେଇଛି । ମୁଁ ଜାଣେନା ତୁ ମତେ ଠିକ୍ ସେତିକିବେଳେ ଭାବୁଥିଲୁ କି ନାହିଁ । ମୁଁ ଦେଖିଲି ତୁ ବିଶେଷ ସୁନ୍ଦରୀ ହୋଇଉଠିଛୁ - ଦେହ ଅଧିକ ନିର୍ମଳ ଓ ମୁଖ ଅଧିକ ଶ୍ରୀଯୁକ୍ତ ହୋଇଉଠିଛି । ସକାଳୁ ଉଠି ଭାବିଲି ବୋଧହୁଏ ଚିଠି ଆସିଥିବ । କିନ୍ତୁ ନିରାଶ ହେଲି ।

ଆଜି ଏପ୍ରିଲ୍ ୧୩ । ଆଜି ବିଷୁବ ସଂକ୍ରାନ୍ତି ବା ପଣା ସଂକ୍ରାନ୍ତି । ଆମ ଗାଁରେ ଆମ ଘରେ ଆଜି ବାର୍ଷିକ ହୋମ ହେଉଥିବ । ସମଗ୍ର ଦେଶରେ ପ୍ରଚଣ୍ଡ ଖରା ହେଉଥିବ । ଏଠି ଦିନ ସଫା ହେଲାଣି ସତ, ସୂର୍ଯ୍ୟକିରଣ ଅଧିକ ବେଳଯାଏଁ ସ୍ଥାୟୀ ଓ ଅଧିକ ପ୍ରଖର ହେଲେ ମଧ୍ୟ, ଶୀତ ଆହୁରି ଛାଡ଼ିନି । ରାତିରେ ରୀତିମତ ଶୀତ ହେଉଛି - ଆମେ ପୂର୍ବ ପରି ତିନି ଚାରି କମ୍ବଳ ଓ ରେଜେଇ ଘୋଡ଼ିହୋଇ ଶୋଉଛୁ । କିନ୍ତୁ ଦିନ ବଡ଼ ଓ ରାତି ଛୋଟ ହେବାର ଏଠି ଯେମିତି ଜଣାପଡ଼େ, ଆମର ସେଠି ଜଣାପଡ଼େନା । ଆମେ ବିଷୁବ ରେଖାର ନିକଟରେ ଅଛୁନା, ଆମର ଦିନରାତି ବର୍ଷସାରା ପ୍ରାୟ ସମାନ ରହେ । ଏଠି କିନ୍ତୁ ଭୟଙ୍କର ତଫାତ ଘଟେ । ଏବେ ରାତି, ଉପର ବେଳା ୮ଟା ୯ଟା ବେଳେ ଯାଇ ଆରମ୍ଭ ହେଉଛି । ପୂର୍ବେ ସକାଳ ୮ଟା ଯାଏଁ ରାତି ଥାଏ, ଏବେ ୫ଟା ବେଳକୁ ଦିନ ଆରମ୍ଭ ହୋଇଯାଉଛି । କିଛିଦିନ ଗଲେ ଉପରବେଳା ୧୧ଟା ଯାଏଁ ଦିନ ରହିବ । ଅର୍ଥାତ୍ ଦିନ ଥାଉଥାଉ ଆମେ ରାତ୍ରିଭୋଜନ କରି ରାତ୍ରି ଶୟନକୁ ଯିବୁ । ଅଦ୍ଭୁତ ଦେଶ ! ନୁହେଁ ? ଗଲା ଶନିବାର ଦିନ ଗୋଟିଏ ଚର୍ଚ୍ଚରେ ଅନେକ ବାଳକବାଳିକା ଓ ଅନ୍ୟାନ୍ୟ ସ୍ତ୍ରୀ-ପୁରୁଷଙ୍କୁ ମୁଁ ଆମ ଦେଶରେ କିମିତି ୫/୬ଟାରେ ରାତି ହୁଏ - (ଅନ୍ୟାନ୍ୟ କଥା ଭିତରେ) ସେକଥା କହିଲି । ସେମାନଙ୍କୁ ସେକଥା ଆଶ୍ଚର୍ଯ୍ୟ ଲାଗିଲା !

ପାଗ୍‌ଲିରେ ଦିନଯାକ ଭାରି ମନେ ପଡୁଛୁ । କୋଳକୁ ଆ'ନା, ତତେ ଯାକିଧରି ଚୁମ୍ବନ ଦିଏ ।

ପ୍ରାଣର ପାଗ୍‌ଲି, ତମର ୩୧ ତାରିଖର ଚିଠି ଆଜି ପାଇଲି । ଜର ପରେ ତମର ଦେହ ଭଲ ଆଡକୁ ଯାଉଥିବାର ଶୁଣି, ମନରୁ ଗୋଟେ ଭାରା ଗଲା । ଆଜି ମୋର ମନ ଟିକିଏ ଭଲ ଅଛି । ତମେ ଅନେକ ସମୟରେ କହ 'ବ୍ୟସ୍ତ ହୋଇ ଲାଭ କ'ଣ ?' ଆଜି ପ୍ରାଣରେ ସେଇ କଥାର ପ୍ରତିଧ୍ୱନି ବାରମ୍ବାର ବାଜି ଉଠିଲା । ବାସ୍ତବିକ ବ୍ୟସ୍ତ ହୋଇ ଲାଭ

କ'ଣ ? କୌଣସି ମତେ କାମ ତ ଚଳିବ । ଘରୁ ପାଦ କାଢି ଆସିଛି, ବିଦେଶରେ କୌଣସିମତେ ଦିନ କାଟିବାକୁ ହେବ । ଫେରିଯିବାର ତ ବାଟ ନାହିଁ, ବ୍ୟସ୍ତ ହୋଇ ଲାଭ କ'ଣ ? ଏଯାଏଁ ତ କୌଣସି ମତେ କାମ ଚଳିଗଲାଣି । ସେଇମିତି ସେଇମିତି କାମ ଚଳିଯିବ, ବ୍ୟସ୍ତ ହୋଇ ଲାଭ କ'ଣ ? ଏହିପରି ଭାବି ଭାବି ମନକୁ କୌଣସିମତେ ସଂଯତ କରିଛି ଓ ପଢାରେ ମନୋନିବେଶ କରିଛି ।

ଲଲାଟେନ୍ଦୁକୁ ସମସ୍ତେ ମାରୁଛନ୍ତି ବୋଲି ଶୁଣିଲି । କିଏ ମାରୁଛି ? ସେ ଯଦି ମାଡ ସହିପାରୁଛି ବେଶ୍ ଭଲକଥା । ପିଲାଦିନେ ମୁଁ ବି ମାଉଁସିଆ କୋଥଲ ଥିଲି ବୋଲି ମତେ ସମସ୍ତେ ଘୋଷରା ଘୋଷରି କରି ବିଧେ ବିଧେ ପକଉଥିଲେ ।

ତମର କଥା ତ ବରାବର ମନରେ ଅଛି । ତମ୍ଭୁକୁ ପାଖରେ ପାଇଲେ ସହସ୍ର ଚୁମ୍ବନ ଦିଅନ୍ତି । ଚୁମ୍ବନ ଆଶ୍ଳେଷରେ ମୋର ଶାରୀରିକ ଉତ୍ତେଜନା ନାହିଁ ଆଉ - ତମ ପ୍ରତି ନିବିଡ ଆକର୍ଷଣ ହିଁ ସେଥିରେ ପ୍ରକାଶିତ ।

ଶ୍ୱେତାଙ୍ଗ ଦେଶକୁ ଆସି ମୁଁ କଠୋର ହେଇନି । ବରଂ ଏ ଦେଶର ଦାମ୍ପତ୍ୟ ଜୀବନ ଦେଖି, ତମପ୍ରତି ମୁଁ ଯେପରି ବ୍ୟବହାର କରିଛି, ସେଥିଲାଗି ଘୋର ଲଜ୍ଜା ଅନୁଭବ କରୁଛି । ଏମାନଙ୍କ ପ୍ରଣୟ ଯେ ଆମ ପ୍ରଣୟଠାରୁ ଅଧିକ ସୁଖଦାୟକ - କାରଣ ନାରୀ ବହୁ ଭିତରୁ ଏକକୁ ବାଛି ତା ପାଦତଳେ ଆତ୍ମସମର୍ପଣ କରେ । ବିବାହିତ ଜୀବନର ମଧୁମୟତା ଓ ନିବିଡତା ମଧ୍ୟ ଏଠି ବରାବର ଦେଖୁଛି । ଏସବୁ ବିଷୟରେ ଆମର ବଡ ଭୁଲ୍ ଧାରଣା ।

ଖାଲି କାଗଜକଲମରେ ତୁମକୁ କି ଆଦର ଦେବି ? ସେଥିରେ କି ମୋର ମନ ଭୁଲୁଛି ? ଆସ, ତୁମକୁ କୋଳରେ ଧରି ନିବିଡ ଆଲିଙ୍ଗନ ଭିତରେ ଦୁଇଗଣ୍ଡରେ ଘନଘନ ଚୁମ୍ବନ ଦିଏ । ଧର .....

ତମର ପ୍ରିୟ



## ପଚିଶି

# ତଥାପି ମନର ସେଇ ଆକାଙ୍କ୍ଷା

ଗୁରୁବାର

ତା-୧୪-୦୪-୩୮

ପାଗ୍‌ଲିରେ,

କାଲି ଗୁଡ୍ ଫ୍ରାଇଡେ । ଆମର କଲେଜ ବନ୍ଦ ହୋଇଥିଲା ସିନା, କମନ୍‌ରୁମ୍ ଓ ଲାଇବ୍ରେରୀ ଖୋଲାଥାଏ - ଏଠି ସେଠି ଯାଇ ବସାଉଠା କରୁଥିଲୁ । ବର୍ତ୍ତମାନ ତା' ବି ବନ୍ଦ । ଚାରିଦିନ କାଳ ଯେ ଯୁଆଡେ ଭାଗ୍ । ଟଙ୍କା ଥିଲେ କୁଆଡେ ବୁଲି ଯାଇଥାନ୍ତୁ । ବାଧ୍ୟହୋଇ କୌଣସି ମତେ ଏଇଠି କାଳ କାଟି ନେବାକୁ ବସିଛି । ଭାଇ ବୋଧହୁଏ କୁଆଡେ ଯିବ । ମୁଁ କିନ୍ତୁ କୁଆଡେ ଯାଉନି ।

ପ୍ରତି ସୋମବାର ଦିନ ଚିଠି ପାଉ । ଏଥର ଦେଲୁନି କାହିଁକି ? ମନ ଭାରି ଖରାପ ହେଲା । ଆମେ ଏଠି ପ୍ରତି ସୋମବାର ଚିଠି ପାଉ ଓ ସେହିଦିନ ଲେଖୁ । ତମେ ସେହିପରି ଗୋଟେ ଦିନ ଠିକ୍ କରି ରଖ । ତାହାହେଲେ ମନ ଅନେକ ଅସ୍ଥିରତାରୁ ରକ୍ଷା ପାଇବ ।

ବର୍ତ୍ତମାନ ପାଗ ଭଲ ହେଲାଣି । କାଲି ରାତିରେ ଶୋଇଲାବେଳେ ଗରମ ବୋଧ ହେଲା । ଆମ ଦେଶ ପରି ଲାଗିବାରୁ ଏବେ ମନ ସେତେ ଘର ପ୍ରତି ଉତ୍‌କଣ୍ଠିତ ହେଉନି - କେବଳ ତୋ'ରି କଥା ପାଇଁ ଛଡ଼ା । ଏ ଦେଶର ପ୍ରକୃତି ବସନ୍ତ ସ୍ପର୍ଶରେ ବର୍ତ୍ତମାନ ଜାଗ୍ରତ ହୋଇଉଠୁଛି । ଗଛ-ଲତା ନବ-କୋମଳ କିଶଳୟରେ ନିଜ ନିଜର ସର୍ବାଂଗ ଆବୃତ କରି ନେଲେଣି । ପାର୍କ-ପ୍ରାନ୍ତରରେ ଡାଫୋଡିଲ୍, ହାୟାସିନ୍ଥ, ଟ୍ୟୁଲିପ୍, ପପି, ପ୍ରିମରୋଜ୍ ପ୍ରଭୃତି ଫୁଲର ବର୍ଣ୍ଣୋତ୍ସବରେ ଏ ଦେଶର ବସନ୍ତ ନିଜକୁ ଅଭିବ୍ୟକ୍ତ କରୁଛି । ଆମ ଦେଶର ଆମ୍ରକୁଞ୍ଜରେ ବକୁଳ-ସମାଗମ ଓ କୋକିଳ-ସଂଗୀତ ମୋର ବରାବର ମନେପଡୁଛି ।

ଲଲାଟେନ୍ଦୁର କଥା ଅନେକ ଦିନ ହେଲା ଲେଖିନୁ । ତୋର ଓ ତା'ର ଫଟୋ ଉଠାଇଥିଲ ପରା ? ଶୀଘ୍ର, ଯଦି ସମ୍ଭବ, ଖଣ୍ଡେ ପଠାଅ । ମୋର ବହି ଓ ଖବରକାଗଜ ବର୍ତ୍ତମାନ ପଠାଇପାର । ନବଭାରତରେ ମୋର ଭ୍ରମଣ କାହାଣୀ ପଢିଲଣି ? କିପରି ଲାଗିଲା ଲେଖିବ । ମୁଁ କିନ୍ତୁ ଏ ପର୍ଯ୍ୟନ୍ତ ଦେଖିନି । ନବଭାରତ ଅଫିସ୍‌କୁ ଖଣ୍ଡେ କଡ଼ା ଚିଠି ଲେଖିଛି ।

ପାଗ୍‌ଲିରେ, କୋଳକୁ ଆସନା, ମୋର କଣ୍ଠଦେଶରେ ତୋର ବାହୁଯୁଗ୍ମ ଛନ୍ଦି ନିବିଡ ଭାବରେ ଯାକି ଧର୍‌ନା, ମୁଁ ତୋର ବକ୍ଷକୁ ମୋ ବକ୍ଷରେ ନିଷ୍ପେଷିତ କରି ତୋର ଗଣ୍ଡରେ ଗଭୀର ଚୁମ୍ବନ ଦିଏରେ .... ଓଃ, କେତେ ସହସ୍ରଥର ଏଇ ସୁଖ ଆମେ ଅନୁଭବ କଲେଣି, ତଥାପି ମନର ସେଇ ଆକାଂକ୍ଷା..... ଓଠ ଦେଖା, ଦୁଇ ଓଠରୁ ସୁଧା ପାନ କରି କ୍ଷୁଧା ମେଣ୍ଟାଏ.......
ଶୀଘ୍ର ଚିଠି ଦେବରେ ........



**ଛବିଶି**

## ଲଲାଟେନ୍ଦୁକୁ ଦେଖିବା ପାଇଁ ଭାରି ଇଚ୍ଛା

Students' Union
King's College
NewCastle on Tyne
22.04.38

ପ୍ରାଣର ଲକ୍ଷ୍ମୀ,

ପାଗ୍‌ଲିରେ, ତୋର ପଣାସଂକ୍ରାନ୍ତିରେ ଲେଖା ହୋଇଥିବା ଚିଠି ଆଜି ପାଇଲି । ମୁଁ ତ ବରାବର ଚିଠି ଦେଉଛି । ଚିଠି ନପାଇ ତୋର ଅଭିମାନ କାହିଁକି ହୋଇଥିଲା ମୁଁ

ଭାବିପାରୁନି । ତୁ'ଯେ ଆର ସପ୍ତାହରେ ଚିଠି ଦେଲୁନି, ଏ ସପ୍ତାହରେ ଅନେଇ ଅନେଇ ଆଜି ଶୁକ୍ରବାର ତୋ ଚିଠି ପାଇଲି - ଏଥିରେ ମୋର ବିରକ୍ତ ହେବାର କିଛି ନାହିଁ ? ମୁଁ ତତେ ବାରଂବାର କହୁଛି ଯେ ପ୍ରତି ସପ୍ତାହରେ ନିଶ୍ଚେ ଚିଠି ଦେବୁ । ତୋର ଚିଠି ନ ପାଇଲେ ମୋର କାମ ବନ୍ଦ । ଏ କଥାଟା କେତେ ଥର କହିବି ? ଘରୁ ଖୁବ୍ ଫୂର୍ତ୍ତିରେ ବାହାରେ - ବାଟଯାକ ଭାବିଭାବି ଆସୁଥାଏ ଆଜି ଚିଠି ଆସିଥିବ - କଲେଜକୁ ଆସି ଦପ୍ତରୀକି ମାଗିଲେ ସେ ଯେତେବେଳେ ନାହିଁ କରିଦିଏ, ମନ ଏମିତି ଖରାପ ହୁଏ ଯେ, କ'ଣ କହିବି । ଆଉ ପଢ଼ିବାକୁ ଇଚ୍ଛା ହୁଏନି । ଏଠି ସେଠି ଖବରକାଗଜ ଓଲଟାଏ - ବସି ଏଣୁତେଣୁ ଭାବେ - ସେ ଦିନ ଯାକ ମନ ଖରାପ । ରାତିରେ ଶୋଇବାକୁ ଗଲାବେଳକୁ କାଲି ଚିଠି ଆସିଥିବ ବୋଲି ଭାବି ଶୁଏ । ସକାଳୁ ଉଠି ଭାବେ, ଆଜି ଚିଠି ଆସିଥିବ । ସେଦିନ ପୁଣି କଲେଜ୍‌କୁ ଯାଇ ନିରାଶ । ସେଦିନ ପୁଣି କାମ ବନ୍ଦ । ଏମିତି ତୁ ଯଦି କରୁ କିମିତି ହେବ କହିଲୁ ? ଧନଟି ପରା, ଚିଠି ଲେଖା କୌଣସି ସପ୍ତାହରେ ବନ୍ଦ କରିବୁନି ।

ଲନ୍ଦୁ - ସେଇ ଏଂଚଡ଼ ଯେ ଏତେଟିକେ ହେଇଥିଲା ଯେ, ତାକୁ ଧରିବାକୁ ମତେ ଭାରି ଭୟ ଲାଗୁଥିଲା, କାଳେ ତା ହାଡ଼ ଫାଡ଼ ଭାଙ୍ଗିଯିବ - ସେ ପୁଣି ତମ ଘରଯାକୁ ବ୍ୟସ୍ତ କରୁଛି, ଖୁସି କରୁଛି, ରାତିରେ ସମସ୍ତଙ୍କୁ ଉଠଉଛି - ଏସବୁ ଶୁଣି ମୋର କଳ୍ପନା ଭୀଷଣ ଭାବରେ ଆଲୋଡ଼ିତ ହୋଇ ଉଠୁଛି । ତାକୁ ଦେଖିବା ପାଇଁ ମୋର ଭାରି ଇଚ୍ଛା ହେଉଛି ।

ଆଜି Mr and Mrs Aarron ନାମକ ଭାରତୀୟ ଭଦ୍ରଲୋକ ଓ ତାଙ୍କ ସ୍ତ୍ରୀ ଏଠାକୁ ଆସିଛନ୍ତି । ମିସେସ୍ ଆରନ୍ କିଛି କହିବେ, ଅନ୍ତର୍ଜାତୀୟ ସଭାରେ । ସେମାନେ ଭାରତୀୟ ଖ୍ରୀଷ୍ଟାନ୍ । ଗ୍ଲାସ୍‌ଗୋରେ ଥାନ୍ତି । ସେଠି ମି. ଆରନ୍ ଅନ୍ତର୍ଜାତୀୟ ସଭାର ସଭାପତି - ଗୋଟେ ପ୍ରକାର ଚାକିରି । ତାଙ୍କ ସାଥିରେ ତାଙ୍କର ଛୋଟ ପୁତୁରା ଓ ଝିଅାରୀ ବି ଆସିଛନ୍ତି । ସମସ୍ତେ ବେଶ୍ ଇଂରେଜୀ କହୁଛନ୍ତି । ମିସେସ୍ ଆରନ୍ ବେଶ୍ forward, ସମସ୍ତଙ୍କ ସାଥିରେ କଥା, ଥଟ୍ଟା, ଲାଜ-ସଂକୋଚ ଆଦୌ ନାହିଁ - ଅଥଚ ସବୁଟା ଶ୍ଳୀଳତାଯୁକ୍ତ । ମୁଁ ତାଙ୍କପରି ହେଲେ forward ହୋଇପାରନ୍ତି ! ଏତେ ଲାଜକୁଳା ମତେ ବିଧାତା କାହିଁକି କଲା - ସମସ୍ତେ ଚା' ଖାଇ ଥଟ୍ଟା କରୁଥାନ୍ତି, ମତେ ତାଙ୍କ ସାଥିରେ ଯୋଗଦେବାକୁ ଏତେ ସଂକୋଚ ଲାଗୁଥାଏ !

ନବଭାରତରେ ମୋର ପ୍ରଥମ କିସ୍ତି ଭ୍ରମଣ କାହାଣୀ ପଢ଼ିବ - ସେଥିରେ ଆରମ୍ଭରେ ତମର କଥା ଅଛି । ଜାପାନୀ ବିଷୟଠୁ ସେ ଲେଖାଟା ଭଲ । ମୁଁ କିନ୍ତୁ ଏଯାଏ କୌଣସି ସଂଖ୍ୟା ପାଇନି । ଚିନ୍ତାମଣିକୁ ଆଚ୍ଛାକରି ଦି'ପଦ ଶୁଣେଇ ଖଣ୍ଡେ ଚିଠି ଦେଇଛି । ତମେ ମୋର ବହିତକ ପଠେଇବାକୁ ଯୋଗାଡ଼ କର ।

ମୋର ଟଙ୍କା ପାଇଁ ବ୍ୟସ୍ତ ହେବାର ବଡ଼ କାରଣ ଯେ ଦୁର୍ଗାର ଯିବାର ବେଳ ହେଲାଣି । ଏଇକ୍ଷଣି ତା'ର ପରୀକ୍ଷା ଫିସ୍ ପ୍ରଭୃତିରେ ଅନେକ ଟଙ୍କା ଲାଗିବ । ପରୀକ୍ଷା ଦେଇ କ'ଣ ବା କରିବ ସେ ? ବୁଲିବାକୁ ଯିବ ତ ? ସେଥିପାଇଁ ଅଜସ୍ର ଟଙ୍କା ଦରକାର ।

ମୋର ଆରବର୍ଷର ଫିସ୍ ପ୍ରଭୃତି ଦରକାର । ମୋର ବି ଗ୍ରୀଷ୍ମବନ୍ଦରେ ଅକ୍ସଫୋର୍ଡ ପ୍ରଭୃତି ଯିବାର କଥା । ଏତେ ଟଙ୍କା ଆସିବ କୁଆଡୁ ? ବାପାଙ୍କ ଉପରେ ଯେଉଁ ଚାପ ପଡୁଛି, ସେଥିରୁ ତାଙ୍କୁ କୁଆଡୁ ହେଲେ କିମିତି ଉଦ୍ଧାର କରିବାକୁ ମୁଁ ପାଗଲ ପରି ଚେଷ୍ଟା କରୁଛି । କିନ୍ତୁ ସବୁଆଡେ ନିରାଶ ହୋଇ ବଡ ଯନ୍ତ୍ରଣା ଭୋଗୁଛି ।

ଆଶାକରେ ମା'-ପୁଅ ଭଲ ଥିବ । ମୋର ଆଲିଙ୍ଗନ ଓ ଚୁମ୍ବନ ନେବ । ଶୀଘ୍ର ଚିଠି ଦେବ ।

ଇତି
ତମର ପ୍ରିୟ

●

**ସତେଇଶି**

## ଚିଠି ପାଇଲା ଦିନ ଫୂର୍ତ୍ତିରେ ରହେ

Students' Union
King's College
Newcastle on Tyne
28.04.38

ପ୍ରାଣର ପାଗଲି,

ଧନରେ, ଆଜି ସୋମବାର । ତୋର ଚିଠି ଆଜି ପାଇଲିନି । ତୁ ବଡ ଅବହେଳା କରୁଛୁ । ମନ ଭାରି ଖରାପ ହେଲା । ତୋର ଚିଠି ପାଇଲା ଦିନ ମୁଁ ଫୂର୍ତ୍ତିରେ ରହେ । ମୋର ତ ଜଗତରେ କେହି ନାହିଁ । ସେଥିରେ ପୁଣି ଆର୍ଥିକ ଦୁରବସ୍ଥା । ମନରେ ସବୁବେଳେ ଅଶାନ୍ତି । ତୋ'ଠୁ ଖଣ୍ଡେ ଚିଠି ପାଇଲେ ମନରେ ହୁଏ, ଜଣେ ହେଲେ ମୋର ବୋଲି ଅଛି ଯେ'କି ମୋର ଦୁଃଖରେ ଦୁଃଖିତ ଓ ମୋତେ ଜଂଜାଳରୁ ରକ୍ଷା କରିବା ଲାଗି ବ୍ୟସ୍ତ । ସେ ଭାବନା ମନକୁ ଦମ୍ଭ ଦିଏ । ହଉ, କୌଣସିମତେ ଏଇମିତି ଦିନ କଟିଯିବ ଭାବି, ମନକୁ ମୁଁ ସଂଯତ କରିଆଣେ । ତୁ'ତ ଏସବୁ ଆଦୌ ଭାବୁନୁ । ବାରଂବାର କହିଲେ ମଧ୍ୟ ତୋର ଚିଠିଦିଆରେ ଅବହେଳା । ମତେ ତୁ କେତେ ମନୋକଷ୍ଟ ଦେଉଛୁ ତା' ତୁ ଜାଣିପାରିବୁନି - କାରଣ ତୁ ସ୍ନେହ କରୁନା ।

କିଛିଦିନ ଖରା କରିଥିଲା, ବର୍ତ୍ତମାନ ପୁଣି ଶୀତ । ମଝିରେ ମଝିରେ ବର୍ଷା ହେଉଛି, ଆକାଶ ମେଘାଚ୍ଛନ୍ନ ଓ କୋହଲିଆ ପବନ ଦେଉଛି । ରାତିରେ ସେଇମିତି ୪/ ୫ଟା କମ୍ବଳ ଘୋଡିହୋଇ ଶୋଇବାକୁ ପଡୁଛି । ପୂର୍ବପରି ଦିନରେ ମଧ୍ୟ ଘରେ ନିଆଁ ଜାଳି ବସିବାକୁ ପଡୁଛି । ବାହାରକୁ ବାହାରିଲେ ସେହିପରି ମୋଟା ଓଭର୍‌କୋଟ୍ ଲଗେଇବାକୁ ପଡୁଛି । ଦିନ ବଡ ଅବଶ୍ୟ ହେଲାଣି - ଅପରାହ୍ନ ୯ଟାକୁ ଏବେ ରାତି ହେଉଚି । ଖରା ବି ପଡୁଛି ବେଳେବେଳେ - କିନ୍ତୁ ସେ ଖରା ଆମ ଦେଶ ଖରା ପରି ଆଦୌ

ଟାଣ ନୁହେଁ । ଆମ ଦେଶର ପୁଷମାଘ ମାସର ବୁଡିଆସୁଥିବା ବା ସୂର୍ଯ୍ୟ ଉଇଁଆସୁଥିବା ବେଳର ଖରାପରି, ବଡ କଅଁଳ । ଏଠି ଦିନଟା ଯାକ ସକାଳ ପରି ଲାଗେ । ଆମ ଦେଶରେ ଖରାକୁ ଅନେଇ ସମୟ କହିହେବ । ଏଠି ତା' ଅସମ୍ଭବ । ଏଠି ସବୁବେଳେ ଘଡି ଦେଖିବାକୁ ହେବ ।

ଗତ ଏପ୍ରିଲ୍ ୨୩ ତାରିଖ ସେକ୍ସପିୟରଙ୍କ ଜନ୍ମଦିନ । ସେଦିନ ତାଙ୍କ ଗାଁରେ ବେଶ୍ ଉତ୍ସବ ହେଲା । ସେ ଗାଁ ଏଠିକି ଦୂର । ମୋର ବଡ ଇଚ୍ଛା ଥିଲା ଯିବା ପାଇଁ, କିନ୍ତୁ ଟଙ୍କା ନାହିଁ - ଯାଇ ପାରିଲିନି । ମନ ବଡ ବ୍ୟସ୍ତ ହେଉଛି । ଟଙ୍କା ପାଇଁ ହାତଗୋଡ ବାନ୍ଧି ବସିଛି । କେତେଆଡେ ଯା'ନ୍ତି, କେତେ କଥା ଦେଖନ୍ତି । କିମିତି ଯିବି ? ବାଧ୍ୟ ହୋଇ ମତେ ଚାଉଳ-ପରିବା ସିଝେଇ ଖାଇ ଏଇଠି ପଡ଼ି ରହିବାକୁ ହେଉଚି । ଏଥିରୁ ତୁ ମୋର ମାନସିକ ଅବସ୍ଥା ବୁଝିପାରିବୁ । କାହାକୁ କହିବୁନୁ । ମୋର ଦୁଃଖ ଓ ଅପମାନ କେବଳ ତୁ-ମୁଁ ଜାଣିବାର ଓ ସହିବାର କଥା । ତୁ ଯଦି ମୋ ପାଇଁ ସହାନୁଭୂତି ଅନୁଭବ କରୁ ଓ ଟୋପାଏ ଲୁହ ଢାଳୁ ତାହାହେଲେ ମୋର ଦୁଃଖ ଓ ଅପମାନ ରୂପାନ୍ତରିତ ହୋଇ ଗୌରବରେ ପରିଣତ ହେବ ।

ହେମବାବୁ ମତେ ୫ ପାଉଣ୍ଡ ଦେବେ ବୋଲି କହି ୩ ପାଉଣ୍ଡ ଦେଇଛନ୍ତି, ମାସ ମାସ କରି । ଦୁଇ ପାଉଣ୍ଡ ଖର୍ଚ୍ଚକରି ସାରିଥିଲି - ଯିବାଆସିବା, ଟିକଟ୍, ଅଗଡ ବଗଡରେ - ଦୁର୍ଗାକୁ ସାମାନ୍ୟ ସାମାନ୍ୟ କଥା ପାଇଁ କେତେ ହାତ ପତେଇବି କହିଲୁ ? ଗୋଟେ ପାଉଣ୍ଡ ଥିଲା, ଶନିବାର ଦିନ ହଳେ ଜୋତା ଓ ଗୋଟେ କମିଜ କିଣିଲି । ଏଗୁଡ଼ାକ ନିହାତି ଦରକାର ହେଲା । ବର୍ତ୍ତମାନ ମୁଁ କପର୍ଦ୍ଦକ ଶୂନ୍ୟ ।

ତୁ କିଛି ଭାବିବୁନି । ଚିଠି ଲେଖିବାକୁ ଆରମ୍ଭ କଲାବେଳେ ଏସବୁ ଲେଖିବି ବୋଲି ଭାବି ନଥିଲି । ଲେଖୁ ଲେଖୁ ଲେଖିହେଲା । ତୁ କେବଳ ମତେ ଭଲକରି ଚିଠି ଲେଖି ବରାବର ।

କିମିତି ଅଛୁରେ ? ତତେ ଓ ତୋର-ମୋର-ଉଭୟର ଆଦର ପ୍ରତିମାକୁ କେବେ ଦେଖିବି ? ତତେ ବକ୍ଷରେ ଓ ତାକୁ କୋଳରେ ଧରି କେବେ ଦେହର ଓ ମନର ତୀବ୍ର ବିରହ ଦହନ ମେଣ୍ଟାଇବି ? ତୁ ଆ, ତୋର ଅଂଗ-ଲତାକୁ ଟେକି ନେଇ କୋଳରେ ଥୁଏ, ଧୀରେଧୀରେ ତୋର ସମସ୍ତ ଆବରଣ ଫିଙ୍ଗିଦେଇ ତୋର ନଗ୍ନ ଦେହକୁ ମୋ ବକ୍ଷରେ ନିପୀଡିତ କରେ .... ତୋର ଗଣ୍ଡଦ୍ୱୟରେ ଉପର୍ଯ୍ୟୁପରି ଚୁମ୍ବନ ଦେଇ ପିଚ୍ଛିଳ ଓ କ୍ଷତାକ୍ତ କରେ । ଗଣ୍ଡର ଚୁମ୍ବନ-ରସ ତୁ ପୋଛନାରେ, ମୁଁ ଚୁମ୍ବନ ଦେଇ ପୋଛିନେବି, ପୁଣି କୋମଳ ଭାବରେ କ୍ଷତକୁ ଚୁମ୍ବନ ଦେଇ ତୋର ଜ୍ୱାଳା ଶାନ୍ତ କରିବାକୁ ଓ ଜିହ୍ୱାରେ ପୋଛି ପୋଛି ସ୍ନିଗ୍ଧ କରିବାକୁ ଚେଷ୍ଟା କରିବି । ତୁ ଖାଲି, ତୋର ସର୍ବସ୍ୱ ସମଗ୍ର ଭାବରେ ମୋତେ ଅର୍ପଣ କରି ମୋ ବକ୍ଷରେ ଶାନ୍ତ ହୋଇ ପଡିରହ - ମୁଁ ତତେ ଉପଭୋଗ କରି ପ୍ରମାଣ କରେ ଯେ ତୋର ଦେହ, ତୋର ମନ, ତୋର ସାମାନ୍ୟତମ ଲୋମ ପର୍ଯ୍ୟନ୍ତ ସବୁ ମୋର ମୋର ମୋର ।

ତୋର ପାଗଳ ଓ ଦୁଃଖୀ



**ଅଠେଇଶି**

# ଦୁଃଖ ବିପଦରେ ତୁଇ ଏକା ମୋର ବନ୍ଧୁ

Students' Union
King's College
New castle on Tyne
02.05.1938 ସୋମବାର

**ସ୍ନେହର ଲକ୍ଷ୍ମୀ,**

ତୁ ପ୍ରତି ସୋମବାର ଚିଠି ଦେଲେ ମୁଁ ଏଠି ପ୍ରତି ସୋମବାର ପାଇବି । ମୁଁ ତ ପ୍ରତି ସୋମବାର ଦେଉଛି । ବର୍ତ୍ତମାନ ଡାକ ୭ ଦିନରେ ପହଁଚୁଛି । ତେଣୁ ତମେ ସୋମବାର ଦିନ ଦେଲେ ଏଠି ସୋମବାର ଦିନ ଆମେ ପାଇବା କଥା । ଏବେ ଦେଶରୁ କେବଳ ତୋରି ଚିଠି ମାତ୍ର ସପ୍ତାହରେ ଥରେ ଆସେ । ମୁଁ ସେଇ ଚିଠି ଖଣ୍ଡକୁ ଅନେଇ ବସିଥାଏ । ତୁ ସେଥିରେ ବି ମଝିରେ ମଝିରେ ହେଳା କରୁଛୁ । ଏ ପର୍ଯ୍ୟନ୍ତ ନବଭାରତ ପାଇନି । ଏ ମାସରେ ତେଣୁ ଲେଖା ପଠେଇନି । କାଲିଆଡକୁ ଦେଖିବି, ଯଦି ଲେଖି ପକାଏ ତେବେ ପଠେଇବି । ମଉସା ଖଣ୍ଡେ ଚିଠି ଦେଇ ବେଶ୍ କଥାଗୁଡିଏ କହି ଭାରି ଆଶା ଦେଇଥିଲେ । ସେ ପ୍ରାୟ ମାସକ ତଳେ । ତା'ପରେ ଦି'ଥର ଚିଠି ଦେଲିଣି, ଉତ୍ତର ନାହିଁ । ଏଇଥିରୁ ସବୁ ଜାଣିବୁ ତୁ ମୋର କ'ଣ ? ଦେଶକୁ ଫେରିଲେ, ଚାକିରି ପାଇଲେ ହୁଏତ କେତେ ଲୋକ ପାଖକୁ ଆସିବେ । କେତେ ସ୍ତବ-ସ୍ତୁତି ବି ଶୁଣିବାକୁ ପାଇବି । କିନ୍ତୁ ବର୍ତ୍ତମାନର ବିପଦ ବେଳେ କିଏ ପଚାରେ ? ଦୁଃଖ ବିପଦରେ ତୁଇ ଏକା ମୋର ବଂଧୁ ।

ଭାଇ ତ ଜୁନ୍ ୧୫ ତାରିଖରେ ଚାଲିଯିବ । ପୁଣି ଦୀର୍ଘ ବର୍ଷେକାଳ ମୋର କେମିତି କଟିବ କେଜାଣି । ବର୍ତ୍ତମାନ ମୁଁ ମୋର ନିଜ ପଢାରେ ବଡ ବ୍ୟସ୍ତ । ଏ ପର୍ଯ୍ୟନ୍ତ ଏଠି ଶୀତ ଛାଡିନି । ଖରା ହେଉଛି, କିନ୍ତୁ କୋହଲିଆ ପବନ ଦେଉଛି, ବେଳେ ବେଳେ ମେଘ ହୋଇ ଅନ୍ଧାର ହେଲେ, ପୁଣି ଡିସେମ୍ବର ମାସ ପରି ଶୀତ ହୁଏ । ଘରକୁ ଥରି ଥରି ଯିବାକୁ ହୁଏ । ତେବେ ପୂର୍ବ ଅପେକ୍ଷା ବର୍ତ୍ତମାନ ଏଠାରେ ବେଶ୍ ରକମ ଆରାମଦାୟକ ହେଲାଣି । ପ୍ରକୃତି ନବପଲ୍ଲବ ମଣ୍ଡିତ ଓ ନବପୁଷ୍ପିତ ହୋଇ, ନୟନସୁଖଦ ହେଇଛି । ବେଳେବେଳେ ବେଶ୍ ଗରମ ହେଲେ, ଚାରିଆଡର ସୁନ୍ଦର ଶ୍ୟାମଳ ପ୍ରକୃତି ଆମ ଦେଶ କଥା ସ୍ମରଣ କରାଇ, ମନରେ ଉଲ୍ଲାସ କରାଏ ।

ଧନରେ ତୁ ମୋର ଚିଠି ପଢି ବିରକ୍ତ ହେଉଥିବୁ ଯେ, ମୁଁ ସବୁବେଳେ ବିଷଣ୍ଣ ଅସନ୍ତୁଷ୍ଟ । ପ୍ରକୃତରେ ମୁଁ ତାହା ହିଁ । ମୁଁ କେବେ ହେଲେ ଭୁଲିଯାଉଛି ଯେ, ମୋର ବର୍ତ୍ତମାନର ଏ ପ୍ରବାସ, ଏ ଅଧ୍ୟୟନ, ଏ ଅର୍ଥକଷ୍ଟ - ସବୁ ଦାରିଦ୍ର୍ୟ ଘୁଁଚେଇବା ପାଇଁ, କେବଳ ସମାଜରେ ଟିକିଏ ସ୍ଥାନ ପାଇବା ପାଇଁ । ଏଇତକ ପାଇବା ଲାଗି ମୋର ଜୀବନର ଅଧେ କଟିଗଲା । ଏଠୁ ଫେରିଲେ କରଜ ଶୁଝୁ ଶୁଝୁ ଜୀବନର ଆଉ ଅଧକ କଟିଯିବ । ଏସବୁ

କଥା ଯେତେବେଳେ ଭାବେ ଏ ଜୀବନ ପ୍ରତି ମୋର ବିତୃଷ୍ଣା ଆସେ- ଭଗବାନ, ଦେଶ, ଜୀବନ, ସୁଖ-ଭୋଗ - ଏସବୁ ଅର୍ଥହୀନ ହୋଇଯାଏ । ତା'ପରେ ମୁଁ ତତେ ଛାଡି ଏଠି ଆସି ହାତରେ ରୋଷେଇ କରୁଛି - ଏସବୁ କ'ଣ ମନ ଉପରେ କ୍ରିୟା କରିବନି ? ଅନେକ ଭାରତୀୟ ଛାତ୍ର ଏଠି ଚାକିରି ପାଇଲେ ରହିଯିବେ ବୋଲି କହନ୍ତି । ମୁଁ କହେ, ମତେ କୋଟିଏ ଟଙ୍କା ଦେଲେ ବି ମୁଁ ଏଠି ରହିବିନି । ମୁଁ ମୋ ଦେଶର କୁଡିଆଘରକୁ ଚାଲିଯିବି । ଧନରେ, ଦେଶ ଓ ଘରର ଆକର୍ଷଣ ଯେ ତୋ'ରି ଆକର୍ଷଣ, ଏକଥା କ'ଣ ତତେ ବୁଝେଇବି ?

ଧନରେ, ତୋର ମନେପଡୁଛି ଭବାନୀପାଟଣା କଥା ? ଘରୁକୁ ଫେରିଲାବେଳେ ମୁଁ ପଛବାଟେ ବୁଲି ସିଧାସିଧା ରୋଷଘରକୁ ଚାଲିଯାଏ - ତୁ ଚୁଲିମୁଣ୍ଡରେ ବସି ଯାହା କରୁଥାଉନା କାହିଁକି, ତତେ ଟେକି ଧରି ତୋର ବକ୍ଷ ଫିଟେଇ ତତେ ଆଲିଙ୍ଗନ ଦେଇ ହାଲିଆ କଲେ ଯାଇ କଥା । ମୁଁ ଫେରିବାକୁ ବସେ, ତୁ ଡାକୁ - ମୁଁ ପୁଣି ବାହାରେ ଯିବାକୁ, ତୁ ପୁଣି ଧରିରଖୁ ..... ଏକ ଏକ ରାତିରେ ଆମର ସମ୍ଭୋଗ ଲାଗି ଘର ଅଣ୍ଟେନି, ରୋଷଘରର ନିକାଞ୍ଚନତା ଆମେ ଲୋଡୁ । ମୁଁ ଯାଇ ଅପେକ୍ଷାକରି ଅନ୍ଧାରରେ ବସିଥାଏ । ତୁ ଅଣ୍ଡାଳି ଅଣ୍ଡାଳି ଯାଉ ଯାଉ ମୁଁ ତତେ ଆଲିଙ୍ଗନ ଦେଇ ଆଶ୍ରୟ ଦିଏ । ଆଶ୍ଳେଷର ସଂଘର୍ଷରେ ତୋର ବସ୍ତ୍ର ଖସିପଡେ - ସେଇ ଆମର ପରମ ଲୋଭନୀୟ ଶଯ୍ୟା ହୋଇ ଆମର ମିଳନକୁ ଆଶ୍ରୟ ଦିଏ । ଧନରେ, ବେଳେବେଳେ ଏସବୁ ମନେପଡି ମନ ଉଚ୍ଛନ୍ନ ହୁଏ । ଏସବୁ ମତେ ପାପରୁ ବି ରକ୍ଷା କରିଛି ଏଯାଏଁ, ନହେଲେ ମୁଁ କେଡ଼େ ତରଳ ଜାଣୁତ ? - ସପ୍ତାହରେ ଏକାଧିକ ଚିଠି ଦେ - ଲଦ୍ଦୁ କ'ଣ କରୁଛି ଲେଖ୍ । ସୋମବାର ଚିଠି ଦେବାକୁ ଚେଷ୍ଟା କର । ।ଇତି।

ତୋର ପ୍ରିୟ

●

ଅଣତିରିଶି

## ମୁଁ ତ ତତେ ସବୁବେଳେ ଭାବୁଛି

Students' Union
King's College
Newcastle on Tyne
06.05.38

ପ୍ରାଣର ପାଗଳି,

ଧନରେ, ତୋର ୨୮ ତାରିଖର ଚିଠି ଆଜି ପାଇଲି । ଆଜି ତ ୬ ତାରିଖ । ଆମର ବିବାହ ସ୍ମୃତି ଦିବସ ମେ ୮ ତାରିଖ । ହୁଏତ ସେଦିନ ତୁ ମୋର କୌଣସି ଚିଠି ପାଇପାରୁ । କିନ୍ତୁ ତୁ ବେଶି ଚିଠି ଦେଉନୁ କାହିଁକି । ସପ୍ତାହରେ ତୋରି ଏକମାତ୍ର ଚିଠି ଦେଶରୁ ଆସୁଛି । ସେଇ ଚିଠି ଖଣ୍ଡକୁ ଅନେଇ ରହିଥାଏ । ତୁ ସପ୍ତାହକୁ ଦି'ଖଣ୍ଡ କରି

ଦେ । କେତେଥର କହିବି ଯେ, ତୋର ଚିଠି ପାଇଲେ ମୋର ଦିନ ବଡ ସୁଖରେ କଟେ । ଆଜି ଚିଠି ପାଇଲି । ଆଜି ମନ ବଡ ଖୁସି । ଜଣେ ଭଦ୍ରଲୋକ କିଛି ଟଙ୍କା ଦେବାର ଆଶା ଦେଇଛନ୍ତି, ତାଙ୍କ ଚିଠି ବି ଆଶା କରୁଛି ପାଇବି ବୋଲି । କିନ୍ତୁ ଏସବୁ କ୍ଷେତ୍ରରେ ଯାହା ହୁଏ, ତାହା ହିଁ ହେଉଛି । ମୁଁ ଗତ ଦୁଇସପ୍ତାହ ହେବ ଅନେଇ ଅନେଇ ତାଙ୍କଠୁ ଚିଠି ପାଉନି । ତେଣୁ ମନ ବଡ ବ୍ୟସ୍ତ ହେଉଥାଏ । କିନ୍ତୁ ଆଜି ତୋର ଚିଠି ପାଇଛି । ତେଣୁ ସେସବୁ ପାଇଁ ଖାତିର ନାହିଁ । ହେଲେ ହେଲା ନ ହେଲେ ନାହିଁ - ଏଇ ଭାବ । ଧନଟି ପରା, ଏ ସବୁ ବୁଝି ବେଶୀ ଚିଠି ଦେ । ପ୍ରତି ସପ୍ତାହରେ ଖଣ୍ଡେ ନିୟମିତ ଚିଠି ଛଡା, ଅନ୍ୟ ଯେଉଁଦିନ ତୋର ଚିଠି ଲେଖିବାକୁ ଇଚ୍ଛା ହେବ, ସେଦିନ ଖଣ୍ଡେ ଚିଠି ପକେଇଦେବୁ । ତୋର ସାମାନ୍ୟ ପରିଶ୍ରମ ମତେ ଯେ ପ୍ରଚୁର ଆନନ୍ଦ ଦେବ, ଏଇ ଦୂର ନିଃସଙ୍ଗ ବିଦେଶରେ ମୋର ବିଷଣ୍ଣ ଜୀବନରେ ଯେ ଆଶାର ସଂଚାର କରିବ,ଏ କଥା ଭାବିବୁ । ଏସବୁ ଭାବିଲେ ତୁ ଯଦି ମତେ ପ୍ରକୃତରେ ସ୍ନେହ କରୁ, ତେବେ ପତ୍ର ଦେବାକୁ କୁଣ୍ଠିତ ହେବୁନି ।

ଧନରେ, ତୁ କ'ଣ ବ୍ୟସ୍ତ ହେଉଛୁ । ମୁଁ ତ ତତେ ସବୁବେଳେ ଇ ଭାବୁଛି, କିମିତି ଶୀଘ୍ର ଏଠୁ ବିଦାୟ ନିଅନ୍ତି, ଏଇ କେବଳ ମୋର ଭାବନା । ବର୍ତ୍ତମାନ ଏଠି ପ୍ରକୃତରେ ଗ୍ରୀଷ୍ମ ଆରମ୍ଭ ହେଲାଣି । ଖରା ତେଜ ହେଲାଣି । ଶୀତ ସେତେ ନାହିଁ - ତଥାପି ରାତିରେ ୩/୪ କମ୍ବଳ ଘୋଡିହୋଇ ଶୋଉଛୁ । ଦିନ କିନ୍ତୁ ବହୁତ ବଡ ହେଲାଣି । ଛ'ଟା ସକାଳରୁ ଅପରାହ୍ନ ୧୦ଟା ପର୍ଯ୍ୟନ୍ତ ସୂର୍ଯ୍ୟାଲୋକ । ମଣିଷ କେତେ ବା କାମ କରିବ ? ଏତେ ଶୀଘ୍ର ଦିନ ଆରମ୍ଭ ହେଇଯାଉଛି ଯେ, ମଣିଷ ଶୋଇପାରୁନି । କିନ୍ତୁ ସୂର୍ଯ୍ୟର ତେଜ ବଢିବାରୁ ଓ ପ୍ରକୃତି ଶ୍ୟାମଳିତ ହେବାରୁ ବରାବର ଦେଶ କଥା ମନେ ପଡୁଛି । କିମିତି ଶୀଘ୍ର ଏଠୁ ମୁକ୍ତ ହେଇ ତୋ ପାଖେ ପହଞ୍ଚିବି, ଏଇ କେବଳ ଚିନ୍ତା । ଏ ଚିନ୍ତା ମତେ ଭଲ । ମୁଁ ବେଶ୍ ନିର୍ମଳ ଅଛି ଏଥିପାଇଁ, ତୁ ତ ଜାଣୁ ମୁଁ କିପିରି ଢଳିଯିବା ଲୋକ । କିନ୍ତୁ ତୁ ଥିବାରୁ ଶ୍ୱେତଚର୍ମର କୌଣସି ପ୍ରକାର ଆକର୍ଷଣ ମୁଁ ଅନୁଭବ କରିପାରୁନି । ମୁଁ ଭାବୁଛି, ମୋର ଆସିବାଟା ଠିକ୍ ସମୟରେ ହୋଇଛି । ଆମେ ଦୀର୍ଘ ଦାମ୍ପତ୍ୟଜୀବନ ଯାପନ କଲେ, ଲଲାଟେନ୍ଦୁ ଆସିଲା, ତେବେ ଯାଇ ଆସିଲି । ତତେ ପ୍ରକୃତରେ ଉପଭୋଗ ନ କରି ଏଠାକୁ ଆସିଥିଲେ, ତୋର ମୋର ପ୍ରେମ ଥାଉ ପଛେ, ଏଠି ମୁଁ ବିପଦାପନ୍ନ ହୋଇଥାନ୍ତି । ଏଠି ବା ବିଶେଷ କ'ଣ ? ଜଗତରେ କେଉଁଠି ନାରୀ ଦୁର୍ଲଭ ? ଦୁଇଟି ପୁରୁଷ ସ୍ତ୍ରୀର ଅନାବିଳ ପ୍ରେମ ଜଗତରେ ସବୁଠି ଦୁର୍ଲଭ । ବ୍ୟଭିଚାର ଓ ଅନାଚାର ସବୁଠି ସୁପ୍ରାପ୍ୟ । ଆମର ଜଣେ ଭାରତୀୟ, ପ୍ରାୟ ଅଧାବୁଢା-ଛାତ୍ର, କେବଳ ପଇସା ଖର୍ଚ୍ଚ କରି ଗୋଟାକ ପରେ ଗୋଟାଏ ଟୋକି ରଖି ଛାଡୁଛି ।

ଭାଇ ବର୍ତ୍ତମାନ ପଢାପଢିରେ ବ୍ୟସ୍ତ । ତା'ର ପରୀକ୍ଷା ଜୁନ୍‌ରେ । ପରୀକ୍ଷା ସରିଲେ ସେ କ'ଣ କରିବ ଠିକ୍ କରିନି । ତେବେ ତା'ର ଷୋଳପଣ ମନ ଘରକୁ ଫେରିଯିବ ।

ଓଡ଼ିଶା ସରକାର ତାକୁ ବୃତ୍ତି ଦେଉଛନ୍ତି ବୋଲି ମଉସା ଲେଖିଥିଲେ - ହଜାରେ ଟଙ୍କାର । କିନ୍ତୁ ସେ ଟଙ୍କା ତ ଯଥେଷ୍ଟ ନୁହେଁ । ତା'ଛଡା ଏବେ ପରୀକ୍ଷା ଦେଇ ପ୍ରାୟ ୮ମାସ ଖଣ୍ଡେ ଏଠି ସେ ବସି କ'ଣ କରିବ ?

ଲଲାଟେନ୍ଦୁର କଥା ବରାବର ଲେଖିବୁ । ତାକୁ ଦଶମାସ ହୋଇଗଲା । ସେ କ'ଣ କଥା କହିଲାଣି ? ଚାଲିଲାଣି ? କ'ଣ ଖାଉଛି ? ଡମ ଦୁଧ ତ ତା'ର ଆଦୌ ଖାଇବା ଉଚିତ ନୁହେଁ । କନି କେତେଟି ହେଲାଣି ? ମୁଁ ତାକୁ ଗୁରୁଣ୍ଡିବାର ଦେଖିଥିଲି ।

ଏଠାର ଗୋଟିଏ ସ୍ୱାସ୍ଥ୍ୟ-ବିଷୟକ ପତ୍ରିକା ମୁଁ ସଂଗ୍ରହ କରି ରଖୁଛି ତୁମ ପାଇଁ । ସେଥିରେ ସୁନ୍ଦର ସ୍ୱାସ୍ଥ୍ୟବତୀ ରମଣୀମାନଙ୍କର ନଗ୍ନ ଚିତ୍ର ବାହାରେ । ସେଇଥିରୁ ଏ ଦେଶରେ ନାରୀମାନଙ୍କର ସୌନ୍ଦର୍ଯ୍ୟର ଆଦର୍ଶ ଓ ତା ପାଇବା ଲାଗି ଚେଷ୍ଟା ବୁଝିପାରିବ । ମୋର ବହି ପଠାଅ । ଶୀଘ୍ର ଚିଠି ଦିଅ ।



## ତିରିଶ

## ଲଲାଟେନ୍ଦୁ ଏମିତି ଦୁଷ୍ଟ ହେଉଛି

Students' Union<br>King's College<br>NewCastle on Tyne<br>09.05.38

ପ୍ରାଣର ଲକ୍ଷ୍ମୀ,

ପାଗ୍‌ଲିରେ, କାଲି ଆମର ବିବାହ-ସ୍ମୃତି ଦିବସଟି ମୋର ବେଶ୍ ଭଲରେ ଭଲରେ କଟିଛି । କାଲି ରବିବାର । ଆଗରୁ ଜଣେ ଭଦ୍ରମହିଳା ଚା' ଖାଇବାକୁ ଡାକିଥିଲେ । ସକାଳ ଓ ମଧ୍ୟାହ୍ନ ବୁଲାବୁଲିରେ କଟେଇ ତାଙ୍କ ଘରୁକୁ ଗଲି ୪ଟା ବେଳେ । ଭଦ୍ର ମହିଳା, Mrs Richardson ଏଠାର ଶିକ୍ଷା-କମିଟିରେ ମେମ୍ବର । ସ୍ୱାମୀ ଚମଡା ବ୍ୟବସାୟୀ । ବଡ ଅମାୟିକ ଓ ଉଦାରହୃଦୟ ଉଭୟେ । ଅନେକ ବେଳଯାଏଁ କଥାହେଲା ପରେ Mr Richardson ମତେ ତାଙ୍କ ଭାଇ ପାଖକୁ ନେଇଗଲେ । ସେ ଅବିବାହିତ । କେବଳ ବହି ପଢି ଓ ନାନା ଆଲୋଚନା କରି ସମୟ କାଟନ୍ତି । ଅନେକ ସଂସ୍କୃତ ବହି ରଖିଛନ୍ତି । ମତେ ସଂସ୍କୃତ ପଢିବାକୁ କହିଲେ । ମୁଁ ପଢିଲି । ଭାରତବର୍ଷ ସମ୍ବନ୍ଧରେ ବହୁ ଆଲୋଚନା ହେଲା । ସେ କହିରଖିଛନ୍ତି ଯେ, ମୁଁ ଯେତେବେଳେ ଇଚ୍ଛା କରିବି, ତାଙ୍କ ଘରୁକୁ ଯିବି । ତାଙ୍କ ଘରୁ ଫେରୁଫେରୁ ରାତି (ଏଠାରେ ଦିନ) ୮ଟା । ସେ ମଧ୍ୟ ଚମଡା ବ୍ୟବସାୟ କରନ୍ତି । କିନ୍ତୁ ଭାରତବର୍ଷରେ ଚମଡା ବ୍ୟବସାୟ କରୁଥିବା ଲୋକ, ଘରେ ଏକ ବିରାଟ ପୁସ୍ତକାଳୟ ରଖି, ନାନା ଦେଶର ଧର୍ମ ଓ ସାହିତ୍ୟ ଆଲୋଚନା କରିବା କଥା କଳ୍ପନା କର ତ ! ତାଙ୍କ ଘରେ ବହି ଦେଖିଲି, ଯେଉଁଥିରେ ଓଡିଶାର ଶିଳ୍ପକଥା ବର୍ଣ୍ଣନା ହୋଇଛି । ସେ ଆଟ୍‌ଲାସ

ଆଣିଲେ, ଓଡିଶା ପ୍ରଦେଶ ଚିହ୍ନି ରଖିଲେ । କେତେଜଣ ଓଡିଆ ଅଧ୍ୟାପକ, ଓକିଲ, ଶିକ୍ଷକଙ୍କ ଘରେ ପୁସ୍ତକାଳୟ ଅଛି କହ ତ ?

ଧନରେ, ମୁଁ ତ ଏବେ ବରାବର ଚିଠି ଦେଉଛି । ତୁ ବେଶୀ ଚିଠି ଦେ'ରେ । ଆଜି ସୋମବାର ତୋର ଚିଠି ପାଇଲି । ହୁଏତ ଶୁକ୍ରବାର ଆଉ ତୋ'ଠୁ ପାଇବିନି । ଧନଟି ପରା, ଏମିତି ହିସାବ କରି ଚିଠି ଦେ'ନା । ଯେତେବେଳେ ସେତେବେଳେ, ଖଣ୍ଡେ ଖଣ୍ଡେ ଚିଠି ପକାଇ ଦେଉଥିବୁ । ତୋର ଚିଠି ପାଇଲେ ମୋର ସବୁ ଭଲ । ଏକଥା ତ ପ୍ରତି ପତ୍ରରେ ଲେଖୁଛି । ତୁ ଶୁଣୁନୁ କିଆଁ ?

ଲଲାଟେନ୍ଦୁ ଏମିତି ଦୁଷ୍ଟ ହେଉଛି । ଏଇ ଦୁଷ୍ଟାମି, ମୁଁ ଗଲାବେଳକୁ ଥିଲେ, ସେ ପ୍ରତିଦିନ କାନମୋଡା ଖାଇବ । ପୁଅ ଖଚଡା ହେଲେ, ମା'-ପୁଅ ଦିହିଁକି ଶାସ୍ତି ପାଇବାକୁ ହେବ ।

ମୁଁ ଏଯାଏଁ ନବଭାରତ ପାଇଲିନି । ମୁଁ କ'ଣ ଲେଖିଛି ଥରେ ହେଲେ ଦେଖନ୍ତି । ଏଠାକୁ ଆସିବା ପରେ ମୋର ଯାହା କିଛି ବାହାରିଛି, ସେସବୁ ମୁଁ କିଛି ଦେଖିନି ଏ ଯାଏଁ । ଅନ୍ଧ ପରି କେତେ ଲେଖି ଫୋପାଡୁଥିବି ଖାଲି ? ତଥାପି ଏ ମାସରେ ନବଭାରତକୁ ଏଡ୍ରେନ୍‌ରୁ ପୋର୍ଟସଏଦ୍ ଯାଏଁ ଭ୍ରମଣ-କାହାଣୀ ପଠେଇଛି । ତମେ ଯଦି କହିବ ନବଭାରତକୁ ଦେବା ବନ୍ଦ କରିଦେବି । 'ନଷ୍ଟ ନୀଡ'ଟା ମଧ୍ୟ ଛପା ହେଲା କି ନାହିଁ ଜାଣିଲିନି । ଏଇ ହେଉଛି ଆମ ଦେଶର ଶିକ୍ଷିତ ଲୋକଙ୍କର ଦାୟିତ୍ୱ । ତମେ ମୋର ବହି ପ୍ରଭୃତି ପଠେଇଲଣି ? ଶୀଘ୍ର ପଠାଅ । ଆଜି ଲକ୍ଷ୍ମୀଧର ନାୟକଙ୍କ ନିକଟକୁ ଖଣ୍ଡେ ଚିଠି ଦେଉଛି । ମୋର ଭବିଷ୍ୟତର କଳ୍ପନା ସବୁ କାର୍ଯ୍ୟରେ ପରିଣତ ହେବାକୁ ଲକ୍ଷ୍ମୀଧର ସାହାଯ୍ୟ କରିବେ ବୋଲି ମୋର ଆଶା ।

ଧନରେ, ତୁ ଅଭିନୟ କରିବାକୁ ମୋର କୌଣସି ଆପତ୍ତି ନାହିଁ । ପ୍ରେମାଭିନୟ ବି କର । ତେବେ ମୋ ପକ୍ଷରେ ତ ସହଜ ନୁହେଁ ତାହା, ତୋତେ କ'ଣ କହିବି । କିନ୍ତୁ ଅଭିନୟ ସଂଗେ ସଂଗେ ତୁ ନୃତ୍ୟ ଶିଖ୍ । ନୃତ୍ୟ ପାଇଁ ତୋର ଶରୀର ଗଢା ହୋଇଥିଲା ।

ତୁ ମୋର ଭ୍ରମଣ-ଲେଖା କାହିଁକି ପସନ୍ଦ କରୁନୁ ଲେଖ୍ । ମୋର ଦୋଷ କ୍ୱ'ଠି ରହୁଛି ମୁଁ ନିଜେ ହେଲେ ଦେଖନ୍ତି ।

ଧନରେ, ଆ କୋଳକୁ । ତୋର ବକ୍ଷର ବୃଥା ଆବରଣ ମୁଁ ଫିଟେଇଦେଇ ଘୋର ଆଲିଙ୍ଗନରେ ତୋର ଯୁଗ୍ମ ପୟୋଧରକୁ ନିଷ୍ପେଷିତ କରେ । ତୋର ସ୍ନିଗ୍ଧ ସୁନ୍ଦର ଗଣ୍ଡଦେଶରେ ଗଭୀର ଚୁମ୍ବନ ଦିଏ । ମତେ ଭିଡି ଧ'ରେ ଧନ, - ତୋର ମୁଖମଣ୍ଡଳକୁ ନିବିଡ ଭାବରେ ଆଘ୍ରାଣ କରେ । ଶୀଘ୍ର ଚିଠି ଦେ ।

ତୋର ଧନ



## ଏକଚିରିଣି
# ମାତ୍ର ୨୫ ପାଉଣ୍ଡ ଭିକ୍ଷା କରୁଛି

Students' Union
King's College
Newcastle on Tyne
17-05-38

ପ୍ରାଣର ପାଗ୍‌ଲିରେ,

ଧନ, ଏଇ ତ ଆଜି ସକାଳେ ଘରେ ତୋ ଫଟୋକୁ ଚୁମ୍ବନ ଓ ଆଲିଙ୍ଗନ ଦେଇ ଆସିଥିଲି । କଲେଜ୍‌ରେ ଆସି ତୋ ପତ୍ର ପାଇ ମନ ବେଶ୍ ଖୁସି ଅଛି । କାଲି ସୋମବାର ତୋର ଚିଠି ଆସିବାର କଥା । କିନ୍ତୁ କାଲି ଆସିଲାନି । କାଲି ଦିନଟା ଯାକ ମନ ଖରାପ । ବରାଳ ଟଙ୍କା ଦେବାର ଆଶା ଦେଇ ମାସେ ହେଲା ଆଉ ଚିଠିର ଉତ୍ତର ବି ଦେଉନାହାନ୍ତି - ମନ ଖରାପ ହେବାର କଥା ତ । ମୁଁ ଆଶ୍ଚର୍ଯ୍ୟ ହେଉଛି, ଯେଉଁ ଲୋକେ ମୋର ପ୍ରଥମ ଚିଠିର ଉତ୍ତର ଏତେ ବେଗରେ ଓ ଏପରି ମନଖୁସିଆ ଭାବରେ ଦିଅନ୍ତି, ପରେ, ଟଙ୍କା କଥା ପଡିଲେ ଏମିତି ଡୁନି ହେଇଯାନ୍ତି କିପରି । ମୁଖର୍ଜୀ, ପଟ୍ଟନାୟକେ, ରାଜା ମହାରାଜା ତ ଗଲେ - ବରାଳଙ୍କୁ ଲେଖିଥିଲି ଏଠୁ; କି ମଜାର ଉତ୍ତର - "ଆପଣ ଉତ୍କଳ ଜନନୀର ଯୋଗ୍ୟ ସନ୍ତାନ - କି ପ୍ରକାର ସାହାଯ୍ୟ ଚାହାନ୍ତି ଲେଖନ୍ତୁ ....... ଇତ୍ୟାଦି ଇତ୍ୟାଦି" । ମୁଁ ଲେଖିଲି ..... ଆଉ ଉତ୍ତର ନାହିଁରେ ବାବା । ମୁଁ ପ୍ରାୟ ଦେଢ଼ ମାସ ହେବ ପ୍ରତିଦିନ ତାଙ୍କଠୁ ଉତ୍ତର ଆଶା କରୁଛି ।

ମୁଁ ବରାବର ଦରଖାସ୍ତ ଦେଇ ମଧ୍ୟ କଂଗ୍ରେସ ମନ୍ତ୍ରୀଙ୍କ ଠାରୁ ଖଣ୍ଡେ ଉତ୍ତର ବି ପାଇଲିନି । ତେଣେ ୧୪୦୦୦ ଟଙ୍କା ଦେଇ ଗୋଟେ ପିଲାକୁ ପଠା ହେଉଛି B.Sc ପଢିବା ପାଇଁ, ଅଥଚ ଦୁର୍ଗା ସେଇ B.Sc ପାଶ୍ କରିବ, ତାକୁ ଚାକିରିରେ ନିଆହେଉନି । ଏସବୁ ଜାଣି, ମୁଁ ଓଡିଶାରେ କଂଗ୍ରେସ ଶାସନରେ ବେଶୀ ଆଶାନ୍ୱିତ ହେଇପାରୁନି । ଗାନ୍ଧିଙ୍କ ପରେ କଂଗ୍ରେସର ସବୁ ଗଲତି ବାହାରକୁ ବାହାରିବ ବୋଧେ । ଆମର ଦଳେ ଲୋକ ଦରକାର ଯେ'କି କୌଣସି ଦଳର ହେବେନି, ଅଥଚ ସତ୍ୟ ଉପରେ ନ୍ୟାୟ ଉପରେ ଠିଆ ହୋଇ ଦେଶର, ଜନସାଧାରଣର କଥା ସବୁବେଳେ ଆଖି ଆଗରେ ରଖିବେ । ମୁଁ ଯଦି ମୋ ଜୀବନରେ ସାମାନ୍ୟ ଭାବରେ ଏତକ କରିପାରେ, ତେବେ ଜାଣିବି ମୋର ଜୀବନଟା ବୃଥା ହେଲାନି । ମୁଁ ସେ ଦିଗରେ ଉପଯୁକ୍ତ ହେବା ପାଇଁ ଏଠି ପ୍ରତିଦିନ ନିଜକୁ ଯୋଗ୍ୟ କରାଉଛି ।

ଗତ ସପ୍ତାହରେ Mrs Richardson ଗୋଟେ ନାଟକ ଦେଖିବାକୁ ନିମନ୍ତ୍ରଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଗୋଟେ ନାଟକ ଅଭିନୟ ହେଉଥିଲା । ଯେଉଁମାନେ ଅଭିନୟ କରୁଥିଲେ ସେମାନେ ପେସାଦାରୀ ନୁହନ୍ତି - ପାରିବାରିକ ଭଦ୍ରଲୋକ ଓ ଭଦ୍ରମହିଳା - ଆମାଚାର । ଭାରି ଚମତ୍କାର ଅଭିନୟ କଲେ । Mrs Richardson ସେମାନଙ୍କ

ଭିତରୁ ଅନେକଙ୍କୁ ଜାଣିଥିଲେ - ମତେ ଦେଖେଇଦେଲେ ଅମକ ସ୍ତ୍ରୀ ଅମକ ଅଭିନେତାର ପତ୍ନୀ । ଅଥଚ ସେ ପତ୍ନୀଟିକୁ ଅନ୍ୟ ପୁରୁଷ ଅଭିନେତା ଭାବରେ ପ୍ରକାଶ୍ୟରେ ଚୁମ୍ବନ-ଆଲିଙ୍ଗନ ଦେଉଛି । ମୁଁ ପଚାରିଲି, ଏସବୁ ସେମାନେ ସହୁଛନ୍ତି କିମିତି ? ଭାରତବର୍ଷରେ ପ୍ରକାଶ୍ୟରେ ଏସବୁ ତ ହେବା ଅସମ୍ଭବ । Mrs Richardson କହିଲେ, 'ଏସବୁ ସେମାନେ କିଛି ନୁହେଁ ବୋଲି ଧରି ନିଅନ୍ତି ।' ତମେ ଅଭିନୟ କରିବ ପରା, ଏସବୁ ହେଲ-ଗେଲ କରିପାରିବ ? ଆଶା କରେ ଏସବୁ ବାଦ୍‌ଦେଲେ ଅଭିନୟ କଳାର କିଛି କ୍ଷତି ହେବନି । ମୁଁ ଓଡିଶାରେ ସ୍ତ୍ରୀ-ଅଭିନେତା ଚାହେଁ । ତମେ ଅନ୍ତତଃ, କୃତକାର୍ଯ୍ୟ ନ ହୁଅ ପଛେ, ଆରମ୍ଭ କଲେ ମଧ୍ୟ କେଡେ କଥା ହୁଅନ୍ତା ।

ଲଲାଟେନ୍ଦୁର ଦୁଷ୍ଟାମି ଶୁଣି ମୁଁ ଭାବୁଛି ସେ ଭଲ ପିଲା ହେବ । ଅନେକ ବଡଲୋକ ପିଲାଦିନେ ଭାରି ଖଚଡା ହେଇଛନ୍ତି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପିଲାଦିନେ ଦୁଷ୍ଟ ଥିଲେ ଯେ, ତାଙ୍କ ଦୌରାତ୍ମ୍ୟରେ ତାଙ୍କ ଗାଁର ଅଣ୍ଡିରା ମାଇକିନା ବ୍ୟସ୍ତ ହୋଇପଡିଥିଲେ । ଏମାନେ ପ୍ରଚୁର ଜୀବନୀଶକ୍ତି ନେଇ ଆସିଥାନ୍ତି କି'ନା ପିଲାଦିନେ ତାହା ଦୁଷ୍ଟାମୀରେ ବାହାରେ, ବଡ ଦିନେ ବିରାଟ ସାଧନାରେ ।

ମଡର୍ଣ୍ଣ ରିଭିଉରେ ମୋର ଲେଖା ବାହାରିବାର ତମେ ଜାଣିଲ କିମିତି ? ସେଠାକୁ ସେ ମାଗାଜିନ୍ କ'ଣ ଯାଏ ? ମୁଁ କିନ୍ତୁ ଏଯାଏଁ ପାଇନି । ନବଭାରତର ବି ଦେଖା ନାହିଁ । ଏ ମାସରେ ନ ପାଇଲେ, ଭାବୁଛି ଲେଖା ବନ୍ଦ କରିଦେବି ।

ମୋର ପଢାରେ ମୁଁ ଭୟଙ୍କର ଭାବରେ ବ୍ୟସ୍ତ । ଏତେ ବହି ପଢିବାକୁ ହେଉଛି, ବାପ୍‌ରେ ! ତେବେ ଦିନେ ଯାର ଉପକାର ପାଇବି ଇ ପାଇବି ।

ପ୍ରାଣର, କାଲି ରାତିରେ ଉପବାସ ଥିଲି - ଦେହ ଭଲ ନଥିଲା । ଆ' ତତେ ଯାକି ଧରି ତୋର ଓଠରେ ଗଭୀର ଚୁମ୍ବନ ଦିଏ । ଶୀଘ୍ର ଚିଠି ଦେ ।

ଇତି
ତୋର ପ୍ରିୟ



ବତିଶି

## ଲଲାଟେନ୍ଦୁର ଗୋଟିଏ ଅନ୍ତତଃ ଭଉଣୀ ହେବା ଉଚିତ

Students' Union
King's College, Newcastle on Tyne
24-05-38

ସ୍ନେହର ଲକ୍ଷ୍ମୀ,

ମୁଁ ଜାଣେନା ତମେ ଇ ଭିତରେ କାହିଁକି ଏତେ ମନେ ପଡୁଛ । ମନେ ପଡିବା ଖରାପ । ବିଦେଶରେ ସବୁବେଳେ ଘରକଥା ଭାବିଲେ, ଘରମୁହାଁ ହେଲେ, କାମ କରିବ

କିମିତି ? କାଲି ମନ ବଡ ବ୍ୟସ୍ତ ହେଉଥାଏ । ମୁଁ କହିଲି କେବେ ଦିନ ସରିବ ମୁଁ ଦେଶକୁ ଯିବି ଚାଲି । ଭାଇ କହିଲା, ମନ ଯଦି ବ୍ୟସ୍ତ ହେଉଛି, ଅଇଲ କାହିଁକି ? ମୁଁ କହିଲି 'ଆସି ଭୁଲ୍ କରିଛି । ଜୀବନ ସଂଗ୍ରାମ ଛଡା ଏ ଆଉ କ'ଣ ?' ମୁଁ ଦେଶକୁ ଗଲେ କି ସୁଖ ପାଇବି, ମୁଁ ଜାଣେନା । କିନ୍ତୁ ମନ ସବୁବେଳେ ଡାକୁଛି ସେଇ ଜାଗାକୁ ଯିବାକୁ, ଯେଉଁଠି ମୁଁ ନିଜର ଆପଣାର ଲୋକଙ୍କ କୋଳରେ ମୁଣ୍ଡ ଦେଇ ଶୋଇପାରିବି । ମୁଁ ଜାଣେ ଦେଶରେ ଥିଲାବେଳେ ଘରେ ବି ମତେ ଶାନ୍ତି ମିଳିନି । ବାହାର ଜଂଜାଳ ସଂଗେ ଘରର ଜଂଜାଳ ଯେପରି ସଂଧି କରୁଥିଲେ ମୋ ଜୀବନକୁ ବିଷମୟ କରିବାକୁ । କିନ୍ତୁ ସେ ଯାହାହେଉ, ମୋର ତ ଜଗତରେ ଅନ୍ୟ ଆଶ୍ରୟ ନାହିଁ ତା'ଛଡା, ମୁଁ ଆଜି ବିଦେଶରେ ତା'ର ଅଭାବ ଅନୁଭବ କରୁଛି ।

ହରିଶ ବରାଳଙ୍କଠୁ ଚିଠି ପାଇନି । ସେ ଟଙ୍କା ଦେଲେ ବି, ମୋର ଏତେ କରଜ ହେଲାଣି ଯେ ଯାକୁ କିମିତି ଶୁଝିବି, ସେଇ ଚିନ୍ତା ମତେ ଧଇଲାଣି । ଏଇ ଟଙ୍କା ଶୁଝିବାକୁ ମତେ ୫/୬ ବର୍ଷ ଲାଗିଯିବ । ଆମର ନିଜର ଖଣ୍ଡେ କୁଡିଆ ଦରକାର । ହେଲେ ହେବ କିମିତି ? ଇ ଭିତରେ ଯଦି ଲଲାଟେନ୍ଦୁର ଭାଇଭଉଣୀ ଆସିଯାନ୍ତି, ତେବେ ଆମ ଦିହିଁଙ୍କ ବେକରେ ପଥର ବଂଧା ହେବ । - ଆମେ ଜୀବନ-ସାଗରର ତଳୁକୁ ତଳୁକୁ ଯିବା ପଛେ ଉପରକୁ ଆସିବା ଅସମ୍ଭବ ହେବ । ଅନେକ ସମୟରେ ଭାବେ ଲଲାଟେନ୍ଦୁର ଗୋଟିଏ ଅନ୍ତତଃ ଭଉଣୀ ହେବା ଉଚିତ । କିନ୍ତୁ ମୋର ଆର୍ଥିକ ଅବସ୍ଥା ଦେଖି ମୁଁ ସେ ଚିନ୍ତା ଉପରେ ପରଦା ପକେଇ ଦେଇ, ଜନ୍ମ-ନିରୋଧ କଥା ଭାବିବସେ । ତମେ ଜନ୍ମନିରୋଧ ପାଇଁ ପ୍ରସ୍ତୁତ ହୋଇଥିବ ।

ଜନ୍ମନିରୋଧ ଆଦର୍ଶ ହେଲେ କ'ଣ ହେବ, ପୂର୍ବର ଭୋଗ-ବିଳାସ ସବୁ ବଡ ମନେ ପଡୁଛି । ତୋର ପାଦ ଉପରେ ଠିଆ ହୋଇ, ତୋର ବକ୍ଷକୁ ମୋ ବକ୍ଷରେ ଲେପି ଦେଇ, ତୋର ଜୁଡାକୁ ଦୁଇ ହାତରେ ଧରି ତୋର ଟେକା ଓଠରେ କିମିତି ଗଭୀର ଚୁମ୍ବନ ଦିଏ ମନେ ଅଛି ? ଓଠ ସରିଗଲେ, ତତେ ବଂଧନରୁ ମୁକ୍ତ କରି ତୋ'ର ମନୋହର ବକ୍ଷ ଉପରେ ମାଡି ପଡି କିମିତି ଉଚ୍ଛନ୍ନ ଭାବରେ ପାନ କରେ ମନେ ପଡେ ତ ? ତୁ'ବି ସମ୍ଭୋଗରେ ନିଜକୁ ହଜାଇ ଦେଇ ମୋର ଓଠକୁ ତୋର ଚୁଚୁକରେ ଘନ-ଲଗ୍ନ କରି ମାଡି ଧରୁ - ଏକ ବକ୍ଷ ସରିଗଲେ ଆରବକ୍ଷରେ ମୁହଁଲଗାଇ ଦେଉ । ଚୁମ୍ବନର ମଝିରେ ମଝିରେ ଦୁଇବକ୍ଷର ମଝିରେ ମୁହଁ ରଖି ଦୁଇ ବକ୍ଷର କୋମଳ ଆଶ୍ଳେଷ ଗଣ୍ଡଦ୍ୱୟରେ ଅନୁଭବ କରେ - ତୁ ସେଥିରେ ସାହାଯ୍ୟ କରୁ । ବହୁଦିନର ବିରହ ପରେ ଯେତେବେଳେ ତତେ ପ୍ରଥମ ଦେଖେ, ତତେ କୁଠି ମୁଁ ଚୁମ୍ବନଦିଏ ଜାଣି ପାରେନା - ଦୁଇଗଣ୍ଡ ଲାଳରେ ପିଚ୍ଛିଳ ହୋଇଉଠେ; ଆଖି, ଓଠ, ଛାତି, ବାହୁ, ଜଘନ - ସବୁ ତୋର ମୁଁ ଖାଇଯିବାକୁ ବସେ । ଧନରେ ମୁଁ ଜାଣେନା ଏସବୁ ଏବେ ସମୟ ସମୟରେ କାହିଁକି ବଡ ମନେ ପଡୁଛି । ତୁ'କଣ ମତେ ଏଇପରି ଭାବୁଛୁ କି ? ଆ, ତତେ କୋଳରେ ଧରେ, ଗଭୀର ଆଲିଙ୍ଗନ ଭିତରେ ତୋ'ର ବକ୍ଷକୁ ଚିପିଧରି ଓଠରୁ ସୁଧା ପାନ କରେ ।

ଲଲାଟେନ୍ଦୁକୁ ତ ଏଗାର ମାସ ହୋଇଗଲା । ସେ ଭଲ କରି ଚାଲିଲାଣି ? କଥା କହିଲାଣି ? କ'ଣ କ'ଣ କହି ଶିଖିଛି ? ତାକୁ ପ୍ରଥମେ ନମସ୍କାର କରି ଶିଖା । ଜାତିଧର୍ମ ନିର୍ବିଶେଷରେ ସେ ତା'ଠୁ ଯେ କେହି ବଡ ତାଙ୍କୁ ସମସ୍ତଙ୍କୁ ଯେପରି ନମସ୍କାର କରେ । ତା'ର ହାତଧରି ତାକୁ ଆଜିଠୁ ଏ ଜିନିଷଟା ଶିଖେଇବାକୁ ଚେଷ୍ଟା କରିବ । ସକାଳୁ ଉଠିଲା ତ ବାପା ଓ ବୋଉଙ୍କୁ ନମସ୍କାର କରିବ ।

ମଡର୍ଣ୍ଣ ରିଭିଉ ମୋ ପାଖକୁ ଖଣ୍ଡେ ଆସିଛି । ମୋର ଲେଖା ଓ ଛବି ବାହାରିଛି । ନବଭାରତରେ ମୋର ଛବି ବାହାରିଛି ? ଏପର୍ଯ୍ୟନ୍ତ ନବଭାରତ ପାଇନି । ମୁଁ ଏଇ ମାସ ଶେଷ ଯାଏଁ ଅପେକ୍ଷା କରୁଛି । ଶୀଘ୍ର ଚିଠି ଦେ ।

।ଇତି।

ତୋର ପ୍ରିୟ



## ତେତିଶି

# ବିବାହର ପ୍ରଥମ ଦିନମାନଙ୍କର ସ୍ୱପ୍ନ-ବିଭୋର ପ୍ରେମ

Students' Union
King's College
Newcastle on Tyne
27-05-38

ତୋର ସଙ୍ଗାଳିରେ,

ତୋର, ଲ. ନାୟକଙ୍କ ଚିଠି ସହିତ ଦେଇଥିବା ଚିଠି ପାଇଲି । ତୁ, ମୁଁ ପଢୁଥିବା କଥା ଲେଖିଛୁ । ମୋର କଥା ମୁଁ କ'ଣ କହିବି ? ତୋର ଚିଠି ପାଇ ନଥାଏ । ଅଥଚ ଶୁକ୍ରବାର ବୋଲି ଚିଠି ଦେବି ଦେବି ବୋଲି ଭାବୁଥାଏ । କିନ୍ତୁ କି ଏକ ଅଜ୍ଞାତ କାରଣ
6 ଯ । ଗ
ମୋର ଛାତି କୁହୁଳୁଥାଏ ଖାଲି । ଗୋଟାଏ ବେଳେ ଖାଇବାକୁ ଗଲି ଘରକୁ । ଖାଇଲି । ମନ ଭୟଙ୍କର ବ୍ୟସ୍ତ ହେଉଥାଏ । ତୋର ଫଟୋ ପାଖରେ ଠିଆ ହେଲି, ତାକୁ ଉଠାଇ ଆଣି ତୋର ମୁହଁକୁ ଲଘୁ ଚୁମ୍ବନରେ ବାରଂବାର ଆର୍ଦ୍ର କଲି । ତା'ପରେ ଛାତିରେ ଲଗାଇ ଭିଡି ଧରିଲି । କୁହୁଳୁଥିବା ଛାତି ଫାଟି ପଡିଲା । ଅଜସ୍ର ଧାରାରେ ଲୁହ ବହିଲା । ବ୍ୟାକୁଳ ହୋଇ ତୋର ଛବିକି ଛାତି ପାଖରେ ଧରି ଘର ଯାକ ବୁଲି ବୁଲି ଛାତି ଫଟାଇ କାନ୍ଦିଲି ଖାଲି । ଭଗବାନଙ୍କୁ ଡାକୁଥାଏ - କାହିଁକି ମତେ ଏମିତି କଷ୍ଟ ଦେଉଛ ! ବହୁକ୍ଷଣ ପରେ କ୍ଲାନ୍ତ ହେଲାରୁ ମୁହଁ ଧୋଇ କଲେଜକୁ ଆସିଲି । ........ ମୁଁ ଜାଣେନା ତୋର ଏମିତି ହଉଛି କି ନାହିଁ । ତମେ କାନ୍ଦୁଛ ମୋ ପାଇଁ ? ଆଉ ବୋଧହୁଏ କାନ୍ଦୁନା । ଧନ, ତୁ କାନ୍ଦିବୁରେ

- ଆମର ବିବାହଜୀବନରେ ପରମ ସୁଖ ଏଇ ଯେ ଆମେ ପରସ୍ପର ଲାଗି କାନ୍ଦିଚେ । ପରେ ଅଭାବ ଘୁଞ୍ଚି ପାରେ, ନିଜର ଘର, ଜମି, ଟଙ୍କା, ପଇସା, ଲୋକମାନ୍ୟ ମିଳିପାରେ । କିନ୍ତୁ ଏସବୁ ମତେ କେବେ ହେଲେ ସୁଖ ଦେବନି । ତୁ ଯଦି ସେଇ ବିବାହର ପ୍ରଥମ ଦିନମାନଙ୍କର ସ୍ୱପ୍ନ-ବିଭୋର ପ୍ରେମ ମତେ ଚିରଦିନ ଦେଇପାରିବୁ, ତେବେ ଜାଣିବି ଜୀବନରେ କିଛି ସୁଖ ମିଳିଲା । ଅଭାବ ଭିତରେ ପଡି ତୁ ବେଳେବେଳେ ଏପରି ପ୍ରେମହୀନା ହେଉଛୁ ଯେ, ମୁଁ ଭାବିଛି ଥରେ ଥରେ ପ୍ରେମ କେବଳ ଟଙ୍କାପଇସାରେ ସମ୍ଭବ ହୁଏ । ତୁ ଯେତେବେଳେ ମୁଁ ବଜାର ନଗଲି ବୋଲି ଚିଡିଛୁ, ସେତେବେଳେ କବିର ପ୍ରେମ-କୁଞ୍ଜରେ ବସନ୍ତୋତ୍ସବର ସ୍ୱପ୍ନ ଚୂରମାର ହୋଇ ଯାଇଛି । ..... ତେବେ ସେ ମୁହୂର୍ତ୍ତ ଯେ ଘଟିଛି ତା'ର ଅଭିଜ୍ଞତା ଆମ ଭବିଷ୍ୟତକୁ ପଥ ଦେଖାଉବା ଉଚିତ । ପ୍ରାଣର ନିବିଡ ସଂପର୍କ ଯେତେବେଳେ ଏତେ ଗଭୀର ବୋଲି ଜାଣିଲେଣି, ସେତେବେଳେ ଅନେକ ସ୍ୱାର୍ଥ ତ୍ୟାଗ ପାଇଁ ଆମର ପ୍ରସ୍ତୁତ ହେବା ଉଚିତ । ଯେତେବେଳେ ତୋର ଓ ମୋର ଗୋଟାକଯାକ ଜୀବନ ତୋର ଓ ମୋର ସୁଖ ଲାଗି, ସେତେବେଳେ ଗୋଟେ ଗୋଟେ ମୁହୂର୍ତ୍ତର ଦୋଷ ଅପରାଧ । ସେ ସୁଖ-ସ୍ରୋତକୁ ଅବରୋଧ କରିବାକୁ ନେବା ଏକାନ୍ତ ଅବିବେକୀର କାର୍ଯ୍ୟ । ପୃଥିବୀରେ ଏପରି ଜଳସ୍ରୋତ ନାହିଁ ଯାହାକି ଏକ ସରଳ ରେଖାରେ ସମୁଦ୍ରକୁ ଚାଲିଯାଇଛି । ପ୍ରତ୍ୟେକକୁ ବାଧା ଅତିକ୍ରମ କରିବାକୁ ପଡିଛି ଓ ସେଥିଲାଗି ଗତିକୁ ଅଷ୍ଟବକ୍ର କରିବାକୁ ହେଉଛି । ମନୁଷ୍ୟର ଜୀବନ ମଧ୍ୟ ସେଇପରି ବୋଧହୁଏ - ଜୀବନର ଭିନ୍ନ ଭିନ୍ନ ବିଭବ ମଧ୍ୟ ସେହିପରି । ପ୍ରାଣର ହେମରେ ! ସେସବୁ ଭୁଲିଯାଇ ଆମେ ଜୀବନକୁ ଚିରନ୍ତନ 'ମଧୁ-ଯାମିନୀ' କରି ପାରିବାନି ? ମନେଅଛିରେ ସେ ରଜନୀର କଥା ? ତୁ'ତ ସାମାନ୍ୟ ଟୋକୀ ସେତେବେଳେ - ଦେହ ତୋର ଛୋଟ ଗୋଟିଏ ଲତା । ତତେ ଧରି ଶେଯକୁ ନେଲି - ସଲଜ ହୋଇ ଗଡି କଲୁ - ବାଧା ଦେଇପାରିଲୁନି - ମୋର ଶଯ୍ୟାରେ ମୋର ବକ୍ଷରେ ଆଉଜିବା ତୋର ଯେ ପରମ ଇପ୍ସିତ । ଚୁମ୍ବନ ଆଶ୍ଳେଷ ଦେଲି ତତେ - ତୁ ଚୁମ୍ବନ ଦେଇ ଜାଣି ନଥାଉ । - ଓଃ ତୁ କି ଅମୂଲ୍ୟ ସରଳ ପଦାର୍ଥ ଥିଲୁ ସେତେବେଳେ । - ବକ୍ଷ ନିପୀଡିତ କଲି ତୋର, ନିବିବଂଧନ ମୁକ୍ତ କଲି ତୋର, ନଗ୍ନ ଦେହକୁ କୋଳରେ ଧରି ମୋର ସର୍ବାଙ୍ଗ ଦେଇ ଅନୁଭବ କଲି ତତେ - ତୁ ତୋର ସବୁ ସମର୍ପଣ କରିଦେଇ ମତେ, ନିଜକୁ ଏପରି ହଜେଇ ଦେଇଥିଲୁ ଯେ ତୋରି ମୁହଁରୁ ଖାଲି ବାହାରିଥିଲା ଆଶ୍ଚର୍ଯ୍ୟବାଣୀ - ମତେ ନଗ୍ନ କରିଦେଲ ଯେ ! ଓଃ ହେମ ! ମୁଁ ତତେ ଗୃହିଣୀ, ଜନନୀ, ଲକ୍ଷ୍ମୀ, ଲେଖିକା, କିଛି ହେବାକୁ ଚାହେଁନା - ତୁ ମୋର ଚିର ଜୀବନ ସେହିଦିନର ନବବଧୂ ହୋଇ ରହରେ - ସେଦିନର ରାତ୍ରିପରି ମୋର ଜୀବନ ତତେ ଚୁମ୍ବନ ଦେଇ ଦେଇ, ତୋର ପ୍ରାଣର କଥା ଯାକ ତୋର ଅସ୍ଫୁଟ ବାଣୀରେ ଶୁଣିଶୁଣି, ପାହିଯାଉ । ସେ ରାତି ଯେପରି ଉଭୟେ କହିଉଠିଥିଲେ - ଏ ରାତି ପାହିଗଲା ଯେ ! ଜୀବନଟା ସେହିପରି ହୋଇପାରିବନି ? ଆ ପାଗଲି, ତତେ କୋଳରେ ଧରି ସେଦିନର ନବବଧୂ ବୋଲି ମନେକରି ତୋର ଗଣ୍ଡରେ ପ୍ରଥମ ଚୁମ୍ବନ ଦେ ତ, ଆ - ତୋର ମୋର ଦେହ ଆତ୍ମା ଭିତରେ ସକଳ ବାଧା ----- ପ୍ରାପ୍ତ ହେଲା ।

ମୋର କାଳିଦାସ ଗ୍ରନ୍ଥାବଳୀ ଦରକାର । ଭଲକରି ବାନ୍ଧି Book post ରେ ପଠାଇ ଦିଅ, ମୁଁ ପାଇବି । Registrationରେ ପଇସା ଖର୍ଚ୍ଚ କରିବା କୌଣସି ଆବଶ୍ୟକ ନାହିଁ । ଚିନ୍ତାମଣି ଖଣ୍ଡେ ଚିଠି ଅନୁତପ୍ତ ହୋଇ ଲେଖିଛି ଓ ସବୁ ବାକି ନବଭାରତ ପଠେଇଛି ବୋଲି ଲେଖିଛି । ହୁଏତ ଆର ମାସ ପ୍ରଥମ ସପ୍ତାହରେ ପାଇବି । ବରାଳଙ୍କଠୁ ଆଉ କୌଣସି ଚିଠି ପାଇନି, କି ଟଙ୍କା ଏଯାଏଁ ଆସିନି । ଦୁର୍ଗାଦାସ ଚିଠି ଦେଇ ନାହାନ୍ତି - ଓଡିଶା ସରକାର ମତେ କିଛି ଦିଅନ୍ତେ ବୋଇଲେ, ମୋର ଆଉ କିଛି ଅଭାବ ରହନ୍ତାନି । ଅକ୍ଟୋବର ଆଡକୁ ଭାଇ ଅଲଗା ହୋଇଯିବ । ବାପା ତ ଦି'ଜଣଙ୍କୁ ଟଙ୍କା ଦେବା ଅସମ୍ଭବ । ବର୍ତ୍ତମାନ ମୁଁ ବିଧାତା ଉପରେ ସବୁ ଢାଳି ବସିଛି । ଏଯାଏଁ ତ ଆଇଲିଣି, କୌଣସି ମତେ କାଳ ଘୁଞ୍ଚୁରିଯିବ । ଆରବର୍ଷ ଏତେବେଳକୁ ମୁଁ ଜାହାଜରେ ବସି ତତେ କିମିତି ଆଲିଙ୍ଗନରେ ଧରିବି, ଲଲାଟେନ୍ଦୁକୁ କାଖେଇବି ସେଇକଥା ଭାବୁଥିବି । ମୋ ମନ ଯିମିତି ଉଡିଲାଣି, ଆଶା କରେ ସମୟ ସିମିତି ଉଡିଯିବ । ସଚ୍ଚିଦାନନ୍ଦଙ୍କଠୁ ଚିଠି ଆସିନି - ଲ. ନାୟକଙ୍କ ଚିଠି ବି ପାଇନି । ତମେ ଅଳିଆ କଥା କ'ଣ ଲେଖିଲ ମୁଁ ବୁଝିପାରିଲିନି । ମୁଁ ତ ତା'ସଂବଂଧରେ କିଛି ହେଲେ କା ପାଖକୁ ଲେଖିନି - ସେ ବିରକ୍ତ ହେବାର କାରଣ କ'ଣ ?

ଧନରେ, ତୁ ବୋଲି ସିନା, ତତେ ଯାହା ଇଚ୍ଛା ତା'ପାଖରେ ଛାଡିଦେବି ବୋଲି ମୋର ସାହାସ । ଲ.ନାୟକଙ୍କ ପ୍ରଶଂସାଟା ଆଦୌ ମୋର ନୁହେଁ । ସେଟା ସର୍ବାଂଶରେ ତୋର । କିନ୍ତୁ ସବୁ ଦେଶରେ ନାରୀର ଗୌରବଟା ପୁରୁଷର ଭାଗ୍ୟ ଭିତରେ ଗଣା ହୋଇଯାଏ - ନୁହେଁ ?

ଶୀଘ୍ର ଚିଠି ଦେବୁ । ଲଲାଟେନ୍ଦୁ କ'ଣ କରୁଛି ଲେଖିବୁ । ବିଧାତା କରନ୍ତୁ ସେ ତାରି ଅଗ୍ର ଜୀବନରେ ଆମକୁ ଆନନ୍ଦ ଓ ଗୌରବ ଦେଉ ।

।ଇତି ।

ତୋର ପ୍ରିୟ



**ଚଉତିରିଶି**

## ମୋ ମନ ଉଡିଲାଣି କେମିତି ଘରକୁ ଫେରିବି

Students' Union
King's College, Newcastle on Tyne
03-06-38

ସ୍ନେହର ଲକ୍ଷ୍ମୀ,

ମତେ ଭୟଙ୍କର ସର୍ଦ୍ଦି ହୋଇଛି । ଏ ସପ୍ତାହଟାଯାକ ମୋର ଦେହ ଭଲ ନାହିଁ । ଚିନ୍ତା କରିବାର କୌଣସି କାରଣ ନାହିଁ । ଦେହଟା କାହିଁକି ଫୁର୍ତ୍ତି ଲାଗୁନଥିଲା, ଏଇ ମାତ୍ର

କାଲି ଆଉକୁ ସର୍ଦ୍ଦି ଭଲ ହୋଇଯିବ । ଭାଇର ପରୀକ୍ଷା ଚାଲିଛି । ପରୀକ୍ଷା ସରିଲେ ସେ କ'ଣ କରିବ, ଠିକ୍ ନାହିଁ । ଓଡିଶା ସରକାରଙ୍କଠୁ ଆଉ କିଛି ଚିଠିପତ୍ର ଆସିନି । ହରିଶ ବରାଳ ଟଙ୍କା ପଠେଇଛନ୍ତି । ପାଞ୍ଚଶ ଟଙ୍କା ଯାକ ବ୍ୟାଙ୍କରେ ଜମା କରିଦେଲି । ସେଥିରେ ଆଉ ହାତ ଦେବିନି । ସେ ଆରବର୍ଷ ପରୀକ୍ଷା ଫି, କଲେଜ ଫି ପ୍ରଭୃତି ମେଣ୍ଟେଇବ । ଖାଲି ଓଡିଶା ସରକାର କିଛି ମାସିକ ଭତ୍ତା ଦେଇ ଦିଅନ୍ତେ କି ମୋର ସବୁ ଅସୁବିଧା ତୁଟି ଯାନ୍ତା । କିନ୍ତୁ ହତଭାଗ୍ୟ ଦେଶରେ ତାହା ଆଶା କରିବା ବୃଥା ବୋଧହୁଏ । ଦୁର୍ଗାଦାସ ଏଯାଏଁ ଉତ୍ତର ଦେଇ ନାହାନ୍ତି । ଲ.ନାୟକ ବା ସଚ୍ଚିଦାନନ୍ଦଙ୍କଠାରୁ ଚିଠି ବି ପାଇନି । ଆଜି ଦୁର୍ଗାଦାସଙ୍କ ନିକଟକୁ ଖଣ୍ଡେ ଚିଠି ଦେବି । ଲ.ସାହୁଙ୍କ ପାଖକୁ ଖଣ୍ଡେ ଦେଇପାରେ । ଜୁନ୍‌ମାସ ହେଲା । ଲଲାଟେନ୍ଦୁକୁ ବର୍ଷେ ଆସି ହୋଇଗଲା । ମୋର ବି ଏଠାକୁ ଆସିବାର ପ୍ରାୟ ବର୍ଷେ ପୂରି ଆସିଲା । ମୋ ମନ ଉଡିଲାଣି କିମିତି ଘରକୁ ଫେରିବି । ଆରବର୍ଷ ଏଇଦିନକୁ ଅଧାବାଟରେ ହୋଇଥିବି ବୋଲି ଆଶା କରେ । ଏହି ଜୁନ୍ ଶେଷରେ ଏହି ଗ୍ରୀଷ୍ମଛୁଟି ଟି ଆରମ୍ଭ ହେବ । ଛୁଟି ୩ ମାସ । ପୁଣି ଅକ୍ଟୋବର ଅଧାକୁ ଯାଇ କଲେଜ୍ ଖୋଲିବ - ମୁଁ ଯେଉଁ ସମୟରେ ଏଠି ଆସି ପହଁଚିଥିଲି । ଏଠି ଅକ୍ଟୋବରରେ କଲେଜ୍ ପ୍ରଭୃତିରେ ବର୍ଷାରମ୍ଭ ହୁଏ । ଏଠି ବର୍ତ୍ତମାନ ବି ଭୟଙ୍କର ଥଣ୍ଡା । ବର୍ଷା, ଝଡି, କୋହଲା ପବନ ଲାଗି ରହିଛି । ଖରା ହେଲେ ବି ଥଣ୍ଡା ଛାଡୁନି । ଜୁଲାଇ ଅଗଷ୍ଟ ଏଠି ପ୍ରକୃତରେ ଗରମ ଦିନ । କିମିତିକା ଗରମ, ଦେଖିବି ।

ତମେ ଯଦି ଲଲାଟେନ୍ଦୁକୁ ବୋଉଙ୍କ ପାଖରେ ରଖିଦେଇ କିଛିକାଳ ଲାଗି ଶାନ୍ତିନିକେତନ ଚାଲିଯାନ୍ତ ବଡ ଭଲ ହୁଅନ୍ତା । ମୁଁ ଗଲାବେଳକୁ ତମର ଶିକ୍ଷା ଯେପରି ------ । ମୁଁ ଗଲେ ଆମର ଏତେ ଜଂଜାଳ ଆସି ପହଁଚିବ ଯେ, ତମୁକୁ ଦୂରକୁ ପଠେଇବା କେତେଦୂର ସମ୍ଭବ ହେବ ମୁଁ କହିପାରୁନି । ଅଥଚ ଯିବା ଅତ୍ୟନ୍ତ ଦରକାର । ଟଙ୍କା ପଇସାର କଥା - ସେଠି ମାସିକ ୨୫ ଟଙ୍କା ପଡେ ସବୁ ସବୁ କାମ । ରଜନୀ ଟଙ୍କା ଦେବ ବୋଲି କହିଥିଲା ପରା ? ତାକୁ ମନେ ପକାଅ ତ, ସେ ଯଦି କିଛି ଦିଏ ତେବେ ସେଇ ଟଙ୍କାରେ ତମର ଚାଲିଯିବା ଉଚିତ - ସେ ଟଙ୍କା ମୁଁ ଦରକାର କରୁନି । ଦୁଇଶ ଟଙ୍କା ହେଲେ ତ ୮ ମାସ ଚଳିଲା - ତମେ ଆଉ କେତେକାଳ ରହନ୍ତ କି ସେଠି ? କଥାଟାକୁ ମନଧ୍ୟାନ ଦେବ । ଚେଷ୍ଟା କର ହେଲେ ହେବ, ନହେଲେ କ୍ଷତି ନାହିଁ । ଲକ୍ଷ୍ମୀନାରାୟଣ ବାବୁଙ୍କୁ ଲେଖିପାର ଯଦି ସେ ଯୋଗାଡ କରି ଦେଇପାରନ୍ତି । ମୁଁ କହିବାର କଥା ଏଇ ଯେ ପରେ ଟଙ୍କା ଆମକୁ ମିଳିବ ଅଥବ ସମୟ ନଥିବ । ବର୍ତ୍ତମାନ ପ୍ରାୟ ଚାଲିଯାଉଛି, ଅଥଚ ତାକୁ କାମରେ ଲଗା ହେଇପାରୁନି । ଶାନ୍ତିନିକେତନରେ ଜୁଲାଇ ଓ ଜାନୁୟାରୀରେ ପିଲା ନିଅନ୍ତି । ତମେ ଗଲେ, ଗୃହ-କର୍ମ (Domestic Science), Dancing and Music ଏଇ ତିନିଟା କଥା ଭଲ ଭାବେରେ ଶିଖି ଆସନ୍ତ । ତମେ ବଂଗଳା ଜାଣିଛ - ତମର ଶିଖିବା ଏକାବେଳେବେ ସହଜ ହେବ ।

ମୁଁ ବର୍ତ୍ତମାନ ମୋ ପଢାରେ ବଡ ବ୍ୟସ୍ତ । ଏତେ ବ୍ୟସ୍ତ ଯେ ନବଭାରତ ଲାଗି ଏ ମାସର ଲେଖା ଏଯାଏଁ ପଠେଇପାରିନି । ତମ ପାଖକୁ ସୋମବାର ଦିନ ବି ଚିଠି ଦେଇପାରିଲିନି । ମୋର ନିଜର କବିତା ପ୍ରଭୃତି ବି ଲେଖିପାରୁନି । କାରଣ ମତେ ଯୁ'ଥି ପାଇଁ ଆସିଛି ସେ'ଟା ସମାଧାନ କରିବାକୁ ହେବନା ? ତେଣୁ ତା'ଲାଗି ମୁଁ ସବୁ ଛାଡିବାକୁ ପ୍ରସ୍ତୁତ । ଓଡିଶା ଦେଶରେ ସାହାଯ୍ୟ ଦେବାର ବା ଉତ୍ସାହ ଦେବାର ଲୋକ ସିନା ନାହାନ୍ତି, ତାଳି ମାରିବାକୁ, ଉପହାସ କରିବାକୁ, ପଛ-କୁହା କରିବାକୁ ଲୋକର ତ ଅଭାବ ନାହିଁ । ଏସବୁ ଯେପରି ମୋ ଭାଗ୍ୟରେ ନଘଟେ ସେଥିଲାଗି ମୁଁ ପ୍ରାଣପଣେ ଚେଷ୍ଟା କରୁଛି । ତମେ ଶୀଘ୍ର ଚିଠି ଦିଅ ।

।ଇତି ।

ତମର ପ୍ରିୟ



## ପଞ୍ଚିରିଶି

# ତମେ ଲେଖିବା ଅଧିକ ଅଭ୍ୟାସ କର

୦୮-୦୬-୩୮

ବୁଧବାର

ପ୍ରାଣର ଲକ୍ଷ୍ମୀ,

ଆଜି ତମର ଓ ଲ. ନାୟକଙ୍କର ଚିଠି ପାଇଲି । ନବଭାରତ ବି ଆଜି ପାଇଲି । ତମର ଲେଖାଟି ପଢିଲି । ବେଶ୍ ଭଲ ହୋଇଛି । ତମର ଲେଖାର ସ୍ୱାତନ୍ତ୍ର୍ୟ ଅଛି । ତମେ ଶବ୍ଦର ଆଡମ୍ବରରେ ଭାବର ଅଳ୍ପତାକୁ ଲୁଚେଇବାକୁ ଚାହନା, ଯାହା କହିବାର ଅଛି ତାହା ନିରାଟ ସାଦା କଥାରେ କହ । ଏ ଜିନିଷ ଆମ ଦେଶ ଓ ସାହିତ୍ୟରେ ନିତାନ୍ତ ଦରକାର । ତେଣୁ ମୁଁ ଚାହେ, ତମେ ଲେଖାର ଅଧିକ ଅଭ୍ୟାସ କର । ତମେ ହୁଏତ ବାଉଳି ହେଉଥିବ, କୁ ବିଷୟରେ ଲେଖିବି ? ମୁଁ ତେଣୁ ତମୁକୁ କେତେଟା ବିଷୟ ଦେଉଛି; ତମେ ସେହି ସେହି ବିଷୟରେ ଛୋଟ ଛୋଟ ଗୁଡ଼ିଏ ପ୍ରବନ୍ଧ ଲେଖି ନବଭାରତକୁ ଦିଅ । ତମର ଏ ବିଷୟରେ ଆଦୌ ହେଳା କରିବା ଉଚିତ ନୁହେଁ । ତମୁକୁ ମୁଁ ବଡ କଥା କରିବାକୁ କହୁନି - ତମେ ଯେଉଁ ବିଷୟରେ ଲେଖିପାରିବ ବା କହିପାରିବ, ସେହି ସେହି ବିଷୟ ପ୍ରଥମେ ଦେଉଛି । ବିଷୟ ଗୁଡିକ ଏହିପରି - ୧) ନାରୀର ସ୍ଥାନ (ଅର୍ଥାତ ସମାଜରେ ସେ କି କି କାମର ଭାର ନେବା ଉଚିତ ? ପୁରୁଷକୁ କୁ କୁ କାମ ଛାଡି ଦେବା ଉଚିତ ? ପୁରୁଷ ଓ ସ୍ତ୍ରୀଙ୍କ କାମ ଭିତରେ ସୀମାରେଖା ନ ଟାଣିଲେ ସମାଜରେ କ'ଣ ଅସୁବିଧା; ନାରୀର ଲାଭ ବା କ୍ଷତି .... ଇତ୍ୟାଦି), ୨) ପ୍ରାଚୀନ ଓ ନବୀନା ନାରୀ (ମନେ ମନେ ପ୍ରାଚୀନ କାଳର ବଧୂ, ଭଗିନୀ, ମାଆମାନଙ୍କୁ କଳ୍ପନା କର ଓ ତାଙ୍କ ସଂଗେ ବର୍ତ୍ତମାନ କାଳର ନାରୀ, ଭଗିନୀ, ମାତାମାନଙ୍କୁ ତୁଳନା କରି, ଭଲମନ୍ଦ ଯାହା ଦିଶୁଛି କହ), ୩) ନାରୀ ଓ ବିବାହ (ବିବାହ କ'ଣ ନିତାନ୍ତ

ଦରକାର ନାରୀ ଲାଗି ? ସବୁ ନାରୀ କ'ଣ ବିଭା ହେବେଇ ହେବେ ? ନ ହେଲେ ? ହେଲେ କିପରି ବିବାହ ଉଚିତ; ସ୍ୱାମୀ ପ୍ରତି ମନୋଭାବ, ପୁତ୍ରକନ୍ୟା ପ୍ରତି, ପ୍ରାଚୀନ ଆଦର୍ଶ (ଅର୍ଥାତ୍ ସତୀ) ଭଲ ନିର୍ମଳ, କେଉଁଠି ଭଲ, କେଉଁଠି ମନ୍ଦ ଇତ୍ୟାଦି), ୪) ଅଯୋଗ୍ୟ ସ୍ୱାମୀ (ମନେକର ଜଣେ ଭଲ ବାଳିକା ଅଭାଗ୍ୟ କ୍ରମେ ଅଯୋଗ୍ୟର ହାତରେ ପଡ଼ିଲା, ତା'ର କର୍ତ୍ତବ୍ୟ କ'ଣ ?), ୫) ନାରୀ-ନୀଡ଼ (ନାରୀ କେବଳ ମନିଷକୁ ସୁଖୀ କରାଇପାରେ; ସୁଖର ନୀଡ ରଚନା କରିବା ପାଇଁ ନାରୀ କ'ଣ କ'ଣ କରିବା ଉଚିତ ଇତ୍ୟାଦି), ୬) ନାରୀ-ବୃତ୍ତ (ନାରୀର ସ୍ୱାଧୀନତାର ବୃତ୍ତ କେତେଦୂର ବ୍ୟାପିପାରେ - ଗୃହବଧୂ ଭାବରେ, ମା' ଭାବରେ, ସ୍ତ୍ରୀ ଭାବରେ, ସେ କାହା କାହା ସଂପର୍କରେ ଆସିବାର କଥା ଓ ସେମାନଙ୍କ ପ୍ରତି କି କି ବ୍ୟବହାର କରିବ ଇତ୍ୟାଦି) । ମୁଁ ତୁମକୁ ଛ'ଟି ବିଷୟ ଦେଲି । ତମର ମନ ଯୁ'ଟା ପାଉଛି ସେ'ଟାକୁ ଅବତାରଣା କରି essay ଲେଖିବ ଓ ନବଭାରତକୁ ପଠେଇବ । ମୁଁ ଏଠି ଥାଇ ଥାଇ ତମର ୪/୫ ଟା ଲେଖା ଯେପରି କାଗଜରେ ଦେଖେ ।

ଏଠି ଭୟଙ୍କର ଗରମ ଆରମ୍ଭ ହେଲାଣି । ଆମର ଫେବୃୟାରୀ ମାସରେ ଯିମିତି ଗରମ ହୁଏ ସେଇମିତି । ଘର ଭିତର ଥଣ୍ଡା, କିନ୍ତୁ ବାହାରକୁ ଗଲେ ଖରାତେଜରେ ସ୍ୱେଦ ଜାତ ହେଉଛି ଓ ଶୋଷ ଲାଗୁଛି । କିନ୍ତୁ ମୋଟ୍ ଉପରେ ବଡ ଚମତ୍କାର ପାଗ - ପୃଥିବୀ ବସନ୍ତର ପରିପୂର୍ଣ୍ଣ ସମ୍ଭାରରେ ମଣ୍ଡିତ - ସମସ୍ତ ଇଂଲଣ୍ଡ ବର୍ତ୍ତମାନ ଏକ ପ୍ରକାଣ୍ଡ ବଗିଚା । କାଲି ଛୁଟି ଥିଲା, ମୁଁ ଅଧ୍ୟାପକ ମରିସନ୍‌ଙ୍କ ଘରୁକୁ ଯାଇଥିଲି । ତାଙ୍କ ସାଥିରେ ଚାରିଆଡର ମଫସଲରେ ବୁଲିଲି ବହୁତ - କି ପଲ୍ଲୀଶ୍ରୀ ! ନଦୀ, ପର୍ବତ, ଉପତ୍ୟକା ସବୁଆଡେ ନବବସନ୍ତର ଶ୍ୟାମଳ ଆସ୍ତରଣ - ଗଛଲତା ଫୁଲରେ ମଣ୍ଡି ହୋଇଛନ୍ତି, ପ୍ରାନ୍ତରଯାକ ଡ୍ରେଜି, ବଟରକପ୍‌ରେ ଆଚ୍ଛାଦିତ, ସମଗ୍ର ପୃଥିବୀ ବସନ୍ତ ସ୍ପର୍ଶରେ ଜାଗ୍ରତ । ଏମାନଙ୍କର ପ୍ରକୃତି ଆମ ପ୍ରକୃତି ଅପେକ୍ଷା ଅଧିକ ଶ୍ରୀଯୁକ୍ତା ଓ କରୁଣାମୟୀ । ଆମର ତ ବନ୍ୟା, ଦୁର୍ଭିକ୍ଷ, ଖରା ସଂଗେ ଲଢି ଲଢି ଜୀବନ ଚାଲିଯାଉଛି । ପ୍ରାକୃତିକ ସୌନ୍ଦର୍ଯ୍ୟ ଭୋଗ କରିବାକୁ ତର କା'ର ଅଛି ?

ଭାଇର ପରୀକ୍ଷା ଚାଲିଛି ।

ଲଲାଟେନ୍ଦୁକୁ ତମେ ଆଦୌ ଅତି ଆଦର କରନା । ଖାଇବା ବିଷୟରେ ଆଦୌ ଚିନ୍ତା କରନା । ଭୋଖ କଲେ ସେ ବଳେ କାନ୍ଦି ଗଡିବନି ଯେ - ତମେ ସେଥିପାଇଁ ଭାବି ହେବାକୁ ଯାଉଛ କାହିଁକି ? ତା'ର ଯାହା ଦରକାର ସେ ଖାଉ ନଥିବ କି - ତମେ ତାକୁ ବଳଉଛ କାହିଁକି ? ସେ ଅଭ୍ୟାସ ଆଦୌ କରାନି । ତା'ର ଦାନ୍ତ ଏଯାଏଁ ଉଠିଲାନି - ଚିନ୍ତାର ବିଷୟ । ମୋର ଦାନ୍ତ ଖରାପ - ତା'ର ଦାନ୍ତ ବୋଧହୁଏ ଦୁର୍ବଳ ହେବ । ବର୍ତ୍ତମାନଠୁ ସାବଧାନ ହେବା ଉଚିତ । ତମେ ଦାନ୍ତ ଉଠିବା ପାଇଁ ଔଷଧ କାହିଁକି ଖୁଆଇଲ ? ଏସବୁ ଅପ୍ରାକୃତିକ କଥା କାହିଁକି କରୁଛ ? ସେ ପଡିଆରେ ଯେତେ ବୁଲିବ ବୁଲୁ - ତା' ଦେହରେ କିଛି ଲୁଗାପଟା ଦେବନି - ତା'ଦେହରେ କୌଣସି ଅଳଙ୍କାର ଦେବନି । ଧୂଳିରେ ଗଡି ସେ ମନିଷ ହେଉ । କାଲି ଗାଡିରେ ଆସିଲାବେଳେ ଜଣେ ସାଇବାଣୀ ମୋ କାମରାକୁ ଆସିଲା ।

ତା'ସାଥିରେ ଚାରିଟି ପିଲା । ତଥାପି ସାଇବାଣୀ ବେଶ୍ ସ୍ୱାସ୍ଥ୍ୟବତୀ । ପିଲାଗୁଡ଼ିକୁ ଏଠିସେଠି ବସେଇ ଦେଲା - ସାନଟି ମା' ପାଖରେ ବସିଲା । କିଛିକ୍ଷଣ ପରେ ସାନ କହିଲା, ମମି ମୁଁ ଶୋଇବି । ବୋଉ ତାକୁ ଆଣି କୋଳରେ ଧଇଲା । ବଡ ସୁସ୍ଥସବଳ ପିଲାଟି - ପୁରୁଷ ପିଲା - କୁଂଚକୁଂଚ ବାଳ - ମୋର ଧରିବାକୁ ଇଚ୍ଛା ହଉଥାଏ । ବୋଉକୋଳ ପାଇ ପିଲାଟି ନିବୁଜ ହେଇ ବୋଉର ଛାତି ଉପରେ ଆଉଜି ରହିଲା । ବୋଉ ସେ ସ୍ପର୍ଶରେ ବିଭୋର । ସେ ପିଲାଟିକୁ ଦୁଇହାତରେ ଯାକିଧରି ତା' ଗାଲରେ, କପାଳରେ ଚୁମ୍ବନ ଦେବାକୁ ଲାଗିଲା, ତା'ର ମୁଖକୁ ଆଘ୍ରାଣ କରିବାକୁ ଲାଗିଲା ଓ ତା'ର କାନମୂଳେ ଧୀରେଧୀରେ ମଧୁର ଗୁଂଜନ କରିବାକୁ ଲାଗିଲା । ମୁଁ ଠିକ୍ ଆଗରେ ବସି ଦେଖୁଥାଏ ଓ ମନେ କରୁଥାଏ ତମେ ଓ ଇଲାଟେନ୍ଦୁ କ'ଣ ହେଉଥିବ । ଶୀଘ୍ର ଚିଠି ଦେବ ।

।ଇତି।

ତମର ପ୍ରିୟ



ଛତିଶି

# ମୁଁ ତୁମର ବୁଦ୍ଧିକୁ ପ୍ରଶଂସା କରୁଛି

Students' Union
King's College
Newcastle on Tyne
17-06-38 (Friday)

ସ୍ନେହର ଲକ୍ଷ୍ମୀ,

ଇଲାଟେନ୍ଦୁ ତମଠୁ ଆଜିଯାଏଁ ଦୁଧ ଖାଉଛି ଶୁଣି ମୁଁ ଚିନ୍ତିତ ହେଲି । ୬ମାସ ପରେ ମା' ଦୁଧରେ ରସ ନଥାଏ । ଇଲାଟେନ୍ଦୁର ଦାନ୍ତ ନ ଉଠିବାର ହୁଏତ ଏ ଏକ କାରଣ ଯେ ସେ ତମ ଦୁଧ ଉପରେ ନିର୍ଭର କରୁଛି । ଡାକ୍ତର ଯେ କାଲ୍‌ସିୟମର ଅଭାବ କହିଛି ହୁଏତ ତା' ଠିକ୍ । ତମଠୁ ଦୁଧ ଖାଇବାର ଏକ ପ୍ରଧାନ କାରଣ, ତମର ଚୁଚୁକାଗ୍ରକୁ ଚୁଚୁମେଇବାର ସୁଖ । ଏ ଅଭ୍ୟାସ ଛାଡିଥାନ୍ତା ଯଦି ତମେ feeding-bottle ଅଭ୍ୟାସ କରେଇଥାନ୍ତ । ଏ ବୋତଲର ମୁହଁରେ ରବରର ଚୁଚୁକ ଥାଏ । ପିଲାକୁ ମୁହେଁଇଦେଲେ, ପିଲା ତାକୁ ଚୁଚୁମେଇ ବୋତଲଯାକ ଦୁଧ ପିଇଥାଏ । ଏଠି ପ୍ରତ୍ୟେକ ପିଲା ସେଇପରି ଦୁଧ ଖାନ୍ତି । ତମେ ଯଦି ଏହା କରିନ, ଶୀଘ୍ର କର । ଟାଟା ନଗରରେ ତ ଏହା ନିଶ୍ଚୟ ମିଳିବ - ହୁଏତ ଦାମ୍ ୧୦/୧୨ ଅଣା ଖଣ୍ଡେ । ଏଥିରେ ପିଲାକୁ ମାଡିବସି ଦୁଧ ଖୁଆଇବା ଜଂଜାଳରୁ ତମେ ରକ୍ଷା ପାଇବ - ପିଲା ବି ମଉଜରେ ଦୁଧ ଖାଇବ । ଏଠି ଦେଖିଛି ପିଲାକୁ ଟଣା-ଗାଡିରେ ଶୁଆଇ ଦେଇ ମା' ଠେଲି ଠେଲି ହାୱା ଖୁଆଉଛି, ଏଣେ ପିଲା ମୁହଁରେ ସେ ବୋତଲରୁ ଗୋଟେ ଗୁଞ୍ଜା ହେଇଛି - ସେ ବେଶ୍ ମଉଜରେ ଚୁଚୁମେଇ ଚୁଚୁମେଇ ଦୁଧ

ଖାଇଛି । ବୋତଲର ଆକାରଟା ମା' ଛାତି ପରି ପ୍ରାୟ, ତେଣୁ ପିଲାଏ ପିଇଲାବେଳେ ତାକୁ ଦି'ହାତରେ ଚିପି ଧରିବାର ଦେଖିଛି ।ଏଥିରୁ ଗୋଟିଏ ଆଣି ଶୀଘ୍ର ଅଭ୍ୟାସ କରାଅ ।

ତମୁକୁ କିଏ ଆସକ୍ତିପୂର୍ଣ୍ଣ ଚିଠି ଲେଖିଛି ମୁଁ ଜାଣିବାକୁ ଚାହେନା । ତମେ ଚିଠି ନଲେଖି ଖୁବ୍ ଭଲ କରିଛ ।ମୁଁ ତମର ବୁଦ୍ଧିକୁ ପ୍ରଶଂସା କରୁଛି ।ହୁଏତ ଏ ଆରମ୍ଭ ।ତମେ ଖୁବ୍ ସାବଧାନ ରହିବ ।

ତମେ ଭାଇ ପାଖକୁ ଲେଖିଛ ଗୋଟେ ସିଲେଇକଳ ଆଣିବ ବୋଲି ।ମୁଁ ଗଲେ କ'ଣ ସିଲେଇ କଳ ଅଣା ହେଇ ପାରିବନି ? ସେ ଦୁର୍ବୁଦ୍ଧି ଛାଡ ।ସିଲେଇ କରି, କେତେ ବନ୍ଦଖର୍ଚ୍ଚରୁ ବା ମତେ ତମେ ରଖିବ ? ବରଂ ମୁଁ ପୂର୍ବେ ଯାହା ଲେଖିଛି, ସେ ଆଡିକି ଗଭୀର ମନଯୋଗ ଦିଅ ।ଅର୍ଥାତ୍, ଶାନ୍ତିନିକେତନ ଯିବାର ଯୋଗାଡ କର ।ଏମିତି ସମୟ ଆଉ ମିଳିବନି ।ମୁଁ ଗଲେ ପୁଣି ପିଲା ହେବ ।ଦି'ଟା ପିଲା ହେଲା ପରେ ଆଉ ତମର ମନ ଓ ଦେହର ଉତ୍ସାହ ଥିବ ନା କିଛି ନୂଆ ଶିଖିବାକୁ ? ସିଲେଇ କଳର ଦାମ୍ ବୋଧହୁଏ ୧୫୦ ଟଙ୍କା ଖଣ୍ଡେ ପଡିବ ।ସେଇ ଟଙ୍କାରେ ତମେ ସୁନ୍ଦର ୬ମାସ ରହିବ ଶାନ୍ତିନିକେତନରେ । ଆନ୍ତତଃ ୬ମାସ ପାଇଁ ହେଲେ ଯାଅ ।ହେମଟି ପରା, ମୋର ଏ ଅନୁରୋଧକୁ ସାମାନ୍ୟ ଖିଆଲ୍ ବୋଲି ମନେ କରନା ।ମୋର ଧାରଣା, ସେଠି ୬ମାସ ରହିଲା ପରେ ତମେ ନୂଆ ମନିଷ ହେଇ ଫେରିବ ।ଓଡିଆମାନଙ୍କର ବଡ ଦୁର୍ଭାଗ୍ୟ ଯେ, ସେମାନେ ତାଙ୍କ ଦେଶର କ୍ଷୁଦ୍ର ସୀମା ଭିତରେ ହିଁ ଆବଦ୍ଧ ରହି ନିଜନିଜ ଭିତରେ ବାଡିଆପିଟା ଲଗେଇଛନ୍ତି । ତମେ କେବଳ ବଂଗାଳୀଙ୍କି ସଭ୍ୟ ଜାତି ବୋଲି ଦେଖିଛ ।ଶାନ୍ତିନିକେତନ ଗଲେ ଦେଖିବ, ସବୁ ଜାତିର ଲୋକ - ଗୁଜରାଟୀ, ମାଲୟାଲମି, ତାମିଲ୍, ଆସାମୀ, ଚୀନା, ଜାପାନୀ, ଟିବେଟାନ୍, ଆରବ୍ ଇତ୍ୟାଦି ।ଭାରତବର୍ଷର ଯାହାକିଛି ସବୁଠୁ ଶ୍ରେଷ୍ଠ ଓ ସୁନ୍ଦର ସେଠି ତମେ ଦେଖିବାକୁ ପାଇବ - ଭଲ ନୃତ୍ୟ କ'ଣ, ଭଲ ଚିତ୍ର କ'ଣ, ଭଲ କବିତା କ'ଣ ଏହା ଜାଣିପାରିବ ।ଘରଟିଏ ସଂପୂର୍ଣ୍ଣ ଭାରତୀୟ ରୀତିରେ କିମିତି ତିଆର ଓ ସଜେଇବାକୁ ହେବ ତା' ବି ଦେଖିବ ।ରବୀନ୍ଦ୍ରନାଥ ଆମର ପୌରାଣିକ ଯୁଗର ଆଦର୍ଶକୁ ସେଠି ନୂତନ ଛାଞ୍ଚ ଦେଉଛନ୍ତି - ତମେ ଆଦର୍ଶ ହିନ୍ଦୁ ନାରୀ ହେବାକୁ ଯଦି ଚାହଁ, ତେବେ ସେଠିକି ଯିବା ନିତାନ୍ତ ଦରକାର ।ମୁଁ ଟଙ୍କା ଦେଇପାରୁନି ।କିନ୍ତୁ ତମର ପୂରା ଗୋଟେ ବର୍ଷ ଖାଲି ନଷ୍ଟ ହେଇଯିବ ମୁଁ ଚାହେଁନା। ବୟସ ଗଲେ ଆଉ କ'ଣ ଫେରିପାଇବ ? ତମେ ବର୍ତ୍ତମାନ ଯିମିତି free ଅଛ ଜୀବନରେ ଆଉ କେବେ ଇମିତି ହେଇ ପାରିବନି ।ତେଣୁ ଏ ସୁଯୋଗକୁ କାମରେ ଲଗାଅ ।କୌଣସିମତେ ତମର ନିଜ ଦାୟିତ୍ୱରେ ଟଙ୍କା ଯୋଗାଡ କରି ଚାଲିଯାଅ - ଅନ୍ତତଃ ୬ମାସ ପାଇଁ ।

ମୁଁ ତମର କୌଣସି ଆପତ୍ତି ଶୁଣିବାକୁ ଚାହେଁନା ।

।ଇତି।

ତୁମର ପ୍ରିୟ



## ସର୍ଗତିରିଶି

# ମୁଁ ମୋଟାହୋଇ ଯାଉଛି

Students' Union
King's College,
Newcastle on Tyne
24-06-38

ସ୍ନେହର ଲକ୍ଷ୍ମୀ,

ଭାଇ ପାଶ୍ କରିଛି । ଆଉ ୪ ଦିନ ଗଲେ କଲେଜ୍ ଗ୍ରୀଷ୍ମଛୁଟି ପାଇଁ ତିନିମାସ ବନ୍ଦ ହେବ । ମୁଁ ଅକ୍ସଫୋର୍ଡ ପ୍ରଭୃତି ଯିବି । ଜୁଲାଇ ୧୫ ଆଡିକି ମୁଁ ଏଠୁ ଚାଲିଯିବି । ଫେର୍ ଅଗଷ୍ଟମାସ ଶେଷ ଆଡିକି ଏଠିକି ଫେରିବି । ଭାଇ କ'ଣ କରିବ, କୁଆଡେ ଯିବ ମୁଁ ଜାଣେନା । ସେ ମତେ କିଛି କହେନା । ତା'ର କାମ ସେ କରି ଚାଲିଥାଏ ।

ମୋର ଆସିବାର ବର୍ଷେ ହେଇଗଲା । ଇଲାଟେଣ୍ଡ୍ରର ବର୍ଷ ପୂରିଆସିଲା । ପ୍ରଥମେ ପ୍ରଥମେ ବଡ ଖରାପ ଲାଗୁଥିଲା ଏଠି । ବର୍ଷେକାଳ କଟିଗଲା ପରେ ଆଉ ମନ ବେଶୀ ଘରମୁହାଁ ହଉନି ସେତେ - ମନେ ହଉଛି ହଁ ଏଇପରି ତ କଟିଯିବ, ଆଉ କ'ଣ ! ଏଠାର ଲୋକେ ଭାରତବର୍ଷ ସମ୍ବନ୍ଧରେ ବିଶେଷ ଭାବରେ ଜାଣିବା ପାଇଁ ଆମେ ଏଠି କେତେଗୁଡ଼ିଏ ଭାରତବର୍ଷ ସମ୍ବନ୍ଧୀୟ ବଛା ବଛା ବହି ଆଣି ଛୋଟ ଲାଇବ୍ରେରୀଟିଏ ଖୋଲିଛୁ । ମତେ ଲାଇବ୍ରେରିୟାନ୍ କରିଛନ୍ତି । କାଲି ଆମେ opening ceremony କଲୁ । ଆଜି ଏଠାର ସ୍ଥାନୀୟ ଖବରକାଗଜରେ ଏକଥା ବାହାରିଥିଲା ।

ଦୁର୍ଗା ଦାସଙ୍କଠୁ ଚିଠି ପାଇନି ଏଯାଏଁ । ମୋ ମନ ଏବେ ପୁଣି ଟଙ୍କା ଉପରେ ରହିଲାଣି । ବରାଳ ଟଙ୍କା ଦେଇଥିଲେ, ମୋର ସାମାନ୍ୟ ସାମାନ୍ୟ ଖର୍ଚ୍ଚ ପାଇଁ ତା'ଉପରେ ହାତ ପକେଇଲିଣି । ଦାସେ କିଛି ଟଙ୍କା ଯୋଗାଡ କରି ନଦେଲେ, ସେତକ ଫାଙ୍କା ଉଡିଯିବ ।

ମୁଁ ଭଲ ଅଛି । ସର୍ଦ୍ଦି ଭଲ ହେଇଗଲାଣି । ମୁଁ ମୋଟା ହେଇଯାଉଛି ବୋଲି ଅନେକେ କହୁଛନ୍ତି । ସ୍ୱାସ୍ଥ୍ୟ ବି ଭଲ ହେଉଛି ବୋଲି ଶୁଣୁଛି ।

ବାରିପଦାରେ କଲେଜ ବସୁଛି ? କେବେ ? ତା' ସମ୍ବନ୍ଧରେ ଯାହା ଜାଣିଛ ଲେଖ ।

।ଇତି।
ତମର ପ୍ରିୟ



## ଅଠତିରିଶି

# ମୋର ପକ୍ଷ ଥିଲେ ମୁଁ ଏଇକ୍ଷଣି ଉଡିଯାନ୍ତି

Students' Union
King's College,
Newcastle on Tyne
27-06-38

ସ୍ନେହର ଲକ୍ଷ୍ମୀ,

କାଲି ରବିବାର ଜଣେ ପଞ୍ଜାବୀ ଭଦ୍ରଲୋକ ଓ ତାଙ୍କ ସ୍ତ୍ରୀ ସହିତ ଭେଟ ହୋଇଥିଲା । ଭଦ୍ରଲୋକ ବଡ ସରକାରୀ ଚାକିରିଆ । ସ୍ତ୍ରୀ ବେଶ୍ ପାଠୋଇ । ସ୍ୱାମୀ ଯେତିକି ମୋଟା ସ୍ତ୍ରୀଟି ସେତିକି ପତଳା ଓ ମାଲେରିଆଗ୍ରସ୍ତ । ତାଙ୍କର ଦୁଇଟି ପିଲା - ୫/୬ବର୍ଷର । ସେମାନେ ବି ସାଥିରେ ଥିଲେ । ଆଶ୍ଚର୍ଯ୍ୟର କଥା ସେମାନେ ଠିକ୍ ସାହେବ ପିଲା ପରି ଇଂରେଜୀ କହୁଥିଲେ । ପିଲାଦିନୁ ଏଠିକି ନେଇଆସିବାରୁ ସେମାନେ ବଳେ ବଳେ ଇଂରେଜୀ କହି ଶିଖିଛନ୍ତି - ଅବଶ୍ୟ ତାଙ୍କ ପାଇଁ ମାଷ୍ଟ୍ରାଣୀ ମଧ୍ୟ ରଖା ହୋଇଛି । ଲଲାଟେନ୍ଦୁ ୫ ବର୍ଷ ହେବା ପୂର୍ବରୁ, ଅର୍ଥାତ୍ ସେ ବିଦ୍ୟାରମ୍ଭ କରିବା ପୂର୍ବରୁ କିମିତି ଇଂରାଜୀ କହି ଶିଖିପାରିବ ଆମର ତା' ଦେଖିବାକୁ ହେବ । ମୁଁ ଭାବୁଛି ସହଜତମ ଉପାୟ ହେଉଛି, ଆମର ବାଲୁଗାଁରେ ରହି, ତାକୁ ଆଇଜାକ୍ ଓ ତା'ସ୍ତ୍ରୀ ସହିତ ମିଶିବାକୁ ଯେତେ ସୁଯୋଗ ଦିଆଯାଇପାରେ, ତା'ଦେବା ଉଚିତ । ଛୋଟବୟସ ଭାଷା ଶିଖିବାର ଶ୍ରେଷ୍ଠତମ କାଳ । ମୁଁ ଏହି ବିଷୟ ବହୁତ ଦିନରୁ ଭାବି, ଆଇଜାକ୍ ପାଖକୁ ଘରକଥା ପଚାରି ଚିଠି ଲେଖିଥିଲି । ସେ ଉତ୍ତର ଦେଇଛି- ତମେ ଆସ, ଘର କଥା ଭାବିବାକୁ ଢ଼େର ସମୟ ଅଛି । ମୁଁ ତା'ର ଉତ୍ତର ଦେଇନି ।

ଟଙ୍କା ପଇସା ବିଷୟରେ କୌଣସି ପତ୍ର ଏଯାଏଁ ପାଇଲିନି । ମନ ବଡ ବ୍ୟସ୍ତ ହେଉଛି । କାଲି କଲେଜ୍ ଛୁଟି ହେଇଯିବ । ଦୀର୍ଘ ଛୁଟି ତିନିମାସ କିମିତି କଟିବ କେଜାଣି । ମୋ ମନ ଭୟଙ୍କର ବ୍ୟସ୍ତ ଥିବାରୁ ମୁଁ ବେଶୀ କିଛି ଲେଖିପାରୁନି । ଆମର ଭାରତୀୟ ବନ୍ଧୁମାନଙ୍କ ମଧ୍ୟରୁ ଯେଉଁମାନଙ୍କର ପରୀକ୍ଷା ଶେଷ ହେଲା, ସେମାନେ ଗୋଟି ଗୋଟି ହେଇ ବିଦାୟ ନେଉଛନ୍ତି । ସେମାନେ ଗଲାବେଳେ ମନ ଯିମିତି ଛିଣ୍ଡେଇ ହଉଛି କ'ଣ କହିବି । ଓଃ ! ମୁଁ କେବେ ମୋ ଦେଶର ମାଟିରେ ପାଦ ଦେବି ! ମୋର ପକ୍ଷ ଥିଲେ ମୁଁ ଏଇକ୍ଷଣି ଉଡିଯାନ୍ତି । ଚିଠି ଦେବ ।

।ଇତି ।
ପ୍ରିୟ



**ଅଣଚାଳିଶି**

# ଲଲାଟେନ୍ଦୁ କୁ ତ ବର୍ଷେ ହୋଇଗଲା

Students' Union
King's College, Newcastle on Tyne
05/07/38

ସ୍ନେହର ଲକ୍ଷ୍ମୀ,

ମୋର ବହିତକ କାଲି ପାଇଲି । ଅମୃତବଜାର ପତ୍ରିକା ଓ ଜଗନ୍ନାଥ ମିଶ୍ରଙ୍କ ଟିପଣୀ ପଠେଇବାକୁ ମଧ୍ୟ ମୁଁ କହିଥିଲି । ଭୁଲିଗଲ ।

କିଛିଦିନ ଗରମ ହେଇଥିଲା । ବର୍ତ୍ତମାନ ଏଠି ଠିକ୍ ଶୀତଦିନ ପରି ପୁଣି ଭୟଙ୍କର ଥଣ୍ଡା । ବର୍ଷା, ଝଡି ଲାଗିରହିଛି ।

ଆମର କଲେଜ ବନ୍ଦ ହେଇଗଲାଣି । ଭାଇ ପାଶ୍‌କରି ବସିଛି । ଟଙ୍କା ନାହିଁ, ତେଣୁ ସେ ବା ମୁଁ କୁଆଡେ ନଯାଇ ଏଠି ପଡିରହିବାକୁ ବାଧ୍ୟ ହୋଇଛୁ । ସେ ନିକଟରେ ଓଡିଶା ସରକାରଙ୍କୁ ତା'ର ବୃତ୍ତି ବଢ଼େଇବାକୁ ଗୋଟେ ଦରଖାସ୍ତ କରିଛି । ତାହା ହୁଏତ ନ ହେଇପାରେ । କାରଣ ଓଡିଶା ସରକାର ଆଉଜଣଙ୍କୁ ଇତିମଧ୍ୟରେ ଠିକ୍ କରିସାରିବେଣି । ସେ ଯଦି ଏଠି ପୁଣି ଦୁଇବର୍ଷ ରହେ, ତେବେ ତମୁକୁ ହୁଏତ ପୂରା ଖର୍ଚ୍ଚ ବହନ କରିବାକୁ ପଡିପାରେ ।

କଟକ ଯାଇଥିଲ । ଫେରିବଣି । ଢେମାର ବିଭାଘର, ହେମବାବୁଙ୍କ ବିଭାଘର ଓ ଓଡିଶାର ଅନ୍ୟାନ୍ୟ ଖବର ଟିକିଏ ଭଲ କରି ଲେଖିବ । ମୁଁ ନଷ୍ଟନୀଡ ଏଯାଏଁ ପାଇନି । ଏ ମାସଠୁ ଆଉ ଲେଖା ପଠଉନି ନବଭାରତକୁ । ଅଭଦ୍ର ଗୁଡାକ !

ଲଲାଟେନ୍ଦୁକୁ ତ ବର୍ଷେ ହୋଇଗଲା । ସେ ଚାଲିଲାଣି ନା ନାହିଁ, କିମିତି କଥା କହୁଛି, କ'ଣ ଖାଇଲାଣି, ଲେଖିବ ।

ମୋର ଆଖି ବହୁତ ଖରାପ ହୋଇଯାଇଛି ଏ ଭିତରେ । ଗତ ଶନିବାର ଡାକ୍ତରଖାନାକୁ ଯାଇ ଆଖି ପରୀକ୍ଷା କରିଆସିଛି । କାଲି ଯାଇ ଚଷମାର ବରାଦ ଦେବି । ଏଥର ମତେ ସବୁବେଳେ ଚଷମା ଦେବାକୁ ହେବ ବୋଧହୁଏ - ବଡ ବିଷମ କଥା ହେଲା । ଚଷମା ଲଗେଇଲା ପରେ, ତମ ପାଖକୁ ଗୋଟେ ଫଟୋ ପଠେଇବାକୁ ଚେଷ୍ଟା କରିବି ।

ଗତ ବୁଧବାର ଏଠାର ଏକ ଛୋଟ ସଭାରେ ମତେ ଗାନ୍ଧିଙ୍କ ଅହିଂସା ପ୍ରତିରୋଧ ବିଷୟରେ କହିବାକୁ ହୋଇଥିଲା ।

ଟଙ୍କାର ଯୋଗାଡ ସମ୍ବନ୍ଧରେ କୁ'ଠୁ କିଛି ଖବର ନପାଇ, ମୋ ମନ ବଡ ବ୍ୟସ୍ତ ଅଛି ।

।ଇତି।
ତମର ପ୍ରିୟ



## ଚାଳିଶି

# ହେମକୁ ଦୁଃଖ ଦାରିଦ୍ର୍ୟ ମଧ୍ୟଦେଇ ଚଳିବାକୁ ହେବ

Students' Union
King's College
Newcastle on Tyne
08-07-38 (Friday)

ପ୍ରାଣର ଲକ୍ଷ୍ମୀରେ,

ଧନ, କଟକରୁ ଦେଇଥିବା ଚିଠି ପାଇଛି । ମୋ ଲାଗି ବିଭାଘରର ଆନନ୍ଦ ଉତ୍ସବରେ ମଧ୍ୟ ତୁ ବ୍ୟସ୍ତ ହେଇଥିବୁ, ତା' ମୁଁ ବିଶ୍ୱାସ କରୁଛି । ଠିକ୍ ତୋ'ରି ପରି ମୋର ମଧ୍ୟ ଅବସ୍ଥା । ଆସିଲାଦିନୁ ମୁଁ କେବଳ ଦିନ ଗଣୁଛି କେଉଁଦିନ ଘରମୁହାଁ ହେବି । ତାହା ଯେ କେବଳ ତୋରି ଲାଗି, ତାହା ତତେ ବୁଝେଇବାକୁ ହେବନି ।

କାଲି ହିସାବ କରି ଦେଖିଲି, ସବୁସବୁ ହେଇ ପ୍ରାୟ ପାଞ୍ଚ ହଜାର ଟଙ୍କା ମତେ ଶୁଝିବାକୁ ହେବ । ଅବଶ୍ୟ ସାହୁକାରଙ୍କ ଭିତରେ ବେହୁରାବଂଶ ଓ ନନ୍ଦଲାର ବିଶେଇଘର ମଧ୍ୟ ଗଣା ହେଇଛନ୍ତି । ଗଲେ କେବେ ଚାକିରି କରିବି, କେତେ ଟଙ୍କା ପାଇବି ଓ କିପରି ଶୁଝିବି । ଦେଖୁଛି ଚାକିରି ମିଳିଲା ପରେ ମଧ୍ୟ ଅନେକବର୍ଷ ଧରି ଆମକୁ (ଅର୍ଥାତ୍ ହେମକୁ) ଏଇ ଦୁଃଖ ଦାରିଦ୍ର୍ୟ ମଧ୍ୟଦେଇ ଚଳିବାକୁ ହେବ । ତମେ ମତେ କାହିଁକି ବିଭା ହେଲ ? ସାଧାରଣ ଆର୍ଥିକ ସ୍ୱଚ୍ଛଳତା ପାଉପାଉ ତମେ ହୁଏତ ବୁଢ଼ୀ ହେଇଥିବ- ଅଥବା କେବେ ବି ପାଇ ନପାର ଆଦୌ ।

ବର୍ତ୍ତମାନ ଛୁଟି । ତଥାପି ଲାଇବ୍ରେରୀ ଖୋଲା ଥିବାରୁ, ଦି'ଚାରି ଘଣ୍ଟା ସେଠି ପଢ଼ି ସମୟ କାଟୁଛି । ଏ ମାସ ୨୮ ତାରିଖରୁ ଲାଇବ୍ରେରୀ ବି ବନ୍ଦ । ଏଣେ ଦୁର୍ଗାଦାସେ ଚିଠି ଖଣ୍ଡେ ବି ଦେଲେନି । ତାଙ୍କ ଉପରେ ନିର୍ଭର କରି ଛୁଟିଟା ଅକ୍ସଫୋର୍ଡ ପ୍ରଭୃତିରେ କଟେଇବି ବୋଲି ଭାବିଥିଲି । ହୁଏତ ତା' ହେଇପାରିବନି । କିନ୍ତୁ ଦୀର୍ଘଛୁଟି ତାହାହେଲେ କିମିତି କଟେଇବି ? ଏ ଦେଶର ଜଳବାୟୁ ଏପରି ଯେ, ମନିଷ ଘରେ ରହିପାରିବନି । ସାମାଜିକ ବ୍ୟବସ୍ଥା ଏପରି ଯେ, ବଂଧୁତା ବଡ ବ୍ୟୟସାଧ୍ୟ । ଯା'ର ଟଙ୍କା ପଇସା ନାହିଁ, ସେ ଚଳେ କିପରି ?

ବର୍ତ୍ତମାନ ଏଠାର ପାଗ ବଡ କନ୍ଦର୍ଯ୍ୟ । ଦିନଯାକ ମେଘୁଆ, ଟପ୍‌ଟପ୍ ବର୍ଷା, ଥଣ୍ଡା ପବନ - ଠିକ୍ ଆମର ଶୀତ କାଳ ପରି । ଦିନ ଏତେ ଦୀର୍ଘ ଯେ ଉପର ଓଳି ୧୧ଟା ପର୍ଯ୍ୟନ୍ତ ଆଲୁଅ । ଏଣେ ରାତି ୩ଟା ବେଳୁ ସକାଳ ଆରମ୍ଭ । ଆମେ ଏବେ ଆଲୁଅରେ ଶୋଇ ଆଲୁଅରେ ଉଠୁଛୁ । ଶୀତଦିନର ଠିକ୍ ଓଲଟା ।

ଅନେକ ସମୟରେ ଭାରି ମନେପଡୁଛ । ତମୁକୁ ନେଇ ଅନେକ ସମୟରେ ମାନସିକ ସମ୍ଭୋଗ କରେ - ଯେତେ ଦମନ କଲେ ମଧ୍ୟ, ବାରମ୍ବାର ମନରେ ଉଠେ । ଆ

ଧନ, ତୋର ବସ୍ତ୍ରହୀନ କୋମଳ ଯୌବନ ମୋ ଦେହରେ ଘୁଞ୍ଚେଇ ଦେ'ରେ - ତତେ ଭିଡି ଧରି ମୁଁ ମୋ ଦେହରେ ମିଶେଇ ଦିଏ - ଓଠ ଦେ'ରେ, ଗଭୀର ଚୁମ୍ବନ ଦିଏ .....

ତୋର
ପ୍ରିୟ

●

ଏକଚାଳିଶି

## ମୋ ଚକ୍ଷୁ ଲୋତକରେ ରୁଦ୍ଧ ହୋଇ ଆସିଲା

Students' Union
King's College
Newcastle on Tyne
15-07-38

ସ୍ନେହର ଲକ୍ଷ୍ମୀ,

ଗତ ସୋମବାର ଦିନ ତମ ପାଖକୁ ଚିଠି ଦେଇ ନପାରି ମୁଁ ଭୟଙ୍କର ଅନୁତପ୍ତ । ତମୁକୁ ତ କହିଛି ମନ ବର୍ତ୍ତମାନ ଭଲ ନାହିଁ । ଅକ୍ସଫୋର୍ଡ ପ୍ରଭୃତି ଯିବା ବନ୍ଦ କରି ଦେଲିଣି । ଦୁର୍ଗାଦାସେ ୧୦୦ ଟଙ୍କା ଖଣ୍ଡେ ଦେବାକୁ କହିଥିଲେ; ବାରମ୍ବାର ଚିଠି ଲେଖି ତାଙ୍କଠୁ ଉତ୍ତର ବି ପାଇବାକୁ ନାହିଁ । ତାଙ୍କରି ଟଙ୍କା ଉପରେ ନିର୍ଭର କରି ମୁଁ ଅକ୍ସଫୋର୍ଡ ପ୍ରଭୃତି ଯିବାକୁ ବସିଥିଲି । ବର୍ତ୍ତମାନ କିନ୍ତୁ ଦୀର୍ଘ ଛୁଟି ଏଇ ନିଉକାସଲ୍‌ରେ କଟେଇବାକୁ ହେବ । ସାଧାରଣ ଖର୍ଚ୍ଚ ଲାଗି ମୁଁ ବରାଳ ଦେଇଥିବା ଟଙ୍କାରୁ ୨ପାଉଣ୍ଡ ଖଣ୍ଡେ ଖର୍ଚ୍ଚ କରିସାରିଲିଣି । ଭାଇ ତମର ଟଙ୍କାକୁ ଅନେଇ ବସିଛି । ଟଙ୍କା ପାଇଲେ ସେ ଏଠା ଛାଡି ଅନ୍ୟତ୍ର ଚାଲିଯିବ । ସେ ଚାଲିଗଲା ପରେ ମତେ ସଂପୂର୍ଣ୍ଣତଃ ନିଜ ଉପରେ ନିର୍ଭର କରିବାକୁ ହେବ । କିନ୍ତୁ ମୋର ଏ ପର୍ଯ୍ୟନ୍ତ କୌଣସି ବନ୍ଦୋବସ୍ତ ହେଇପାରିଲାନି । ଦିନେ ବଡ ବ୍ୟସ୍ତ ହୋଇ ଜଣେ ଇଂରେଜ ଭଦ୍ରଲୋକଙ୍କ ନିକଟକୁ ଯାଇ ସବୁକଥା କହିଲି । ସେ ମତେ କୌଣସି ପ୍ରକାର ସାହାଯ୍ୟ ଦେଇପାରିଲେନି; ଫେରିଲାବେଳେ ଦାରିଦ୍ର୍ୟ ଓ ଦାରିଦ୍ର୍ୟ ପତିତ ଭିକ୍ଷାର ଘୋର ଲଜ୍ଜା ମତେ ମ୍ରିୟମାଣ କଲା । ବିଦେଶକୁ ଆସି ଏ ପ୍ରକାର ଅବସ୍ଥାରେ ପଡିବା ଜେଲ୍ ଯିବାଠୁ ଘୋରତର ଅପମାନଜନକ ଓ ମର୍ମବିଦାରକ । ମୋର ଏ ପ୍ରକାର ଅବସ୍ଥାରେ ତମେ ମୋଠୁ ଚିଠିପତ୍ର ନିୟମିତ ଆଶା କରିବା ଉଚିତ ନୁହେଁ । ........ ଏଇ କଥା ଲେଖିଲାବେଳେ ମୋର ବକ୍ଷ ଶୋକରେ ଓ ଚକ୍ଷୁ ଲୋତକରେ ରୁଦ୍ଧ ହେଇ ଆସିଲା ଓ ମୋର ଦୁଇଟୋପା ଉଚ୍ଛ୍ୱସିତ ଅଶ୍ରୁ ଏଇ ଚିଠି ଉପରେ ପଡିଗଲା । ଏ ଦେଶକୁ ଆସିଲାଦିନୁ ଦାରିଦ୍ର୍ୟ ଯୋଗୁଁ ମୁଁ କେତେ ଅପମାନ, କେତେ ଦୁଃଖ, କେତେ ବିଡମ୍ବନା ସହିଛି, ତା'ତମେ ଅନୁମାନ କରିପାରିବନି । କେତେ ଅଶ୍ରୁ ତ୍ୟାଗ କରିଛି ତା ତମେ ଜାଣିପାରିବନି । ମୋର ନିଜ ଦେଶରେ ମୁଁ ପ୍ରସିଦ୍ଧ, ମୋର ସାଧ୍ୱୀ ଗୁଣବତୀ ପତ୍ନୀ ଓ ସ୍ନେହର ସନ୍ତାନ (ଧନରେ, ଏଇ

ବାକ୍ୟଟି ଲେଖିବାକୁ ଆରମ୍ଭ କଲା ସଙ୍ଗେ ସଙ୍ଗେ ମୋର ଅଶ୍ରୁ ପୁଣି ବହିବାକୁ ଆରମ୍ଭ କଲା ....) କୁ ମୋର ଘରେ ଛାଡି ବିଦେଶରେ ଦାରିଦ୍ର୍ୟ ଯୋଗୁ କଷ୍ଟ ପାଉଛି - ଏ ଚିନ୍ତା ମୋର ଦୁଃଖକୁ ବହୁଗୁଣିତ କରି ଦେଉଛି ।

ତମେ ସୋମବାର ଚିଠି ଦେଲନି କାହିଁକି ? ଆଜି ଶୁକ୍ରବାର - ଆଜି ବି ଆଉଲାନି ଚିଠି । ମୁଁ ସପ୍ତାହରେ ଦୁଇଥର ଦେବାକୁ ଚେଷ୍ଟା କରିବି । ଚିଠି ନଦେଲେ ମୋର ନିଜ ମନ ତ ବ୍ୟସ୍ତ ହେଉଛି ।

ବର୍ତ୍ତମାନ ଏଠି ସେହିପରି ଶୀତ, ବର୍ଷା ଓ ମେଘୁଆ । ଠିକ୍ ଆମର ଶୀତଦିନ ପରି । ଆମର ଖରାଦିନ ଏଠି କେବଳ କଳ୍ପନାର ବିଷୟ ।

ବର୍ତ୍ତମାନ ଆମର ସେଠି ବର୍ଷାକାଳ ହେଉଥିବ । ବର୍ଷା-ମୁଖର ମେଘ-ଅନ୍ଧାରିତ ଦିନ ଓ ରାତିରେ ମୁଁ ବେଳେବେଳେ ମନ ପଡୁଥିବି ବୋଧହୁଏ । ଯାହାହେଉ ଆରବର୍ଷ ଏଇ ଦିନକୁ ମେଘ ଆକାଶ ଘୋଡେଇ ଦିଗ୍‌ବଳୟ ଉପରକୁ ନଇଁ ଆସିଲାବେଳେ ମୁଁ ତମକୁ କୋଳରେ ନିବିଡ ଭାବରେ ଆଲିଙ୍ଗନ କରି ଦୁଇଗଣ୍ଡରେ ଘନ ଘନ ଚୁମ୍ବନ ଦେଉଥିବାର ଆଶା କରେ ।

ଲଲାଟେନ୍ଦୁ କ'ଣ କରୁଛି ? ତା' ବିଷୟରେ ଲେଖିବ । ତମେ ସବୁ ତାକୁ ମାଡିବସି ଖୁଆଉଛ କାହିଁକି ? ପ୍ରକୃତି ଉପରେ ସବୁ ଭାର ଛାଡିଦିଅ । ପ୍ରକୃତି ଯାହା ଦରକାର କରିବ, ସେତ ବଳେ ତମକୁ ମାଗି ପେଟ ଭିତରକୁ ନେବ । ତାକୁ ଖୁଆଇବା ଲାଗି ଏତେ ବ୍ୟସ୍ତ ହେଉଛ କାହିଁକି ? ଖୁଆଇ ତାକୁ ଅଜୀର୍ଣ୍ଣ-ଝାଡା କରଉଛ ବା କାହିଁକି ?

ତମର ଦେହ କିମିତି ଅଛି ? ଲେଖିବ । ମୋର ଦେହ ବେଶ୍ ଭଲ ଅଛି । ଶୀଘ୍ର ଚିଠି ଦେବ ।

।ଇତି।

ତମର ପ୍ରିୟ ।



**ବୟାଳିଶି**

## ଏ ଖାଲି ସୁଆଗ

ନିଉକାସଲ୍

୧୮-୦୭-୩୮ (ସୋମବାର)

ସ୍ନେହର ଲକ୍ଷ୍ମୀ,

ତୋର ପତ୍ର ପାଇଲି । ମୋର ଛୋଟ ଚିଠି ଦେଖି ତମେ ଅଭିଯୋଗ କରିଛ । କିନ୍ତୁ ମୁଁ ନାଚାର । କଥା ଥିଲେ, ତମକୁ ଲେଖି ଜଣାଇବାଟା ମୋର ଏକ ବିଶିଷ୍ଟ ସୁଖ । ଏଯାଏଁ ତ ଆସିଲାଦିନୁ ଲମ୍ବାଲମ୍ବା ଚିଠି ଦେଉଆସୁଛି । ବର୍ତ୍ତମାନ କିନ୍ତୁ ଛୁଟି - ମୁଁ ଏଠି ପଡିରହିଥିବାରୁ ଓ ଟଙ୍କାପଇସାର ବିଶେଷ ଅଭାବରୁ ମୋର ମନ ଭଲ ନାହିଁ, ଲେଖିବାକୁ

ଇଚ୍ଛା ବି ନାହିଁ । ଛୁଟିରେ ଅକ୍ସଫୋର୍ଡ ପ୍ରଭୃତି ଯାଇଥିଲେ, ଭିନ୍ନ ଭିନ୍ନ ଲୋକଙ୍କ ସଂଗେ ମିଶିଥିଲେ, ଭିନ୍ନ ଭିନ୍ନ ଜାଗା ଦେଖିଥିଲେ, ବିଶିଷ୍ଟ ଅନୁଭୂତି ଘଟିଥିଲେ ସିନା ଲେଖିବାକୁ ରସଦ୍ ମିଳିଥାନ୍ତା ! ସେଇ ନିଉକାସଲରେ ପଡି ରହିଲି ତ, ଲେଖିବି କ'ଣ ! ଏଇ କାରଣରୁ ପ୍ରେମିକ ପ୍ରେମିକା ତ ପରସ୍ପର ପ୍ରତି ବାସି ହୋଇଯାନ୍ତି, ଅନ୍ୟ କଥା କ'ଣ । ଆଉ ମୋର ପ୍ରେମ କ'ଣ ତମ୍ଭକୁ ଆହୁରି ଅଜଣା ଅଛି ? ବାରବାର ସେଇ କଥା ଲେଖୁଥିଲେ ତମ ମନରେ ଶାନ୍ତି ! ନା ? କିନ୍ତୁ ବାରବାର ଲେଖିଲେ ତମେ ହୁଏତ କହିବ, 'ତମର କ'ଣ କେବଳ ଏଇକଥା ଅଛି କହିବାକୁ ? ଏ ଖାଲି ସୁଆଗ ।' ନ ଲେଖିଲେ ଅନ୍ୟପ୍ରକାର ଅଭିଯୋଗ ! ପୁରୁଷର ମନ ମନେଇବାକୁ ନାରୀ ଯିମିତି ନୟାନ୍ତ, ପୁରୁଷ ସେଇମିତି ନାରୀର ମନ ଜାଣି କାମ କରିବା ମୁସ୍କିଲ୍ । ତେବେ ସମସ୍ତ ବ୍ୟର୍ଥତା, କଳହ, ଅଭିମାନ ସତ୍ତ୍ୱେ, ଉଭୟେ ଯେ ଉଭୟକୁ ପ୍ରୀତ କରିବାକୁ ସବୁବେଳେ ସଚେଷ୍ଟ, ତାହା ହିଁ ଜଗତକୁ ବଞ୍ଚିବାର ଯୋଗ୍ୟ କରିଛି ।

ତମେ ଆଉ ପିଲା ଚାହନା ଶୁଣି ମୁଁ ଖୁସୀ । ମୁଁ ଆଦୌ ଆଉ ପିଲା ଚାହେନା । କିନ୍ତୁ ମୋର ଭୟ, ମୁଁ ଗଲେ, ତମର ମାତୃକ୍ଷୁଧା ଯୌନବାସନା ରୂପେ ଜାଗ୍ରତ ହୋଇ ମତେ କବଳିତ କରିବ । ଇଲାଟେନ୍ଦୁର ଭାଇଟିଏ ବା ଭଉଣୀଟିଏ ନ ହେଲେ ତା'ର ଜୀବନର ଗୋଟିଏ ଭାଗ ଅପୂର୍ଣ୍ଣ ରହିପାରେ । ଭାଇ ଭଉଣୀର ସ୍ନେହ - ଯାହାକି ଜଗତରେ ସବୁଠାରୁ ପବିତ୍ରତମ ଓ ନିଃସ୍ୱାର୍ଥପର - ସେଥିରୁ ସେ ବଞ୍ଚିତ ହେବ କାହିଁକି ? ମୁଁ ଏଇ ଦୃଷ୍ଟିରୁ ଆଉ ଗୋଟିଏ ସନ୍ତାନ ବେଳେବେଳେ ଦରକାର ବୋଲି ଭାବେ । ଅବଶ୍ୟ ଆମେ ଦୁହେଁ ଯେତେବେଳେ ସନ୍ତାନର ଜଂଜାଳ ଓ ପିତାମାତା ହେବାର ଦାୟିତ୍ୱ ବୁଝୁଛେ, ସେତେବେଳେ କାହାରି ପକ୍ଷରେ ଅନ୍ଧ ହେଇ କାମ କରିବା ଶୋଭନୀୟ ନୁହେଁ । ଦୀର୍ଘ ପାଞ୍ଚବର୍ଷ ତ ପରସ୍ପରକୁ ଉପଭୋଗ କଲେ । ନାରୀ ଓ ପୁରୁଷ ପରସ୍ପରର ଦେହକୁ ଯେତେପ୍ରକାର ଭୋଗ କରିପାରନ୍ତି, ତା'ତ କଲେ ଆମେ । ଆଉ ଦରକାର କ'ଣ ? ମୁଁ ଏହି ଦୀର୍ଘ ପ୍ରବାସରେ ଏଯାଏଁ ସଂଯତ ରହି ବେଶ୍ ସୁସ୍ଥ ଅଛି । ଆଉ ସେ ଜଂଜାଳରେ ପଶିବାକୁ ମୋର ମନ ନାହିଁ । ଆଶା କରେ ତମେ ଆଉ ମତେ କାମିନୀ ବା ରମଣୀ ରୂପେ ଦେଖା ନଦେଇ ସଖୀ ଓ ସହଧର୍ମିଣୀ ଭାବରେ ହିଁ ରହିବାକୁ ଚେଷ୍ଟା କରିବ ।

କାଲି ରବିବାର ଭାଇ ମୋ'ଠୁ ୫ ପାଉଣ୍ଡ ନେଇ ଲିଭରପୁଲ୍ ଗଲା । କାହିଁକି ସେ ସେଠିକି ଗଲା ଓ କେବେ ଫେରିବ ମୁଁ ଜାଣେନା । ତା'ର ମନ ବର୍ତ୍ତମାନ ଦେଶ ଆଡେ ହେଲାଣି । ଫଳ ବାହାରିଲା, ପାଶ୍ କଲା, ଅକାରଣେ ବା କେତେ ବସିରହିବ ମନିଷ ? ମୋର ମନେହୁଏ ସେ କିମିତି ଶସ୍ତାରେ ଯାଇପାରିବ, ତା ବୁଝିବାକୁ ଲିଭରପୁଲ୍ ଯାଇଛି । ଓଡିଶା ସରକାରଙ୍କଠୁ କୌଣସି ଉତ୍ତର ଆସିନି । ତମଠୁ ଟଙ୍କା ବି ଆସିଲାନି ଏଯାଏଁ । ସେ ଟଙ୍କା ପାଇଲେ ସେ ହୁଏତ ଜାହାଜ ଧରିବ । ମୋର ମନହୁଏ ଓଡିଶା ସରକାରଙ୍କ ଉପରେ ନିର୍ଭର ନକରି ତା'ର ବର୍ତ୍ତମାନ ଫେରିଯାଇ ଚାକିରି ଯୋଗାଡ କଲେ ଭଲ ହୁଅନ୍ତା ।

ଲଲାଟେନ୍ଦୁର ବର୍ଣ୍ଣନା ମତେ ଭାରି ଭଲ ଲାଗୁଛି । ମୁଁ ଗଲା ବେଳକୁ ସେ ଯେ ସ୍ପଷ୍ଟ କଥା କହିଥିବ, ଏଥିଲାଗି ମୁଁ ବଡ ଖୁସୀ । ଓଃ ତାକୁ କୁ'ଦିନ ମୁଁ ମୋ ଛାତିରେ ଯାକି ଧରିବି ! ଲକ୍ଷ୍ମୀରେ, ତାକୁ ଥରେ ଆଲିଙ୍ଗନ ଦେଲେ ସେଇଥିରେ ଆମର ଦୀର୍ଘ ପାଞ୍ଚବର୍ଷର ସହସ୍ର ସହସ୍ର ଆଲିଙ୍ଗନ ପୁଞ୍ଜିଭୂତ ହେବାର ମୁଁ ଯେ ଅନୁଭବ କରିବି ! ସନ୍ତତି ଶବ୍ଦର ଅର୍ଥ ଜାଣୁ ? ସମ୍+ତନ୍+ତି । ତନ୍ ଧାତୁର ଅର୍ଥ ବିସ୍ତାର କରିବା ବା ଲମ୍ୱେଇବା । ପୁତ୍ରକନ୍ୟା, ମନୁଷ୍ୟ ବଂଶକୁ ବିସ୍ତାରିତ କରନ୍ତି, ଲମ୍ୱେଇଦିଅନ୍ତି ବୋଲି ତାଙ୍କର ନାମ ସନ୍ତତି । ତୋର ଓ ମୋର ଦୁଇଜୀବନ ବର୍ତ୍ତମାନ ଲଲାଟେନ୍ଦୁ ଠାରେ ପ୍ରତିବିମ୍ୱିତ । ମୋର ଲଲାଟେନ୍ଦୁ ଯଶ ଗୌରବରେ ମତେ ନ୍ୟୁନ କରୁ ଏହା ହିଁ ମୋର ଆଶୀର୍ବାଦ ।



## ଚେୟାଳିଶି

## ଲଲାଟେନ୍ଦୁର କଥା ଲେଖିବ

Students' Union
King's College
Newcastle on Tyne
25-07-38

ସ୍ନେହର ଲକ୍ଷ୍ମୀ,

ଆଜି ସୋମବାର ତୋର ଚିଠି କାହିଁକି ଆସିଲାନି ? ତମର ଟଙ୍କା ବା କାହିଁ ? ଭାଇ ଆଜି ମୋ ପାଖକୁ ପୁଣି ୫ ପାଉଣ୍ଡ ପାଇଁ ଲେଖିଛି । ବରାଳ ଦେଇଥିବା ୩୬ ପାଉଣ୍ଡ ବର୍ତ୍ତମାନ ୨୪ ପାଉଣ୍ଡକୁ ଆଇଲାଣି । ଏତକ ସରିଲେ ମୁଁ ଆଁ କରି ରହିବି । ଭାଇକି ଆଜି ଲେଖିଛି ସେ ଶୀଘ୍ର ଏଠିକି ଚାଲିଆସୁ । ଓଡିଶା ସରକାର ଇ ଭିତରେ ତାକୁ ଆଉ ଦୁଇବର୍ଷ ଫଳଚାଷ ଶିଖିବାକୁ କହିଛନ୍ତି - କିନ୍ତୁ ଫିସ୍ ଛଡା ଅଧିକ ଟଙ୍କା ଦେବାକୁ ନାରାଜ । ମୁଁ ଜାଣେନା ସେ କ'ଣ କରିବ । ସେ'ତ ବଡ ଆଶା କରି ଆସିଥିଲା ଓଡିଶା କୃଷିବିଭାଗର ଡେପୁଟୀ ସୁପରିଣ୍ଟେଣ୍ଡେଣ୍ଟ ହେବ ବୋଲି - ତା'ତ କୌଣସି ମତେ ହେଇପାରୁନି । ବୋଧହୁଏ ଆମର କର୍ତ୍ତାମାନେ ଜାଣିଶୁଣି ଏ ବ୍ୟବସ୍ଥା କରିଛନ୍ତି ।

ମୁଁ ତ ଏଇଠି ପଡି ରହିଲି, ତମ ପାଖକୁ କ'ଣ ଲେଖିବି ? ଲ.ନାୟକଙ୍କୁ ଚିଠିପତ୍ର ଦେଲ ? ମୁଁ ନବଭାରତ ବା ନଷ୍ଟନୀଡ କିଛିହେଲେ ପାଇନି । ନବଭାରତକୁ ତେଣୁ ଲେଖା ବଂଦ କରିଛି । ଲ. ନାୟକଙ୍କୁ ଲେଖିବ ମୋ ପାଖକୁ ଖଣ୍ଡେ ଖଣ୍ଡେ ବିଚ୍ଛିନ୍ନା ପଠେଇବେ ।

ଜୁଲାଇ ସରି ଅଗଷ୍ଟ ଆସିଲା । ମୁଁ ଅଗଷ୍ଟ ୧୯ରେ ଭବାନୀପାଟଣା ଛାଡିଥିଲି - ନୁହେଁ ? ଓଃ ! କିମିତି ଆଉ ଦଶମାସ ପୂରିବ - ଠିକ୍ ତମର ଗର୍ଭଧାରଣ ଅବସ୍ଥା ହେ ।

ଲଲାଟେନ୍ଦୁର କଥା ଲେଖିବ । ଏଇ ପ୍ରବାସରେ ତା'ର କଥାଗୁଡିକ ମତେ ବଡ଼ ଆନନ୍ଦ ଦେଉଛି । ସେ ଦୀର୍ଘଜୀବୀ ହେଇ ଆମକୁ ଚିର ଜୀବନ ଆନନ୍ଦ ଦେବ କି ! ମୋର

ଦୃଢ଼ ଧାରଣା ସେ ଆମର ଏକମାତ୍ର ସନ୍ତାନ ହେବ । ବହୁସନ୍ତାନ ପ୍ରକୃତିର ନିୟମବିରୁଦ୍ଧ । ତମ ଗୋସେଇଁବାପ ଯେଉଁ ଜମି ଛାଡିଦେଇ ଯାଇଥିଲେ, ସେଥିରେ ୩ଟା ମନିଷ ଠିଆ ହେଉଥିଲେ - ଆଜି ତା'ଉପରେ ତମର ବିରାଟ ଗୋଠ ଦଣ୍ଡାୟମାନ । ଏମାନଙ୍କର ଆହାର କଥା ଦୂରେ ଥାଉ, ଠିଆ ହେବାର ଜାଗା ନାହିଁ ? ତେବେ ଅକାରଣ ଏସ୍ବୁରାଙ୍କୁ ଆଣି ଦହଗଞ୍ଜ କରିବାର କି ଦରକାର ଥିଲା କହ ? ଆମେମାନେ ଯୌନସୁଖ ଭୋଗ କଲାବେଳେ, ତା'ର ଫଳସ୍ୱରୂପ ଗୋଟିଏ ଦୁଃଖମୟ ନୂତନ ଜୀବନର ଯେ ଆବିର୍ଭାବ ହେବ ଏକଥା ଆଦୌ ଭାବୁନା । ଏହି ମୂର୍ଖତାର ପ୍ରତିଶୋଧ ପ୍ରକୃତି ନେବ ଇ ନେବ । ଦୁର୍ଭିକ୍ଷ, ଯୁଦ୍ଧ, ମହାମାରୀ ପ୍ରଭୃତି ଅନାକାଙ୍କ୍ଷିତ ଜୀବଗଣଙ୍କୁ ଏ ଜଗତରୁ ତଡିଦେବାର ଏକ ଏକ ପ୍ରାକୃତିକ ଉପାୟ ମାତ୍ର । ପ୍ରତ୍ୟେକ ଦଂପତି ଯଦି କେବଳ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ରଖି ଛାଡି ଯାଉଥାନ୍ତେ ତେବେ ଜଗତରେ ଖାଇବାପିନ୍ଧିବା ଜିନିଷ ଓ ଭୋଗବିଳାସ ଏତେ ସୁଖ ହୁଅନ୍ତା ଯେ, ଦେଶ ଦେଶ ଭିତରେ ଯୁଦ୍ଧ ହେବାର କଥା ଉଠନ୍ତାନି । ଜାପାନ୍ ଚୀନାଲୋକଙ୍କୁ ହାଣୁଛି କାରଣ ତା'ଲୋକଙ୍କ ପାଇଁ ତା' ରାଜ୍ୟରେ ଜାଗା ନିଅଣ୍ଟ । ଭାରତରେ ଲୋକସଂଖ୍ୟା ହୁ ହୁ ହୋଇ ବଢୁଛି । ଆମେ ତ ବର୍ତ୍ତମାନ ଅର୍ଦ୍ଧ-ଭକ୍ଷ ହୋଇ ରହିଛେ । ଦଶବର୍ଷ ପରେ ଅବସ୍ଥା କ'ଣ ହେବ ଅନୁମାନ କର ।

ତେଣୁ ପ୍ରତିଜ୍ଞା କର ଲଲାଟେନ୍ଦୁ ହିଁ ଏକମାତ୍ର ସନ୍ତାନ ହେବ ଆମର । ସେ ଆମର ଶ୍ରେଷ୍ଠ ଆଶୀର୍ବାଦ । ତାକୁଇ ଆମର ସବୁ ସ୍ନେହ ସବୁ ଯତ୍ନ ଦେବା । ତାକୁ ଯଦି ଆମେ ପ୍ରକୃତରେ ସ୍ନେହ କରୁ ତେବେ ଆଉ ଗୁରାଙ୍କୁ ଆଣି ତା'ସ୍ନେହରେ ଭାଗୀ କରେଇବା ଘୋର ଅନ୍ୟାୟ ଓ ଆମର ସ୍ନେହ ମିଥ୍ୟା ।

ମୋର ଦେହ ଭଲ ଅଛି । ତମର ଦେହ କଥା ଲେଖ । ଓଡିଶାର ବଛାବଛା ଖବର କିଛି ଲେଖ ।

।ଇତି।
ତମର ପ୍ରିୟ



### ଚଉରାଳିଶି
## ତମର ସ୍ୱର୍ଣ୍ଣିନିନ୍ଦି ଅବୟବ

୨.୮.୩୮

ପ୍ରାଣର ଲକ୍ଷ୍ମୀ,

ପାଗ୍ଲିରେ, ଶୁଭ ଖବର ଦେଉଛି । ହରିଶ ବରାଳ ୫୦୦ ଟଙ୍କା ଦେବାକୁ କହିଲେ । ଆଜି ତୋ ଚିଠି ଓ ତାଙ୍କ ଚିଠି ଏକାଠି ଏଇକ୍ଷଣି ପାଇଲି । ଟଙ୍କା ବୋଧହୁଏ ଏଇ ୧୫ ଦିନ ମଧରେ ମିଳିଯିବ । ଏ ଟଙ୍କାଟା ବ୍ୟାଙ୍କରେ ଜମା କରିଦେବି । ଏତକରେ ମୋର

ଆରବର୍ଷର ଫିସ୍ ଇତ୍ୟାଦି ସବୁ ମେଣ୍ଟିଯିବ । ବାକି ତିନିଟା ଖର୍ଚ୍ଚ । ଗୋଟେ ଯିବା ବେଳର ରାସ୍ତା ଖର୍ଚ୍ଚ, ଗୋଟେ ସମର ଭେକେଶନ୍‌ରେ ଅକ୍ସଫୋର୍ଡ ଇତ୍ୟାଦି ବୁଲିବା ଖର୍ଚ୍ଚ, ଆଉଟି ମାସିକ ଚଳିବା ଖର୍ଚ୍ଚ - ଆରବର୍ଷ ଏଇ ଦିନ ଯାଏଁ । ଏଇ କ୍ଷଣି ଅକ୍ଟୋବର ଯାଏଁ ଦୁର୍ଗାମାଧବ ଏଇଠି ରହିଲେ ମାସିକ ଖର୍ଚ୍ଚ ପାଇଁ ଭାବନା ନାହିଁ । କୌଣସି ମତେ ଏକା ଟଙ୍କାରେ ଚଳିଯିବୁ । ଗଲାବେଳ କଥା ତ ଅଛି । ଭେକେଶନ୍ ଲାଗି ଯୋଗାଡ କରୁଛି ମଧ୍ୟ । ଯାହାହେଉ ମତେ ଆଉ ଅର୍ଥ ପାଇଁ ଅକାରଣ ଗୁଡାଏ ଭାବିବାକୁ ପଡିବନି । ଯଦି ଦୁର୍ଗାଦାସଙ୍କ ଚେଷ୍ଟାରେ ଭୂୟାଁଙ୍କଠୁ କିଛି ମିଳେ ବା ଓଡିଶା ସରକାର କିଛି ଦିଅନ୍ତି, ତେବେ ମୋର ଆଉ କିଛି ଭାବନା ରହିବ ନାହିଁ । ବାପାଙ୍କୁ କହିଦେବ । ଅବଶ୍ୟ ଟଙ୍କା ହାତକୁ ନ ଆସିଲା ଯାଏ କିଛି କହି ହେଉନି । ବରାଳ ଲେଖିଛନ୍ତି ଯେ, ସେ ୫୦୦ ଟଙ୍କା ପାଇଁ Imperial Bank of Indiaକୁ ଲେଖିଛନ୍ତି ଯେ ସେ ବ୍ୟାଙ୍କ ତା'ର ଲଣ୍ଡନ ଅଫିସ୍ ଦେଇ ମତେ ଟଙ୍କା ଦେବ । ହୁଏତ ଦିନେ ଦୁଇଦିନ ଭିତରେ ଉତ୍ତର ମିଳିବ । ମିଳିଲେ ସଂଗେ ସଂଗେ ଲେଖିବି ।

ବରାଳ ତାଙ୍କ ଚିଠିରେ ତମ କଥା ବି ଲେଖିଛନ୍ତି । ସେ ତମର ଲେଖା ନବଭାରତରେ ଦେଖି ପଚାରିଛନ୍ତି ତମେ ମୋ ସଂଗରେ ସଂଶ୍ଲିଷ୍ଟ କି ବୋଲି । ମୁଁ ତ ନବଭାରତ ପାଉନି, ମୁଁ ଜାଣିବି କିମିତି ତମର କୁ'ଲେଖା ବାହାରିଛି । ତେବେ ମୁଁ ଭାବୁଛି ବରାଳଙ୍କ ନିକଟକୁ ତମର ଗୋଟିଏ ଯୋଡିଏ ଧାଡିରେ ଗୋଟିଏ ଧନ୍ୟବାଦ ପତ୍ର ଦେବା ଉଚିତ । ଏ ବିପଦରେ ଏମିତି ଆଉ କିଏ ସାହାଯ୍ୟ ଦେବ କହ ? ମୁଁ ତାଙ୍କୁ ଏ ଯାଏଁ ଦେଖିନି । ପୁଣି ଗଲେ କି ଚାକିରି କରିବି ବୋଲି ସେ ପଚାରୁଛନ୍ତି - ଅର୍ଥାତ୍ ଟଙ୍କା ସେ ଫେରି ପାଇବେ ବୋଲି ତାଙ୍କର ବିଶେଷ ଆଶା ବି ନାହିଁ । ଏପରିସ୍ଥଳେ ଏ ଦାନର ମହିମା କିପରି ବୁଝିବ । ତାଙ୍କର ଠିକଣା - ହରିଶ୍ଚନ୍ଦ୍ର ବରାଳ, D. S's Office, G.I.P. Ry: P.O: Bhusawal, Bombay.

ତମର ସେଠି ଗରମ । ଆମର ଏଠି ପୁଣି ଭୀଷଣ ଥଣ୍ଡା । ସେମିତି ମେଘୁଆପାଗ, କୋହଲିଆ ପବନ, ରାତିରେ ସେଇମିତି କମ୍ବଳ ଘୋଡି ହେଇଶୋଉଛୁ । ପ୍ରକୃତି ଏମାନଙ୍କ ପ୍ରତି କିପରି ଦୟାଳୁ ଏଇଥିରୁ ଜାଣିବ ।

ଧନରେ, ମୁଁ ଗରମଦିନରେ ତତେ କିମିତି ଆଦର କରେ ତୁ ଲେଖିଛୁ । ଆଜି ଏଠାର ଏ ଶୀତ ପାଗରେ ମୋର ଗୋଟେ ଶୀତଦିନର କଥା କେଜାଣି ହଠାତ୍ କାହିଁକି ମନେ ପଡିଲା । ମନେଅଛି ବାରିପଦା ଲାଇବ୍ରେରୀ ପାଖେ ତମେସବୁ ଥାଅ - ମୁଁ ଥରେ ଯାଇଥିଲି । ଯେମିତି ଯାଇ ପହଁଚିଛି ତତେ ପାଇ ଉପଭୋଗ କରିବାକୁ ଲାଗିଲି । ଚୁମ୍ବନ ଦେଉଥାଏ, ତୁ କହୁଥାଉ ଆଉ ଦିଅ, ଆଉରି ଗଭୀର କରି ଦିଅ । ମନେଅଛି ତୋର ଓଠରେ ସେଥର କ୍ଷତ ହେଇଗଲା । ତମର ସ୍ୱର୍ଣ୍ଣ-ନିନ୍ଦି ଅବୟବ, ଯୌବନର ସେ ନବ-ପୁଷ୍ଟ ବକ୍ଷ-ଜଘନ ଆଉ ମୁଁ ପାଇବିନି । ତଥାପି ତମେ ଯେ ସେସବୁ ମତେ ଅକୁଣ୍ଠିତ ଭାବରେ ଦେଇ ପରମ ଗୌରବ ଓ ସୁଖ ଅନୁଭବ କରିଛ, ଏ ସ୍ମୃତି କୁଆଡେ ଯିବ ? ଏଠାରୁ ଫେରିଲା ବେଳକୁ ହୁଏତ ମୁଁ ଚୁମ୍ବନଲାଳସୀ ରସିକ ନଥାଇ ପାରେ, କିନ୍ତୁ କୃତଜ୍ଞ ପ୍ରେମିକ ଥିବି ତ ।

ଲଲାଟେନ୍ଦୁକୁ ନିରତିଶୟ ଭାବରେ ସ୍ନେହ କରନା । ଭାବ ଯେ ଆମେ ତା'ର ଅଭିଭାବକ ମାତ୍ର । ଦେବାବାଲା ଦେଇଛି । ଆମେ ତାକୁ ମନିଷ କରିବା ଲୋକ ମାତ୍ର । 'ମୋର' 'ମୋର' ବୋଲି ହୁଅନା । ଏପରି ଭାବରେ ତାକୁ ମନିଷ କରିବା ସୁବିଧା ହେବ ।

ଆ, ତତେ ଦୁଇବାହୁର ନିବିଡ ବଂଧନରେ ଯାକିଧରେ । ଓଠତଳକୁ ଓଠ ରଖି - ତତେ ଭଲ କରି ଚୁମେ - ତୁ ମୋ ବକ୍ଷରେ ତୋର ବକ୍ଷ ରଖି ପ୍ରାଣକୁ ମୋର ଶୀତଳ କର । ଲଲାଟେନ୍ଦୁ ବଁଶ ଯାକୁ ଖୁସୀରେ ରଖିଛି ଏଇ ମୋର ବଡ ଭାଗ୍ୟର କଥା । ଭଗବାନ୍ କରନ୍ତୁ ତା'ର ଜୀବନର ସବୁ ଘଟଣା ଆମକୁ ଯେପରି ସୁଖୀ କରାଏ ।

।ଇତି।

ତୋର ପ୍ରିୟ

●

## ପଇଁଚାଳିଶି

# ଏ ଦେଶରେ କଳରେ ଗାଈଦୁହାଁ ହେଉଛି

ନିଉକାସଲ୍

୧୫-୦୮-୩୮ (ସୋମବାର)

ସ୍ନେହର ହେମ,

ତମର ଚିଠି ଆଜି ପାଇଲିନି । କେବଳ ପିଲାଟା ଦୁଷ୍ଟ ହେବାରୁ ତମେ ଚିଠି ରୀତିମତ ଲେଖିପାରୁନା, ନୁହେଁ ? ପିଲା ଯୋଗୁ ଖିଆପିଆ ଶୋଇବା ଖେଳିବା, କିଛି ହେଉ ନଥିବ ବୋଧହୁଏ ।

ଆଜି ଦୁର୍ଗା ପାଖକୁ କିଛି ଟଙ୍କା ପୁଣି ପଠଉଛି । ବରାଳଙ୍କ ୩୬ ପାଉଣ୍ଡ ବର୍ତ୍ତମାନ ୧୭ ପାଉଣ୍ଡରେ ପହଁଚିଲାଣି । ଏତକ ସରିଲେ କ'ଣ କରିବି, ମୁଁ ଭାବିପାରୁନି ।

କାଲି ରବିବାର ଜଣେ ଇଂରେଜ ବଂଧୁ ସହ ଦୂରବର୍ତ୍ତୀ ଗୋଟିଏ ମଫସଲର ଭଦ୍ର କୃଷକର ଘରକୁ ଯାଇଥିଲି । ମଧ୍ୟାହ୍ନ ଭୋଜନ ଓ ଚା'ପାନ କଲି ସେଠି ଓ ତା'ର ଜମିବାଡି, ଗାଈଗୁହାଳ, ବଣ, ଶସ୍ୟକ୍ଷେତ୍ର ସବୁ ବୁଲି ବୁଲି ଦେଖିଲି । ତା'ର ଗୋଟେ ଦୁହାଁଳୀ ଗାଈର ପହ୍ନା ପ୍ରାୟ ନଉତିକିଆ ପୁଡୁରା ପରି - ଏକଦମ୍ ଓହଳି ତଳେ ଲାଗିବା ଉପରେ । ଏହା ଅତିରଂଜନ ଆଦୌ ନୁହେଁ । ଏମିତି ଗାଈକି ମନିଷ ଦୁହିଁବା କଷ୍ଟର କଥା ନିଶ୍ଚୟ - ଯେଉଁଠି ଇମିତି ୩୦/୪୦ ଗାଈ ଥିବେ, ସେଠି କ'ଣ କରାଯିବ ? ବାଧ୍ୟ ହେଇ ବର୍ତ୍ତମାନ ଏ ଦେଶରେ କଳରେ ଗାଈଦୁହାଁ ହେଉଛି । ରବର ନଳୀ ଚୀରରେ ଲଗେଇ ଦେଲେ, ବିଦ୍ୟୁତ୍ ସାହାଯ୍ୟରେ ତାହା ଧୀରେ ଧୀରେ ଦୁଧ ଶୋଷି ନେଇ ଆସେ । ମୁଁ ଏମିତି ଦୁହାଁ ହେବାର ଦେଖିଲି । ଏଠା ଗାଈମାନଙ୍କର ପିଠିରେ ଉର୍କୁଟି ନାହିଁ । ଭଦ୍ରଲୋକଙ୍କର ଛୋଟ ଝିଅଟି ପ୍ରାଚ୍ୟଦେଶର ପ୍ରାଣୀମାନଙ୍କ ବିଷୟରେ ଗୋଟେ ବହି ପଢୁଥିଲା - ସେଥିରେ ଉର୍କୁଟି ଥିବା ଭାରତୀୟ

ଗାଈର ଛବି ସେ ଦେଖିଥିଲା, ମତେ ଆଣି ସେ ଛବି ଦେଖେଇ ପଚାରିଲା - ଏଇ ନା ତମ ଦେଶର ଗାଈ ?

ଘରୁ ଚିଠି ନାହିଁ, ପାଖରେ ଟଙ୍କା ନାହିଁ, କୁଆଡେ ଯାଇପାରିନି, କିଛି କରିପାରିଲିନି - ମନ ବଡ ଅସ୍ଥିର, ଭାରାକ୍ରାନ୍ତ । ଏପରି ଦୁର୍ଦ୍ଦିନରେ ତମର ନିର୍ଶ୍ଚିନ୍ତ ଭାବ ଓ ନିରପେକ୍ଷତା ତମର ସ୍ନେହକୁ ପରୀକ୍ଷା କରିନେଉଛି । ସ୍ନେହ ଥିଲେ, ମୋଠୁ ଚିଠି ପାଇଲେ ଚିଠି ଦିଆହେବ ନହେଲେ ନାହିଁ - ମୋର ଦୁଃଖଦୁର୍ଦ୍ଦଶା ପ୍ରତି ଖାତିର୍ ନାହିଁ- ଇମିତି ହ'ନ୍ତା ?

ମୋର ସ୍ୱାସ୍ଥ୍ୟ କିନ୍ତୁ ଭଲ ଅଛି ।

ଇତି ।

ମାନସିଂ



**ଛୟାଳିଶି**

## ପଦେ କଥା କହିଲନି

ନିଉକାସଲ୍

୨୦/୮/୩୮

ସ୍ନେହର ଲକ୍ଷ୍ମୀ,

ଆଜି ମିସ୍ ନିସ୍‌ବେଟ୍ ଆସିଥିଲେ । ଖେଚଡି, ଖିରି, କୋବି-ଆଳୁ-ମାଛ ତରକାରି, ପାମ୍ପଡ଼ ଭଜା ଇତ୍ୟାଦି କରିଥିଲି । ବିଚାରୀ ବେଶ୍ ଖାଇଲା ଓ ପ୍ରଶଂସା କଲା । ଅନେକ ସମୟ କଥା ହେଲା ପରେ ବିଦାୟ ନେଇ ଗଲା । ତା' କଥାରୁ ବୁଝିଲି ସେ ନିତି କସରତ୍ କରେ ; ତା'ଛଡ଼ା ଟେନିସ୍ ପ୍ରଭୃତି ତ ଅଛି । ମୋର ଆସନ-ବହିଟା ବହୁତ ଖୋଳିତାଡ଼ି ଦେଖିଲା- ଯୋଗ ସଂବନ୍ଧରେ ବହୁତ ପଚାରିଲା, ବହିଟିକି ଭଲକରି ପଢ଼ିବ ବୋଲି ମାଗି ବି ନେଇଛି । ଇଣ୍ଡନର କୌଣସି ଏକ ନୃତ୍ୟ-ଶାଳାରେ ସେ କେବେ ଜଣେ ଭାରତୀୟକୁ ଭେଟିଥିଲା, ଯେ କି ତା'ର ହାତ ଦେଖି ଭବିଷ୍ୟତ କହିବାକୁ ବାରଂବାର ଅନୁରୋଧ କରିଥିଲା । ମିସ୍ ନିସ୍‌ବେଟ୍ କିନ୍ତୁ ଆଦୌ ହାତ ଦେଖେଇଲାନି, କାରଣ ସେ ଭବିଷ୍ୟତ ଜାଣିବାକୁ ଇଚ୍ଛୁକ ନୁହେଁ, ସେ ବର୍ତ୍ତମାନର ସୁଖଦୁଃଖ ନେଇ ଆବଦ୍ଧ ରହିବାକୁ ଚାହେଁ । ଏଇ ଛୋଟ ଛୋଟ ଘଟଣାରୁ ଏ ଜାତିର ଚରିତ୍ର ବିଦ୍ୟୁତ୍‌ରେଖା ପରି ହଠାତ୍ ଆଖି ଆଗରେ ଝଲସି ଯାଏ । ଆମେ ଆମର ଜାତକ କାଟି ପ୍ରଥମେ ଇହ ଜୀବନର ଗୋଟିଏ ନକ୍ସା ଆଙ୍କି ରଖିଲେ ଯାଇ, ଜୀବନପଥରେ ପାଦ ଦେବାକୁ ସାହସ କରୁ । ଏମାନଙ୍କର ଜାତକ ଫାତକ କିଛି ନ ଥାଏ- ଏମାନଙ୍କ ପାଇଁ ଆଉ କିଏ ଜଣେ ଜୀବନର ଗାର କାଟି ନ ଥାଏ, ଏମାନେ ନିଜେ ନିଜେ ଜୀବନର ପଥ ରଚନା କରି ଚାଲନ୍ତି ।

କିନ୍ତୁ ନିସ୍‌ବେଟ୍ କହିଲା, ତା'ର ଅନିଚ୍ଛା ସତ୍ତ୍ୱେ ସେ ଭାରତୀୟ ଆପେ ଆପେ କେତେଟା କଥା କହିଥିଲା, ଯାହାକି ସତ ଘଟିଛି ।

ଆଜି କୋଡ଼ିଏ ତାରିଖ- ଆଜି ବିଜୟନଗର ଷ୍ଟେସନ୍‌ରେ ତମୁକୁ ବିଦାୟ ଦେଇଥିଲି- ତମେ ଚାଲିଗଲ, ପଦେ କଥା କହିଲନି, ମୁଁ ପ୍ଲାଟ୍‌ଫର୍ମରେ ଠିଆ ରହି ଉଦ୍‌ଗୀର୍ଣ୍ଣମାନ ଶୋକୋଚ୍ଛ୍ୱାସକୁ ରୁଦ୍ଧ କରିବାକୁ ଚେଷ୍ଟା କଲି । ତମେ କ'ଣ ଆଜି ସେକଥା ସବୁ ମନେ ରଖିଛ ? ନିସ୍‌ବେଟ୍ ଗଲା ପରେ ମତେ ଭୟଙ୍କର ଏକୁଟିଆ ଲାଗିଲା । ମୁଁ ରାନ୍ଧିକରି ଜଣେ ଅତିଥିକୁ ସେବା କରିଛି- ହାୟ ! ଯେ ମତେ ପ୍ରତିଦିନ ଅତିଥି ମନେ କରି ରାନ୍ଧି ବସେ, ସେ କାହିଁ ଆଜି ? ତା'ର ସେବା, ତ୍ୟାଗ, ସ୍ନେହର କି ପ୍ରତିଦାନ ଦେଇଛି ? କାହିଁକି ତା'ଉପରେ ବିରକ୍ତ ହେଇଛି ଥରେ ଥରେ- ତା'ର ରନ୍ଧାର ମୂଲ୍ୟ ଦେଇନି, ତା'ର ଯତ୍ନ ଓ ସ୍ନେହ ସହିତ ସହାନୁଭୂତି ଦେଖାଇ ପାରିନି ! ମୋର ଜୀବନରେ ଏତେବଡ଼ ସୌଭାଗ୍ୟ ଥିଲେ ମଧ, ମୁଁ ନିଜକୁ ସୁଖୀ କରିପାରିନି କାହିଁକି- ଯେଉଁଠି ଏତେ ସ୍ନେହ, ଗୋଟିଏ ଜୀବନ ପ୍ରତି ଆଉ ଏକ ଜୀବନର ଏ ପ୍ରକାର ଆତ୍ମସମର୍ପଣ, ତେବେ ଏ ଜୀବନ ନିରର୍ଥକ କାହିଁକି ? ଓଃ, କି ଭୋଗର ବସ୍ତୁ ଏ !- ମୁଁ ନିଜର ଅଜ୍ଞତାରେ ସିନା ମୁକ୍ତା ନ ଖୋଜି କେବଳ ଶାମୁକାକୁ ସାଉଁଟିଛି ଓ ବିରକ୍ତ ହେଇଛି ଯେ, କେବଳ ଶାମୁକା ଖୋଜି ଖୋଜି ମୋର ଜୀବନ ଗଲା !

ବାହାରେ ଉଜ୍ଜ୍ୱଳ ସୂର୍ଯ୍ୟକିରଣ ପଡ଼ିଥିଲା । ତଥାପି ତାତି ନାହିଁ- ଶୀତ ପୁଣି ପଡ଼ି ଆସିଲାଣି- ଶୀତଳୋଜ୍ଜ୍ୱଳ ମଧାହ୍ନ ପ୍ରକୃତିକି ଅନେଇ ଅନେଇ ବାରଂବାର ମୋର ଘର ଓ ଦେଶ କେବଳ ମନେ ପଡ଼ିବାକୁ ଲାଗିଲା । ସ୍ମୃତି ସଙ୍ଗେ ସଙ୍ଗେ ଶୋକ ଓ ଶୋକ ସଙ୍ଗେ ସଙ୍ଗେ ଅଶ୍ରୁ ! ଦୁଇ ତିନି ଅଶ୍ରା କାନ୍ଦି ସାରିଲା ପରେ, ମୁହଁ ଧୋଇ ଲାଇବ୍ରେରୀକି ପଢ଼ିବାକୁ ବାହାରିଲି ।



### ସତଚାଳିଶି

## ଚିଠି ନପାଇଲେ ମଧ ବିରକ୍ତ ହେଲିନି

୨୨/୮/୩୮. ସୋମବାର

ସ୍ନେହର ଲକ୍ଷ୍ମୀ,

ଆଜି ସୋମବାର, କିନ୍ତୁ ତୋର ଚିଠି ପାଇଲିନି । କିନ୍ତୁ ତୋ ପ୍ରତି ମୋର ହୃଦୟ ଏତେ କୋମଳ ହୋଇ ଯାଇଛି ଯେ, ଚିଠି ନ ପାଇଲେ ମଧ ବିରକ୍ତ ହେଲିନି । ମୋର ପୂର୍ବ ଏକ ପତ୍ରରେ ତୋର ଅନିୟମିତତାରେ ବିରକ୍ତ ହୋଇ ତତେ ଦି'ପଦ ଶୁଣେଇ ଦେଇଛି । ପରେ କିନ୍ତୁ ମନ ଭାରି ଖରାପ ହେଇଛି । ସବୁ ଭୁଲିଯିବୁ ଆଶା କରେ । ଆମର ଜୀବନନାଟକରେ ପ୍ରତିଦିନ ଏକ ଏକ ପ୍ରେମ-ଯବନିକା ପକେଇ ଦେବା ଯାହାକି ଅତୀତର ସବୁ ମନ୍ଦ ସ୍ମୃତିକୁ ଆମ ଆଢୁଆଳରେ ରଖି, ଆମର ନୂତନ ଲୀଳାର ଅଭିନୟ ପାଇଁ ରଂଜିତ ପୀଠିକା ଯୋଗାଇବ ।

ଭାଇ Walesରେ । ରାମ ଚିଠି ଦେଇଥିଲା, ମୁଁ ତାକୁ ଉତ୍ତର ଦେଇଛି । ଇ ଭିତରେ ଆର୍ତ୍ତବାବୁ ଚିଠି ଦେଇଥିଲେ । ସେ କହିଛନ୍ତି ଯେ, ପର୍ଶୁରାମ ବାବୁ ଆସୁଛନ୍ତି ଏଠିକି, ତାଙ୍କ ହାତରେ ସେ କୁ' ଖେଦାଟି ପଠଉଛନ୍ତି ।

ଲଲାଟେନ୍ଦୁ ଦୁଷ୍ଟ ହେଲେ ତ ଭଲ । ଦୁଷ୍ଟ ନ ହେଲେ ଜାଣିବ ଯେ ପିଲା ବେମାରିଆ- ତା'ର ସ୍ୱାସ୍ଥ୍ୟର ଦୋଷ ଅଛି । ମୁଁ ଖୁବ୍ ସୁଖୀ ଯେ ପିଲାଟା ମୋ' ପରି ଗାଉଁଦା ନ ହୋଇ ଚଗଲା-ଚଂଚଳ ହୋଇଛି । ତମର ସ୍ୱାସ୍ଥ୍ୟ କିପରି ଅଛି ? ରୀତିମତ ଖେଳା-କସରତ ବା ଅନ୍ୟପ୍ରକାର ଅଂଗଚାଳନା କରୁଥିବ । ଖୁବ୍ ସମ୍ଭବତଃ ତମୁକୁ ଆଉ ଥରେ ଜନନୀ ହେବାକୁ ହେବ । ଦୀର୍ଘ ବିରହ ପରେ ତମୁକୁ ଯେତେବେଳେ ଦେଖିବି, ଥରେ ନିବିଡ଼ ଆଲିଙ୍ଗନ ନ ଦେଇ କିମିତି ରହିବି ? ତେବେ ଲଲାଟେନ୍ଦୁ ତ ଆମର ବିଚାରଣାର ଫଳ- ତାକୁ ତ ଆମେ ଡ଼ାକି ଆଣିଛେ କହିଲେ ହେଲା । ଦ୍ୱିତୀୟ ଅତିଥି ପାଇଁ ସେଇମିତି ବୁଝି ବିଚାରି କରିବା- କିନ୍ତୁ ତମୁକୁ ଯେତେବେଳେ ଅତିଥିର ଭାର ବହନ କରିବାକୁ ହେବ, ବିଚାରର ଭାର ମଧ୍ୟ ତମର ବେଶୀ....

ପ୍ରିୟ

●

## ଅଠଚାଳିଶି

## ଘୋର ମର୍ମବେଦନା ଦେଉଛି

Students' Union
King's College
Newcastle on Tyne
27.08.38

ସ୍ନେହର ଲକ୍ଷ୍ମୀ,

ତମର ଚିଠି ପାଇଲି । ଚିଠିରେ ବସନ୍ତର ଚିହ୍ନ ଅବିର ଦେଖି ଖୁସି ହେଲି । ଟଙ୍କା ମଧ୍ୟ ପାଇଲୁ । କିନ୍ତୁ ମୋ ମନ ଆଦୌ ଭଲ ନାହିଁ । ଭାସ୍କର ଭୂୟାଁ ତ ଚିଠି ଦେଲେନି । ମୁଁ ବି ଆହୁରି ଅନେକ ଜାଗାକୁ ଚିଠି ଲେଖିଛି । କୌଣସିଠାରୁ ଉତ୍ତର ଆସିନି । ମନ ବଡ ବ୍ୟସ୍ତ ଓ ହୃଦୟ ବ୍ୟଥିତ ହେଉଛି । ଯାହା ଟଙ୍କା ଆସୁଛି ତାହା ଭାଇ ଏକାକୀ ଖର୍ଚ୍ଚ କରୁଥିଲେ ସେ ବେଶ୍ ମଉଜରେ ଥାନ୍ତା । ମୁଁ ମିଶିବାରୁ ଆମ ଦୁହିଁଙ୍କର ମାସକ ଖାଇବା ଖର୍ଚ୍ଚଟା କୌଣସିମତେ ଚଳିଯାଉଛି ସିନା, ଅନ୍ୟ କୌଣସି କିଣାପାଇଁ ଦୁହେଁ ହାତବାନ୍ଧି ବସିଛୁ – ବିଶେଷତଃ ସେ । ମୋ ଲାଗି ସେ କଷ୍ଟ ପାଉଛି ଓ ତା'ଟଙ୍କାରେ ମୁଁ ବଞ୍ଚୁଛି, ମତେ ଏ ଚିନ୍ତା ଘୋର ମନୋବେଦନା ଦଉଛି । ଅବଶ୍ୟ ସେ ମତେ କିଛି କହୁନି, କି ତମେ ଏକଥା କାହାକୁ କହିବା ଉଚିତ ନୁହେଁ । ମୋର ଏପରି ଅବସ୍ଥାରେ ଆସି ଲାଂଛିତ ହେବାର ଉଚିତ ନଥିଲା । ମୁଁ ବଡ ଉଦ୍‌ବିଗ୍ନ ଅଛି । ଭୟଙ୍କର ମେଘୁଆ ଓ ଶୀତ ପାଗ ମନକୁ ଆହୁରି ଅବସାଦଗ୍ରସ୍ତ କରୁଛି । ମୁଁ ପଢିପାରୁନି କି କେଉଁଁକଥା କରିପାରୁନି । ତମେ

କିଛି ଭାବିବନି । ଟଙ୍କା ପଇସାର କିଛି ଗୋଟେ ବନ୍ଦୋବସ୍ତ ନହେଲେ ମୁଁ କିମିତି ଧୈର୍ଯ୍ୟଧରି ଆଉ ବର୍ଷେ ରହିବି ମୁଁ ଜାଣିପାରୁନି ।

ପାଗ୍‌ଲି, ତତେ ଏଥର ଭଲ ଚିଠି ଲେଖିପାରୁନି । ତୁ କ୍ଷମା ଦେ । ମୋ ମନ ଠିକ୍ ନାହିଁ - ମୁଁ କ'ଣ କରିବି । ।ଇତି।

ତୋର ପ୍ରିୟ



**ଅଣଚାଶ**

# ଗତ ରାତିରେ ସ୍ୱପ୍ନ ଦେଖିଲି

ନିଉକାସଲ୍

୩୦-୦୮-୩୮

(ରବିବାର)

ସ୍ନେହର ପାଗ୍‌ଲି,

ଆଜି ରବିବାର । ଗତରାତିରେ ତତେ ସ୍ୱପ୍ନ ଦେଖିଲି । ଶୁଭ୍ରବସନା ତତେ ମୁଁ ଆଲିଙ୍ଗନ ଦେଇ ଗଭୀର ଚୁମ୍ବନ ଦେଉଥିଲି । ତୁ ତ ସେଇପରି ସତେଜ ଓ ନିର୍ମଳ ଅଛୁ ପରି ଦେଖିଲି । ଏବେ ବରାବର ତତେ ମନେପକାଏ । ଗତ ଜୀବନର ମଧୁର କ୍ରୀଡାକୌତୁକ ମନେପଡି ଥରେ ଥରେ ଅଥୟ କରେ । ନିର୍ଜନ ନୀରବ କକ୍ଷରେ, ଜ୍ୟୋସ୍ନା-ପୁଲକିତ ଆକାଶ ତଳେ, ଚଳନ୍ତି ଯାନରେ, ଗଭୀର ନିଶୀଥରେ, ତପ୍ତୋଜ୍ଜ୍ୱଳ ମଧ୍ୟାହ୍ନରେ, ତତେ ଧରି ଯେଉଁ ଏକାନ୍ତ ନିବିଡ ମୁହୂର୍ତ୍ତଗୁଡିକ ମୁଁ କଟେଇଛି ସେସବୁ କିମିତି ଭୁଲିବି ? ସେ ପ୍ରଲୋଭନର ମଧୁରତାକୁ କିମିତି ବା ଆଡେଇଦେବି ଜୀବନପଥରୁ ? ସେଇ ମିଳନ, ଯାହା କି ବସ୍ତ୍ର ଓ ଚର୍ମାବରଣକୁ ଦଳି ମକ୍ଟି ମଧ୍ୟ ଶାନ୍ତ ହୁଏନା, ତାହା ବିରହ ଦିନରେ କିମିତି ଶାନ୍ତ ରହିବାର ଆଶା କରିବି ? ତେଣୁ ମଝିରେ ମଝିରେ, ତମର ପ୍ରାଣର ଅନ୍ତରତମ ପ୍ରଦେଶର ମର୍ମକାହାଣୀ, ତମର ଅଶ୍ରୁରେଖାର ପୁଣ୍ୟସ୍ମୃତି, ତମର ତ୍ୟାଗ ଓ ପ୍ରେମର ପ୍ଲାବନ ଇତିହାସ ସଂଗେସଂଗେ, ତମର ଯୌବନ-ସ୍ନିଗ୍ଧ ତନୁଲତାର ରୋମାଞ୍ଚକ ସ୍ପର୍ଶ ଓ ତାକୁ ନେଇ ମୋର ଯେତେପ୍ରକାର ବିନୋଦନ, ମୋର ମନକୁ ବରାବର ଆଲୋଡିତ କରୁଛି । ଏସବୁ ବିଷୟରେ ମୁଁ ଭଲ ମନ୍ଦ ପାପପୁଣ୍ୟ କିଛି ବୁଝେନା - ପ୍ରକୃତିର ଗଠନକୁ ସ୍ୱାଭାବିକ ବୋଲି ଧରିନେଇ ନିଜକୁ ସମସ୍ତ ପ୍ରକାର ମାନସିକ ଆଲୋଡନରୁ ରକ୍ଷା କରିବାକୁ ଚେଷ୍ଟା କରେ ।

ଆମର ଫଟୋଟିକୁ ଏଠିକାର ଶ୍ରେଷ୍ଠ ଫଟୋଗ୍ରାଫର୍ କଂପାନୀକୁ enlarge କରିବାକୁ ଦେଇଛି । ପ୍ରାୟ ୫ଗୁଣ ବଡ କରି ଦିଆ ହୋଇଛି ଓ ଭଲ ଉଠିଛି । ଏ ପର୍ଯ୍ୟନ୍ତ ଆଣିନି । ଆଉରି କାମ ଅଛି । ଫ୍ରେମ୍ ସହିତ ମତେ ପ୍ରାୟ ଦେଢ୍ ପାଉଣ୍ଡ ବା ୧୮ ଟଙ୍କା ଖଣ୍ଡେ ପଡିଯିବ । ମୋର ଝିଅ...ବ ବେଳେ ମୁଁ ଏ ସଉକିନି କାହିଁକି କଲି ବୋଲି ସମସ୍ତେ

ମତେ ଗାଳି ଦେଇପାରନ୍ତି । କିନ୍ତୁ ମୁଁ ନିଶ୍ଚିନ୍ତ ନିର୍ବିକାର ଚିତ୍ତରେ ଏ ବ୍ୟୟ କରି ଦେଉଛି । କାରଣ ଦେଢ଼ ପାଉଣ୍ଡରେ ମୋର ଆର୍ଥିକ ଦୁର୍ଦ୍ଦଶା ଘୁଞ୍ଚି ଯିବନି । କିନ୍ତୁ ତୋର ସୁନ୍ଦର ଚିତ୍ରଟିଏ ପାଖରେ କରି ରଖିଥିଲେ, ତାକୁ ଛାତିରେ ଧରି ମୁଁ ଯେକୌଣସି ଦୁର୍ଦ୍ଦଶା-ମୃତ୍ୟୁକୁ ମଧ୍ୟ ହସି ହସି ଆଲିଙ୍ଗନ କରିବି ।

ଓଡ଼ିଶା ସରକାର ଭାଇର ଗ୍ରାଣ୍ଟ ୧୦୦ ପାଉଣ୍ଡ କରିବାକୁ ନାହିଁ କଲେ । ଭାଇ ତେଣୁ ସରକାରଙ୍କ ପ୍ରସ୍ତାବରେ ନାରାଜ ହୋଇ ଚିଠି ଦେଇଛି । ସେ ଏ ପର୍ଯ୍ୟନ୍ତ ସେଠି - walesରେ ଅଛି । ଖୁବ୍ ସମ୍ଭବତଃ ସେ ଫେରିଯିବ । କିନ୍ତୁ ତା'ର ଗତିମତି କିଛି ଜାଣିପାରିନି ଏ ପର୍ଯ୍ୟନ୍ତ ।

ଖୁବ୍ ସମ୍ଭବତଃ ଆର ସୋମବାରକୁ ମୁଁ ସେକ୍ସପିୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ-ଅନ୍-ଏଭନ୍ ଯିବି । ସେଠି ପ୍ରାୟ ସପ୍ତାହେ ରହିବି । ସପ୍ତାହକରେ ମୋର ପ୍ରାୟ ଯିବାଆସିବା ଓ ରହିବାର ୭ ପାଉଣ୍ଡ ବା ଟ୧୦୦ଙ୍କା ଖର୍ଚ୍ଚ ହୋଇଯିବ । ଏଇଥିରୁ ଜାଣିବ ଏଠାକାର ଜୀବନଯାପନ କିମିତି ବ୍ୟୟବହୁଳ । ମୁଁ ହାତରେ ରାନ୍ଧି ଖାଉଛି ବୋଲି ଓ କିଛି ବ୍ୟସନ ନାହିଁ ବୋଲି ମୋର ପ୍ରାୟ ୬୦/୭୦ ଟଙ୍କାରେ ଚଳି ଯାଉଛି । ସେଥିରେ ବି ଦୁର୍ଦ୍ଦିନର ଅବସାନ ନାହିଁ - ଦଶ ଲୋକର ଗୋଡ ଧରିବାକୁ ହେଉଛି । ମୁଁ ଷ୍ଟ୍ରାଟ୍‌ଫୋର୍ଡରୁ ଫେରିଲା ବେଳକୁ ମୋ ପାଖରେ ବରାଳ ଦେଇଥିବା ଟଙ୍କାରୁ ଆଉ ମୋଟେ ୭ ପାଉଣ୍ଡ ଖଣ୍ଡେ ଥିବ । ଜଗି ଜଗି ଚଳିଲେ ମାସେ ମୋଟେ ଯିବ । ତା'ପରେ କ'ଣ ହେବ ମୁଁ ଜାଣେନା । ଅନ୍ଧକାର ଭବିଷ୍ୟତକୁ ମୁଁ ଆଖି ଦେଉନି - କାରଣ ଲାଭ କିଛି ନାହିଁ । ଆଜି ଢ ସବୁ, କାଲି କ'ଣ ହେବ, ଯେ ଦିନରାତି କରିଛି ସେ ଜାଣେ - ଏଇ ଅନୁଭୂତି ଧରି ମୁଁ ଚାଲିଛି ।

ଲଲାଟେନ୍ଦୁର ଲିଭର୍ କାହିଁକି ବଢ଼ିଲା ? ଏଇଟା ବଡ ବିଷମ ରୋଗ । ସେ କିମିତି ଅଛି ମତେ ବିସ୍ତୃତ ଭାବରେ ଲେଖ ।

ତମେ ଆଜିକାଲି କିମିତି ଦିନ କାଟୁଛ ମତେ ଏକ ବିବରଣୀ ଦିଅ ତା'ର । ବେଳେବେଳେ ଗାଁ କଥା ଭାବେ । ଗାଣ୍ଟୁ ପ୍ରଭୃତି ହୁଏତ ଇସ୍କୁଲ୍ ଛାଡି ହେଁଟଡା ହୋଇ ବୁଲୁଥିବେ - ମତେ ଦୋଷୁଥିବେ । କିନ୍ତୁ ମୁଁ ଯେ କେତେଦିନ କେତେରାତି ବେକାର, ଦରିଦ୍ର, ଅସହାୟ ହୋଇ ପରଘରେ ପରଦ୍ୱାରେ କାଟେ, ଲୁହ ବୋହି ବୋହି କଟେଇଛି ସେ କଥା ତ କେହି ବୁଝିବେନି । ସେମାନଙ୍କ ସଂବନ୍ଧରେ କିଛି ଜାଣିଥିଲେ ଲେଖ ।

ଧନରେ ! କୋଳକୁ ଆ ତ, ଗଭୀର ଆଶ୍ଳେଷ ମଧ୍ୟରେ ତତେ ଭିଡ଼ି ଧରି, ତୋର ଦୁଇଗଣ୍ଡକୁ ଚୁମ୍ବନରେ ଆର୍ଦ୍ରପିଚ୍ଛିଳ କରିଦିଏ । ଭଲକରି ଯାକିଧର୍ ରେ......

ତୋର

ପ୍ରିୟ



## ପଚାଶ
# ତମର ପବିତ୍ର ପଦକୁ ଚୁମ୍ବନ କରି

ନିଉକାସ୍‌ଲ୍
୨.୧୧.୩୮

ପ୍ରାଣର ଲକ୍ଷ୍ମୀରେ,

ଧନ,

ଗତ ଦୁଇଟି ପତ୍ରରେ ମୋର ଯାହା କହିବାର କଥା କହି ସାରିଛି । ବର୍ତ୍ତମାନ ତମର ଦାୟିତ୍ୱ ତମ ଉପରେ । ମୋର ଓ ତମର ସୁଖ ଏକାବେଳକେ ତମର ପରିବର୍ତ୍ତନ ଉପରେ ନିର୍ଭର କରେ । ଆଶା କରେ ତମେ ସେସବୁ ଭଲ ଭାବରେ ବୁଝିବ । ତମର ଯାହା କହିବାର କଥା ଅଛି ମତେ ପରିଷ୍କାର କରି କହ- ତମ୍ଭୁକୁ ସୁଖୀ କରିବାକୁ ମୁଁ ସେସବୁ ଶୁଣିବାକୁ ଓ ତାହା କାର୍ଯ୍ୟରେ ପରିଣତ କରିବାକୁ ପ୍ରସ୍ତୁତ ହେବି । ପୂର୍ବେ ନାନା ଅଭାବ ଅସୁବିଧା ଭିତରେ ଚଳୁଥିଲେ । ଅଭାବରେ ସ୍ୱଭାବ ନଷ୍ଟ । ସେହି ଅଭାବରେ ପଡ଼ି ମୁଁ ବି ବୁଦ୍ଧି ହରାଉଥିଲି, ତମେ ବି ହରାଉଥିଲ । ଆଶା କରୁଁ, ଭବିଷ୍ୟତରେ ସେ ଅଭାବ ରହିବନି ଏବଂ ଜୀବନ ମଧ୍ୟ ଏତେ ଗଂଜଣାମୟ ହେବନି । କିନ୍ତୁ ସୁଖବେଳେ ତମେ ମଧୁମୟୀ ଓ ଦୁଃଖବେଳେ ବିଷମୟୀ ହେବ- ଏଥିରେ ତମର କି ଗୌରବ ହେଲା କହ ତ ? ମୋର ପୂଜା ଯଦି ଚାହଁ ତେବେ ସୁଖବେଳେ ମଧ୍ୟ ସାଧନା ଦରକାର ।

ମୁଁ ଆଉ ଅଧିକ ଏ ବିଷୟରେ ବକିବାକୁ ଚାହେନା । ମୋର ଯାହା କହିବାର ଥିଲା କହିଲି । ଏଣିକି ଭାର ତମ ଉପରେ । ତମର ଯଦି କିଛି କହିବାର ଅଛି କହ । ଅଭିମାନ ବା ରୁଷାରେ ଉଭୟ ପକ୍ଷର କୌଣସି ମଙ୍ଗଳ ନାହିଁ ।

ଯାଉ ସେ ଜଂଜାଳ । ପ୍ରତି କଳି ପରେ ମୋର ପ୍ରାଣର ପାଗ୍‌ଲିଟିକି ପଛଆଡୁ ଭିଡ଼ି ନେଇ ଏକାନ୍ତ ଶେଯ ଉପରେ ନିର୍ମମ ଭାବରେ ଯାକି ଧରି ଯେପରି ଚୁମ୍ବନ ଉପରେ ଚୁମ୍ବନ ବର୍ଷି ଦେଇଯାଏ, ଆ ତତେ ସେଇପରି କରିବି । ପାଗ୍‌ଲିରେ ! ତୁ ଜାଣୁନା, ତତେ କୋଳରେ ଧରି ଗେଲ କରିବାକୁ ମୋର କି ତୀବ୍ର ଇଚ୍ଛା ହେଉଛି ଏଇ କେତେଦିନ । ମୁଁ ତତେ ଚିଆରିବା ପାଇଁ ସେସବୁ ଚାପି ରଖି, ଗାଳି ଦେଉଥିଲି ସିନା, କିନ୍ତୁ ପ୍ରକୃତ ମନର କଥା ଆଜି ବାହାରୁଛି । ଶୀଘ୍ର ଦେଶକୁ ଫେରିବି, ପାଗ୍‌ଲିକି ବକ୍ଷରେ ପୁଣି ଯାକି ଧରିବି,ତା'ର କର୍ଣ୍ଣମୂଳରେ ମଧୁର ଗୁଂଜନ କରି ଚୁମ୍ବନରେ ତାକୁ ଉନ୍ମତ୍ତ କରିବି, ତା'ର କେଶପାଶକୁ ଆଘ୍ରାଣ କରିବି, ତା'ର ଓଠକୁ ଉନ୍ମତ୍ତ ଚୁମ୍ବନର ଆକ୍ରୋଶରେ ଆଘାତ କରିବି...... ଓଃ କେତେ କଥା ଭାବୁଛି । ଛୋଟ ଶିଶୁ ଚାଲି ଆସିବ । ଏକ ପାଖରେ ଶିଶୁ ଓ ଅନ୍ୟ ପାଖରେ ତା'ର ମା'କୁ ଧରିବି- କିଏ ପ୍ରିୟତର ଠିକ୍ କରି ନପାରି ଉଭୟଙ୍କ ଗଣ୍ଡରେ ଏକାବେଳେକେ ଚୁମ୍ବନ ଦେବି ।

ଆଶା କରେ ହେମ, ଏ ସୁଖ ସମ୍ବର୍ଦ୍ଧନା ପରେ, ତମେ ମୋର ଜୀବନକୁ ଦୁର୍ବହ କରିବା ପୂର୍ବରୁ ଶହେଥର ଭାବିବ । ମୁଁ କେବଳ ପୂର୍ବ ଜୀବନର ପୁନରାଭିନୟ ଯେପରି ନ ହୁଏ, ଏଇ ଭୟରେ ଏ ପ୍ରସଙ୍ଗ ଆରମ୍ଭ କଲି । ନଚେତ୍ ତମୁକୁ ଗାଳି ଦେଇ ମୋର କି ଲାଭ କହ ? ବରଂ ତମର ଅଯୋଗ୍ୟତା, ତମର ନିନ୍ଦା, ମୋରି ଲଜ୍ଜାର କାରଣ । ତମେ କିମିତି ସୁଗୃହିଣୀ, ମଧୁମୟୀ ପତ୍ନୀ, ଯୋଗ୍ୟା ସହଧର୍ମିଣୀ ହେବ, ମୁଁ ସେୟା ଚାହେଁ । ତମେ ଏସବୁ ହେଲେ, ମୋର ଲାଭ ଅପେକ୍ଷା ତମରି ଲାଭ ଓ ସୁଖ ବେଶୀ ହେବ । କାରଣ ଗୁଣର ଶ୍ରେଷ୍ଠ ପୁରସ୍କାର ଗୁଣ । ପୁଣି ଆମ ଦେଶ ଓ ଜାତି ବର୍ତ୍ତମାନ ଅବସ୍ଥାରେ ଆଦର୍ଶ ପତ୍ନୀ ଓ ଜନନୀ ବିଶେଷ ଭାବରେ ଦରକାର କରେ । ତମେ ଯଦି ତମର ସାଧନା ବଳରେ ଗୋଟିଏ ମଣିଷକୁ ଗଢ଼ି ପାରିବାର ବା ଚଳେଇ ପାରିବାର କାହାଣୀ ପଛରେ ରଖିଦେଇ ଯାଅ, ତେବେ ଆଉ ତିନିଜଣଙ୍କ ଜୀବନରେ ତାହା ପ୍ରତିବିମ୍ବିତ ହୋଇପାରେ । ଦୋପଟୀ, ପ୍ରଫେସର, ନେତାଙ୍କ ସ୍ତ୍ରୀ କନ୍ୟାଙ୍କୁ ତ ଦେଖୁଛ, ଓଡ଼ିଶାରେ । ସେଗୁଡ଼ିକର ଅଧିକାଂଶଙ୍କର କୌଣସି ବ୍ୟକ୍ତିତ୍ୱ ହିଁ ନାହିଁ । ଆଉଗୁଡ଼ିକ କେବଳ ସ୍ୱାମୀର ନାଁ ଓ ଟଙ୍କା ବଳରେ ହିଁ ସମାଜରେ ଆଗରେ ଠିଆ ହେବାକୁ ଶିଖିଛନ୍ତି । ତମେ କ'ଣ ଏଇଥିରୁ ଗୋଟିଏ ହେବ ? ମୁଁ ଚାହେ ତମେ ତମର ଚରିତ୍ରର ମାଧୁର୍ଯ୍ୟରେ, ସାଧନାର ନିଷ୍ଠାରେ, ବ୍ୟକ୍ତିତ୍ୱର ଉଚ୍ଚତାରେ, ଅନ୍ୟ ଦଶଜଣଙ୍କ ଦୃଷ୍ଟି ଓ ସମ୍ମାନ ଯେପରି ଆକର୍ଷଣ କର । ଏବଂ ମୁଁ ଚାହେନା ଯେ ତମେ ତମର ସମ୍ମାନ ପାଇଁ କେବେହେଲେ ଯେପରି ସ୍ୱାମୀର ପଦ ବା ଅର୍ଥ ଉପରେ ନିର୍ଭର କରିବ । ସୀତା, ସାବିତ୍ରୀ ଯେ ଆଜି ପୂଜା ପାଉଛନ୍ତି, ସେ କ'ଣ ସ୍ୱାମୀମାନଙ୍କ ଯୋଗୁଁ ? ବରଂ ସ୍ୱାମୀଗୁଡ଼ିକ ଯେ କାବ୍ୟରେ ଅମର ହୋଇଛନ୍ତି, ତାହା ସେହି ସ୍ତ୍ରୀଗୁଡ଼ିକର ନିଜର ସ୍ୱତନ୍ତ୍ର ଚରିତ୍ରର ମାଧୁର୍ଯ୍ୟ ଓ ମହିମା ଯୋଗୁଁ । କିନ୍ତୁ ଏହି ମହିମା ସହଜଲଭ୍ୟ ନୁହେଁ ଜାଣିରଖ । ପ୍ରାଣପାତ ସାଧନା ସେଥିପାଇଁ ଦରକାର । ସେଥିପାଇଁ ନିଜର ଦେହ ଓ ମନକୁ ସଂଯମର ଘଣାରେ ପିଷ୍ଟ କରିବାକୁ ହେବ ।

ତମେ ଯଦି ଭାବୁଥାଅ ମୁଁ ପୁରୁଷର ସ୍ୱାର୍ଥରକ୍ଷା ପାଇଁ ତମୁକୁ ପାକଳଉଛି, ତମେ ଘୋର ଭ୍ରାନ୍ତ । ତମେ ମତେ ପବିତ୍ର ହେବାକୁ ତାଗିଦ୍ କରି ବାଟକୁ ଆଣିଛ । ଏଥିରେ ତମର ବିଶେଷ କ'ଣ ଲାଭ କହିଲ ? ଲାଭ ତ ମୋରି- ମୁଁ ତାହା ବର୍ତ୍ତମାନ ଅନୁଭବ କରୁଛି । ଯାହାକୁ ସ୍ନେହ କରାଯାଏ, ତା'ର ସୁଖ ପାଇଁ ଯଦି ସ୍ୱାର୍ଥତ୍ୟାଗ ଓ ସାଧନା କରାଯାଏ ତେବେ, ପ୍ରିୟଜନ ଭୂତ ହେଉ ପଛେ, ସେହି ସାଧନାରୁ ଯେଉଁ ଆଧ୍ୟାତ୍ମିକ ସୁଖ ମିଳେ ତାହାର ତୁଳନା ନାହିଁ । ମୁଁ ତମୁକୁ ସେହି ପଥକୁ ନେବାକୁ ଚେଷ୍ଟା କରୁଛି । ତମେ ସେଇ ପଥରେ ପାଦ ଦେବାର ଦେଖିଲେ, ମୁଁ ପ୍ରତିଦିନ ତମର ପବିତ୍ର ପଦକୁ ଚୁମ୍ବନ କରି ଦିନ ଆରମ୍ଭ କରିବି ।

ପ୍ରିୟ ।



## ଏକାବନ

# ତମର ସ୍ୱାସ୍ଥ୍ୟ କଥା ଲେଖିବ

ନିଉକାସ୍‌ଲ୍
୬.୧୧.୩୮

ସ୍ନେହର ଲକ୍ଷ୍ମୀ,

ମୋର ପୂର୍ବ ଚିଠିକୁ ପାଇଥିବ । ସେ ସଂବନ୍ଧରେ ଆଉ ଘଣ୍ଟା ଚକଟା ହେବା ଦରକାର ନାହିଁ । ମୋର ଯାହା କହିବାର ମୁଁ କହିଲି । ତମର ଯାହା କରିବାର କରିବ । ମୋର ଆଉ କିଛି କହିବାର ନାହିଁ ।

ନଭେମ୍ବର ଆସି ହେଲା । ଦେଖୁ ଦେଖୁ କ୍ରିସ୍‌ମାସ୍ ଆସି ପହଁଚିବ ଓ ଏବର୍ଷ ସରିବ । ତା'ପରେ ଜାନୁୟାରୀ, ଫେବୃୟରୀ, ମାର୍ଚ୍ଚ, ଏପ୍ରିଲ୍ - ୪ମାସ । ଘରକୁ ଫେରିବାକୁ ମନ ଉଚ୍ଛନ୍ନ ହେଲାଣି । ମାର୍ଚ୍ଚ ସରିକି ମୋର କାମ ସାରିଦେବାକୁ ମୁଁ ଲାଗିପଡ଼ିଛି । ଏବର୍ଷ ଏଯାଏଁ ଏଠି ଶୀତ ପଡ଼ିନି । ଅକ୍ଟୋବର ଶେଷ ଆଡ଼ିକି ଟିକିଏ ଶୀତ ହେଇଥିଲା- କିନ୍ତୁ ନଭେମ୍ବର ଆରମ୍ଭରୁ ଗରମ । ଚମତ୍କାର ସୂର୍ଯ୍ୟାଲୋକ ଦିନରେ ଓ ରାତିରେ ଜ୍ୟୋସ୍ନା । କାଲି ରବିବାର ଚମତ୍କାର ପାଗ ହେଇଥିଲା । ମୁଁ କେତେକ ଇଂରେଜ ଓ ଭାରତୀୟ ବନ୍ଧୁଙ୍କ ସାଥିରେ କୋଡ଼ିଏ/ତିରିଶ୍ ମାଇଲ୍ ଦୂରବର୍ତ୍ତୀ ଡର୍‌ହାମ୍ ଠାରେ ପ୍ରାଚୀନ ଦୁର୍ଗ ଓ ପ୍ରସିଦ୍ଧ କାଥିଡ୍ରାଲ୍ (ଧର୍ମମନ୍ଦିର) ଦେଖିବାକୁ ଯାଇଥିଲି । ଦୁର୍ଗଟି ଓ ମନ୍ଦିର ଗୋଟିଏ ଛୋଟ ପାହାଡ଼ ଉପରେ ଅବସ୍ଥିତ । ତଳେ ଗୋଟିଏ ଖରସ୍ରୋତା ନଈ ବହି ଯାଉଛି । ଦୁର୍ଗ ଉପରକୁ ଉଠି, ଉଚ୍ଚ ବାତାୟନ ଦେଇ ଚାରିଆଡ଼ର ମନୋହର ଦୃଶ୍ୟ ଉପଭୋଗ କଲି । ରାତିରେ ଚନ୍ଦ୍ର-ତାରକା ମଣ୍ଡିତ ଆକାଶତଳେ, ପର୍ବତର ପାର୍ଶ୍ୱଦେଶର ବନସ୍ପତି ଭେଦକରି ଉପରକୁ ଉଠିଥିବା କୃଷ୍ଣକାୟ ଗିରିଦୁର୍ଗର ଶୋଭା ମଧ୍ୟ ଚମତ୍କାର ଦେଖାଯାଉଥିଲା । ଏହି ଦୁର୍ଗ ପ୍ରାୟ ହଜାର ବର୍ଷର । ଏବେ ତାହା କଲେଜ ରୂପେ ବ୍ୟବହୃତ ହେଉଛି । ଦୁର୍ଗ ବାତାୟନ ନିକଟରେ ଠିଆହୋଇ ତଳର ଦୃଶ୍ୟ ଦେଖୁଥିଲା ବେଳେ ମୋର ମନେହେଲା ଆମର ସିମିତି ଘର-ଦୁର୍ଗ ଗୋଟିଏ ଥାନ୍ତା କି !

ଲଲାଟେନ୍ଦୁର କଥା ଲେଖିବ । ତମର ସ୍ୱାସ୍ଥ୍ୟ କଥା ଲେଖିବ । ସୂର୍ଯ୍ୟ ନମସ୍କାର ନାମ ଶୁଣିଛ ? ଏକପ୍ରକାର ଭାରତୀୟ ଏକ୍‌ସରସାଇଜ୍ । ବମ୍ବେ ପ୍ରଦେଶର ଆଉନ୍ଧ ଷ୍ଟେଟର ରାଜା ଓ ରାଣୀ ଏହି କସରତ୍‌ର ଭାରି ପ୍ରଚାର କରିଛନ୍ତି । ଏବେ ଏ ଦେଶରେ ଏଇ ଏକ୍‌ସର୍‌ସାଇଜ୍‌ର ଭାରି ପ୍ରସାର । ମୁଁ ଖଣ୍ଡିଏ ବହି କିଣି ପ୍ରାକ୍‌ଟିସ୍ କରୁଛି । ଗଲେ ତମକୁ ଶିଖେଇବି । ଏହି କସରତ୍ କରି, ଆଉନ୍ଧର ରାଣୀ ୮ଟି ସନ୍ତାନର ଜନନୀ ହୋଇ ମଧ୍ୟ ଷୋଳବର୍ଷର ଟୋକୀ ପରି ଦେଖାଯାଉଛନ୍ତି । କିନ୍ତୁ ତମେ ଘରକାମ ପ୍ରଭୃତି ବରାବର କରୁଥିବ । ଇତି, ଶୀଘ୍ର ଚିଠି ଦେବ ।

। ପ୍ରିୟ ।



### ବାଉନ

# ତମେ ଗୀତ ବୋଲିଲା ବେଳେ

ନିଉକାସଲ୍
୧୧.୧୧.୩୮

ସ୍ନେହର ଲକ୍ଷ୍ମୀ,

ତମର ଚିଠି ପାଇଲି । ମୋର ଯେତେଦୂର ଧାରଣା, ଆଜି ନଭେମ୍ବର ୧୧ ତାରିଖ ମୋର ଜନ୍ମଦିନ । ଆଜି ମଧ୍ୟ ବିଶ୍ୱବ୍ୟାପୀ ଶାନ୍ତି-ଦିବସ । ତମର ଚିଠି ମୁଁ ଆଶା କରି ନ ଥିଲି-ହଠାତ୍ ପାଇ ଭାରି ଖୁସୀ ହେଲି । ତମେ ଜଗନ୍ନାଥ ରଥଙ୍କ ଟିପଣା ଦେଖି ମତେ ଲେଖିବ କି ମୋର ଏଇ ଜନ୍ମଦିନଟା ଠିକ୍ କି ନୁହେଁ ?

ଲଲାଟେନ୍ଦୁର ସଂବାଦରେ ମୁଁ ଅତ୍ୟନ୍ତ ଖୁସୀ ହେଲି । ଆରବର୍ଷ କ୍ରିସ୍‌ମାସରେ ତା'ପାଇଁ ଏଠୁ ଖେଳନା ପଠାଇବାକୁ ଇଚ୍ଛା କରିଥିଲି, କିନ୍ତୁ ହେଇପାରିଲାନି । ଏବର୍ଷ ଭାବୁଛି - ବୋଧହୁଏ ହେଇପାରିବନି । ଗଲାବେଳକୁ ଗୋଟେ ଦି'ଟା ନେଇଯିବି ଭାବୁଛି- ଶେଷ କଥା ସେ ।

କିଛିଦିନ ତଳେ ଏଠାର ସ୍ଥାନୀୟ ଏକ ଖବରକାଗଜରେ ଜଣେ ଇଂରେଜ ମହିଳା ଜନ୍ମାନ୍ତର ବିଷୟରେ କେତେଗୁଡ଼ିଏ ଲେଖା ଲେଖିଥିଲେ । ସେ ଭାରତବର୍ଷକୁ ଯାଇ, ବନାରସ୍‌ରେ କୌଣସି ଯୋଗୀ ନିକଟିରୁ ଏସବୁ ଶିଖିଆସିଛି । ସେ ଗଣନା କରି ଲୋକର ପୂର୍ବଜନ୍ମ କହିପାରୁଛି ବୋଲି ତାଙ୍କ ଲେଖାରୁ ପ୍ରକାଶ । ସେ କୋଣାର୍କ ବି ଯାଇଥିଲେ । ତାଙ୍କ ପାଖକୁ ଏସବୁ ବିଷୟରେ ଖଣ୍ଡେ ଚିଠି ଲେଖିଲି । ସେ ନିଉକାସଲ୍‌କୁ ଆସିଲେ ମତେ ଦେଖାଦେବେ ବୋଲି ଲେଖିଛନ୍ତି । ଦେଖାହେଲେ ଲଲାଟେନ୍ଦୁର ଅତୀତ ଓ ଭବିଷ୍ୟତ କଥା ନିଶ୍ଚେ ପଚାରିବି । ସେ ଯାହା କହିବ ତମ ପାଖକୁ ଲେଖିବି ।

ତମେ ଗୀତ ବୋଲିଲା ବେଳେ ଲଲାଟେନ୍ଦୁକୁ ପାଖରେ ବସେଇବ । ସେ ତମୁକୁ ଅନୁକରଣ କରି ଗୀତ ଶିଖୁ । ଆମ ଦେଶର ଗାଉଁଲି ଗୀତ, କବି କମଳାକର ପ୍ରଭୃତି ସେ ଯିମିତି ଶିଖିଯିବ ତା'ର ବ୍ୟବସ୍ଥା କରୁଥିବ । ଏସବୁ ଘରେ ଶିଖାଯାଏ-ଇସ୍କୁଲରେ ସେ ଅନ୍ୟ ପାଠ ପଢ଼ିବ । ମୁଁ କଟକରେ ରହିଲେ, ତାକୁ ସଂଗେ ସଂଗେ ଇଂରେଜୀ ସ୍କୁଲ୍‌ରେ ଛାଡ଼ିବି, ସେ ଯେପରି ପିଲାଙ୍କ ସଂଗେ ମିଶି ଇଂରେଜୀ ପଢ଼ିବା ଆଗରୁ କହିବା ଶିଖିବ । ତମେ ତା'ର ଗୋଟିଏ ଫଟୋ ପଠାଉଥିଲ ପରା ? ପଠାଅ ।

ଭାଇ ବ୍ରିଷ୍ଟଲ୍‌ରେ । ମୁଁ କେତେବା ପଢ଼ିବି ? ଅନେକ ସମୟ ଭୟଙ୍କର ଏକାକୀ ଲାଗୁଛି । କେବଳ ଏଇ ଏକୁଟିଆ ଭାବ କଟେଇବା ପାଇଁ ବେଳେ ବେଳେ ସିନେମା ପ୍ରଭୃତିକି ଯାଏ । ତାକୁ ବା କେତେ ଦେଖିବ । କାଲି ଶନିବାର ଜଣେ ତରୁଣୀ ବାନ୍ଧବୀକି ଡାକୁଛି- କେବଳ ସମୟ କିମିତି କଟିବ । ଧନ, ବିଦେଶରେ ଆମର ଅବସ୍ଥା ଅନୁଭବ କରି ତମେ ଏସବୁ କ୍ଷମା ଦେବ । ସେ ତରୁଣୀଟି ମତେ ନାଚ ଶିଖେଇବ ବୋଲି କହିଛି । ସେ ବହୁଦିନୁ କହିଲାଣି-ମୁଁ ଡାକିବି ଡାକିବି ବୋଲି ଡାକି ପାରିନି ।

ମୁଁ ଘରୁ ବଦାଙ୍କ ଠାରୁ ଚିଠି ପାଇଥିଲି- ସେ ଝଡ଼ ତୋଫାନ ବିଷୟରେ । ମୁଁ ଗୋଦାବରୀଶବାବୁଙ୍କୁ ଖଣ୍ଡେ ଚିଠି ଦେଲି ସାଙ୍ଗେ ସାଙ୍ଗେ ଓ ସମାଜକୁ ଖଣ୍ଡେ ପତ୍ର ପ୍ରକାଶ ନିମିତ୍ତ ପଠେଇଲି । ଆଶା କରେ ଇତିଭିତରେ ସରକାର ପକ୍ଷରୁ କିଛି ନା କିଛି ସାହାଯ୍ୟ ବ୍ୟବସ୍ଥା ହୋଇଥିବ । ଖବରକାଗଜରେ ଯଦି କିଛି ବାହାରିଥାଏ ଏ ସଂବନ୍ଧରେ ଲେଖିବ । ମୁଁ ଏତେ ଦୂରରୁ ଥାଇ କ'ଣ କରିପାରେ ?

ମୁଁ ଆରବର୍ଷ ମେ-ଜୁନ୍ ଆଡ଼କୁ ଭାରତବର୍ଷରେ ପହଁଚିବି ବୋଲି ଭାବୁଛି । ଆଉରି ୬ମାସ କାଳ । ଗାଁର ଦୁର୍ଦ୍ଦଶାରେ ମୁଁ ବଡ଼ ବିଚଳିତ । କେବେ ଆଉ ସେ ନିରନ୍ନ ପୁରୁଷ ସ୍ତ୍ରୀ ଗୁଡ଼ିକର କିଛି କରିପାରିବି ? ଭାଗ୍ୟ ମୋର ଚିରକାଳ ଶତ୍ରୁ ହୋଇ ରହିଲା । ହାତରେ ମୋର ପଇସା ଥିଲେ, ମୁଁ କେତେ କ'ଣ କରିପାରିଥାନ୍ତି । ବିଧାତା ତା କରେଇ ଦେଲାନି । ବରଂ ଜୀବନସଂଗ୍ରାମରେ ଜୀବନର ସବୁ ଶସ ଶୋଷି ଲାଂଛନା ଓ ଅପମାନ ଭିତରେ ଦିନ ନେବାକୁ ବାଧ୍ୟ କଲା ।

ଏ ବର୍ଷ ଏଯାଏଁ ଏଠି ବଡ଼ ଶୀତ ନାହିଁ । ଆରବର୍ଷ ନଭେମ୍ବରରେ ବରଫ ପଡ଼ିଥିଲା ।

ମୋର ପୂର୍ବର ସବୁ ଚିଠି ପାଇଥିବ । ସେସବୁ ଭୁଲିଯିବ । ସେସବୁ ଭୁଲିଗଲେ ଓ ସବୁ ସହି ଓ ବୁଝି, ମୋର ମାନସିକ ଶକ୍ତି ଲାଗି ତମର ସାଧନା ଦେଖିଲେ, ମୁଁ କିମିତି ସ୍ନେହ କରିପାରେ ଦେଖିବ ।

ହେମବାବୁ ଇତି ଭିତରେ ଚିଠି ଦେଇଥିଲେ । ତାଙ୍କ ଆସିବା ଲାଗି ମୋର ଯାହା ସାହାଯ୍ୟ ଦେବାର କଥା ମୁଁ ଦେଉଛି ।

ମିସ୍ ନିସ୍‌ବେଟ୍ ଇତିଭିତରେ ଆଉ ଥରେ ଚା' ଖାଇବାକୁ ଡାକିଥିଲା । ସେ ବଡ଼ଲୋକର ପିଲା ନା- ଗୋଟେ ରକମର ଚା' ଦେଲା ମତେ ଯାହାକି ସର୍‌ବତ୍ ପରି ସୁଗନ୍ଧି । ଆର୍ଲ ଗ୍ରେ ନାମକ ଜଣେ ସମ୍ଭ୍ରାନ୍ତ ବଂଶୀୟ ଇଂରେଜ କୁଆଡ଼େ ଏଇ ଚା' ବ୍ୟବହାର କରୁଥିଲେ- ତାହା ବଡ଼ ଦାମିକା । ତାକୁ ପଚାରି ଚା'ର ନାଁଟା ଟିପି ରଖିବି ।

ଦକ୍ଷିଣ ଆଫ୍ରିକୀୟ ଏକ ଭାରତୀୟ ବଂଧୁ ତାଙ୍କ ଘରୁ ଡିବାଏ ତରକାରି-ମସଲା-ଚୂନା ନେଇ ଆସିଛି । ଆମେ ତିନିଜଣ ଭାରତୀୟ ମିଶି ତା'ର ସଦ୍‌ବ୍ୟବହାର କରୁଛୁ । ସେମାନେ ମୋ ଘରେ ଆସି ରନ୍ଧାବଢ଼ା କରୁଛନ୍ତି- ରବିବାର, ବୁଧବାର ବେଶ୍ ଭାତ-ତରକାରି ଭୋଜନ ମିଳୁଛି । ଗତ ଥର ମାଂସ ତରକାରି କରିଥିଲେ । ପ୍ରତିଦିନ ମସଲା ବାଟିବା ଅପେକ୍ଷା ମସଲା ଗୁଣ୍ଡ ବ୍ୟବହାର କଲେ ବହୁତ ଶ୍ରମଲାଘବ ହୁଅନ୍ତା ଆମ ଘର ମାନଙ୍କରେ । ମୁଁ ସେ ଭାରତୀୟ ବଂଧୁଟିକୁ ତାଙ୍କ ଘରୁ ମସଲାର ପରିମାଣ ଓ ମିଶ୍ରଣ ମଗେଇବାକୁ କହିଛି ।

ଶୀଘ୍ର ଚିଠି ଦେବ । ନିଶ୍ଚେ ଦେବ । ହେଳା କଲେ ଦେଖିବ ।

ଇତି

ପ୍ରିୟ



## ତେପନ

# ସବୁ କଥା ପ୍ରାଣଖୋଲି କହିଲ

ନିଉକାସଲ୍
୧୭-୧୧-୩୮

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲି । ଏ ପତ୍ର ପଢ଼ି ମୁଁ ଖୁବ୍ ସୁଖୀ ହେଲି । ମୁଁ ପୁରୁଣା କଥାଟାକୁ ଉତ୍ଥାପନ କରି ଘଣ୍ଟାଚକଟା କରିବାରେ ତମେ ଦୁଃଖ ପ୍ରକାଶ କରିଛ । କିନ୍ତୁ ତମେ ଜାଣନା ସେ ଘଟଣା ସବୁ ମୋ ମନରେ କି ଦୁଃଖ ଦେଇଛି । ସେସବୁ ମୋର ଜୀବନକୁ କେତେଦିନ ପାଇଁ ହାହାକାରମୟ କରିପକାଇଲା, ମୋର ସବୁ ସ୍ୱପ୍ନ ଭାଙ୍ଗି ଦେଲା, ମୋର ଆଖି ଆଗରୁ ଭବିଷ୍ୟତର ବାଟ ପୋଛି ଦେଲା । ଦୂର ଦେଶରେ ରହିବାରୁ, ତମକୁ ଦୂରରୁ ଥାଇ ସେସବୁ କଥା ପ୍ରାଣଖୋଲି କହିଲି - ଭଲ ହେଲା । ମୋର ଦୁଶ୍ଚିନ୍ତା କେତେ ପରିମାଣରେ ଶାନ୍ତ ହେଲା ଏବଂ ତମକୁ ମୋର ଦୁଃଖ ବୁଝିବାର ଏକ ସୁଯୋଗ ଦେଲି । ତେଣୁ ଉଭୟଆଡୁ ଲାଭ ହେଲା । ବର୍ତ୍ତମାନ ମିଳନ ମଧୁରତର ହେବ, ସ୍ନେହ ଗାଢ଼ତର ହେବ ଓ ପ୍ରେମ, ସବୁବେଳେ ସାବଧାନ ରହିବ ଯେପରିକି, ଯେଉଁ ରତ୍ନ ସେ ଫେରି ପାଇଛି ତାହା ଆଉ ସେ ନ ହଜାଏ । ତେଣୁ ତମର ଆଉ ଦୁଃଖ କରିବାର କିଛି ନାହିଁ । ଏ ସମ୍ବନ୍ଧରେ ଆମର ଯେତେ ଚିଠିପତ୍ର ଦିଆହୋଇଛି ସେଗୁଡିକ ନଷ୍ଟ କରିଦିଅ । ତମେ ଭୁଲିଯିବନି ଯେ, ସେ ଘଟଣା ଓ ତା'ର ସ୍ମୃତି ମତେ ତମ ଅପେକ୍ଷା କମ୍ କଷ୍ଟଦାୟକ ଓ ଊଣା ଲଜ୍ଜାଜନକ ହେଇଛି । ତମକୁ ଯଦି ମୁଁ ଆଦର୍ଶ, ଗୁଣବନ୍ତୀ, ମଧୁମୟୀ ସହଧର୍ମିଣୀ ବୋଲି ଜଗତକୁ ଦେଖାଇ ନପାରେ ତେବେ ତମ ଅପେକ୍ଷା ମୋର ଲଜ୍ଜା ଓ ହିନିମାନ କମ୍ ନୁହେଁ ବୋଲି ଜାଣିବ । ତମର ଦୋଷ ଯଦି ମୁଁ ଦେଖେଇଛି, ତା'ର ଅର୍ଥ ଏହା ନୁହେଁ ଯେ, ତମକୁ ମୁଁ ମୋ ପାଖରୁ ତଡିବାକୁ ଚାହେଁ । ଅର୍ଥଟା ଠିକ୍ ଓଲଟା । ମୋର ପ୍ରାଣ ଚାହେଁ ତମେ କିମିତି ଆଦର୍ଶ ପତ୍ନୀ, ମା', ଝିଅ, ଭଉଣୀ ହୋଇ ଦଶଲୋକ ଆଗରେ ପରିଚିତ ହେବ ଓ ଦଶଲୋକର ଉତ୍ସାହ ସ୍ୱରୂପ ହେବ । ତମେ ନିଜେ ଭାବ, ଭବାନୀପାଟଣାରେ ଯାହା ହେଉଛି, ତାହା କ'ଣ ତମକୁ ଆଦର୍ଶ ସହଧର୍ମିଣୀ କରିପାରିବ ? ତେବେ ମୁଁ ସେହି ଭୁଲ୍‌ଟା ଦେଖେଇ ଭଲ କରିନି କି ? କିନ୍ତୁ ଧନ, ମୁଁ କ'ଣ ତମର ଭୁଲ୍ ଦେଖେଇଛି କେବଳ ? ମୁଁ ବେଶୀ କହିବାକୁ ଚାହେଁନା - ପୁରୁଣା ପତ୍ରବିଡା ଖୋଲି ମୋ ଚିଠିଗୁଡିକ ପଢ଼, ଦେଖିବ ତମେ ମୋ ଆଖିରେ ଦେବୀ ବା ମାନବୀ ହେଇଥିଲ । ଆଶା କରେ ସେ ଦିନ ପୁଣି ଫେରିବ ।

ଲଳାଟେନ୍ଦୁର ଆଣ୍ଠୁକଥା ପରଚିଠିରେ ଲେଖିବ । ବୋଧହୁଏ କିଛି ବାଜି ଯାଇ ଆଘାତ ହୋଇଥିବ - ପିଲାଲୋକ ପ୍ରଥମେ ଜାଣିପାରିନି, କିନ୍ତୁ ପରେ ପରାଣ ବାହାରିଛି । ତା କଥା ଭଲ କରି ଲେଖିବ ।

ଆରମାସରେ ମତେ ନିଉକାସ୍‌ଲ୍ ବାହାରେ ଦୁଇଟି ସ୍ଥାନରେ ବକ୍ତୃତା ଦେବାକୁ ନିମନ୍ତ୍ରଣ ଆସିଥିଲା । ମୁଁ ଭାରତ ସମ୍ବନ୍ଧରେ ଦୁଇଟି ବକ୍ତୃତା ଦେଇଥିଲି । ଦୁଇଟିଯାକ ସ୍ଥାନରେ ହଲ୍ ପୂରିଯାଇଥିଲା ଓ ଶ୍ରୋତୃବର୍ଗ ସ୍ଥିରମନରେ ମୋର ବକ୍ତୃତା ଶୁଣିଥିଲେ ।

ଆର୍ତ୍ତବାବୁ ଶେଷରେ ଖଣ୍ଡେ ତାଳପତ୍ର ପୋଥି ପର୍ଶୁରାମ ବାବୁଙ୍କ ହାତରେ ପଠେଇଛନ୍ତି । କିନ୍ତୁ ସେଇଟି ପୁଣି ମୋର ନୁହେଁ । ମୋ'ଟିରେ ଭଲ ଚିତ୍ର ଥିଲା । ବୋଧହୁଏ ସେ ମତେ ଠକିବାକୁ ବସିଛନ୍ତି । ମୁଁ ତାଙ୍କୁ ଖଣ୍ଡେ କଷିକରି କଡା ଚିଠି ଲେଖିଛି । ସେ ଯାହାହେଉ ସେ ଦେଇଥିବା ପୋଥିର ଚିତ୍ର ସବୁ ଏଠାର ଶିଳ୍ପୀ କେତେକଙ୍କୁ ଦେଖେଇଲି - ସେମାନେ ମୁଗ୍ଧ ହେଉଛନ୍ତି ଦେଖି । ମୁଁ ପୋଥିଟି ସଂବନ୍ଧରେ ବିଭିନ୍ନ ମ୍ୟୁଜିୟମ୍‌ମାନଙ୍କୁ ଲେଖିଛି । ଏଠା କଲେଜରେ ଓଡିଶା ଶିଳ୍ପ ବିଷୟରେ ମୁଁ ଗୋଟିଏ ବକ୍ତୃତା ଦେବାଲାଗି ଆୟୋଜନ ହେଉଛି । ମୋର ରଚନା ଅଧାଅଧି ସରିଲାଣି । ମୋର ପ୍ରଫେସର୍ ମୋର କାର୍ଯ୍ୟରେ ବେଶ୍ ସନ୍ତୁଷ୍ଟ । ତେଣୁ ମୋର ଆଶା ହେଉଛି ମୋର ଡିଗ୍ରୀ ପାଇବାରେ କଷ୍ଟ ହେବନି । ଆରମାସରେ ପ୍ରଫେସରଙ୍କୁ କହିବି ମତେ ଶେଷରେ ମାସେଖଣ୍ଡେ ଅବ୍ୟାହତି ଦେବାକୁ - ଯେପରିକି ମୁଁ ମାର୍ଚ୍ଚ-ଏପ୍ରିଲ୍‌ରେ ବିଦାୟ ହେଇ ଯାଏ । ନିୟମ ଅନୁସାରେ ମତେ ଜୁଲାଇ ଯାଏଁ ଏଠି ରହିବାକୁ ପଡିବ । କିନ୍ତୁ ସେ ଯାଏଁ ରହିବାକୁ ମୋର ଧୈର୍ଯ୍ୟ ଓ ଅର୍ଥ ନାହିଁ । ଦୁର୍ଗା ଦାସଙ୍କ ପାଖକୁ ଖଣ୍ଡେ ଚିଠି ଦେଇଛି ଓ ପଚାରିଛି ମୁଁ ଜୁନ୍‌ରେ ପହଁଚିଲେ ମୋ ପାଇଁ କିଛି ଯୋଗାଡ ହେଇପାରେ କି ? ହୁଏତ ଆରସପ୍ତାହରେ ଉତ୍ତର ପାଇବି ।

ଗୋଦାବରୀଶ ବାବୁଙ୍କଠୁ ମୋ ଚିଠିର ଉତ୍ତର ପାଇଛି । ମୁଁ ତାଙ୍କ ନିକଟକୁ ଦଦାଙ୍କ ଚିଠିଟା ପଠେଇ ଦେଇଥିଲି । ସେ ସେ ଚିଠିଟା ପ୍ରଧାନମନ୍ତ୍ରୀଙ୍କ ପାଖକୁ ପଠେଇ ତୁରନ୍ତ ବିଚାର ପାଇଁ ଲେଖିଛନ୍ତି ବୋଲି କହନ୍ତି । ଆଶା କରେ ଇ ଭିତରେ ପାରିକୁଦ-ମାଲୁଦରେ କିଛି ବ୍ୟବସ୍ଥା ସରକାର କରିବେଣି । ସମାଜ ମୋ ଚିଠି ପ୍ରକାଶ କରିଥିବାର ଶୁଣି ମୁଁ ଖୁସୀ ହେଲି ।

ଶୀଘ୍ର ଚିଠି ଦେବ । ଇଲାଟେନ୍ଦୁର ଗୋଟେ ଫଟୋ ପଠାଅ । ତମର ନିକଟରେ ନେଇଥିବା ଫଟୋ ପଠାଅ । କିମ୍ୱା ଦୁହେଁ ଏକାଠି ନେଇଥିଲେ ତାହା ପଠାଅ । ତମର ଫଟୋକୁ ମୁଁ ଏନ୍‌ଲାର୍ଜ କରିଛି- ଦେଖି ସମସ୍ତେ ମୁଗ୍ଧ ହେଉଛନ୍ତି ।

।ଇତି।

ତମର ପ୍ରିୟ, ସେଦିନର ଓ ସବୁଦିନର



ଚଉବନ

## ଲାଲୁର ଜାତକରେ ଅଛି

ନିଉକାସଲ୍
୨୪-୧୧-୩୮

ସ୍ନେହର ଲକ୍ଷ୍ମୀ,

ତମର ଚିଠି ପାଇଲି । ତମର ଦେହ ବ୍ୟସ୍ତ ଥିବାର ଶୁଣି ବଡ ବିସ୍ମିତ ହେଲି । ଲାଲୁର ଜାତକରେ ଅଛି ବାପାମା'ଙ୍କୁ କିଛିଦିନ କଷ୍ଟ ଦେବ ସେ - ଖୁବ୍ ସମ୍ଭବତଃ ରାମସ୍ୱାମୀ ମତେ ଏଇମିତି କିଛି କହିଥିବାର ମନେ ଅଛି । କିନ୍ତୁ ଚିନ୍ତା ନାହିଁ । ଗ୍ରହର ନିର୍ଦ୍ଦେଶକୁ ମନିଷ ନିଜ ଚେଷ୍ଟା ଓ ସାଧନାରେ କଟେଇ ଦେଇପାରେ । ତମ ଘରେ ତମେ ମସଲାଦିଆ ଖାଦ୍ୟ ବେଶୀ ଖାଉଥିବ ଓ ଅଧିକ ପରିମାଣରେ ଷ୍ଟାର୍ଚ୍ଚ (ଭାତ, ଆଳୁ ପ୍ରଭୃତି) ଖାଦ୍ୟ ଖାଉଥିବ । ଏ ସବୁର ଫଳରେ ତମର ଖୁବ୍ ସମ୍ଭବତଃ ଝାଡା ପରିଷ୍କାର ହେଉ ନଥିବ । ଗୋଟିଏ କଥା କର । ସକାଳ ଜଳଖିଆଟି (ବ୍ରେକ୍‌ଫାଷ୍ଟ) ଭଲ କରି ଖାଅ । ମଧ୍ୟାହ୍ନ ଭୋଜନଟି ବେଶ୍ ଭାତ ତରକାରି କରି ଖାଅ । ରାତି ଖାଦ୍ୟଟି ଶୋଇବାର ୪/୫ ଘଣ୍ଟା ପୂର୍ବରୁ ଅନ୍ତତଃ ଯେପରି ଶେଷ କର । ଶୋଇଲା ବେଳେ କେବଳ ବେଶ୍‌କରି ଗ୍ଲାସେ ଗରମ ଦୁଧ ଖାଅ । ବ୍ରେକ୍‌ଫାଷ୍ଟ ଓ ରାତ୍ରିଭୋଜନଟି ରୁଟି-ଖାଦ୍ୟ ହେବା ଉଚିତ। ପରଟା ଓ ପୁରିରେ ଖରଚ ବେଶୀ । ରୁଟି କରି ସାରି ବେଶ୍ ଟିକିଏ ଘିଅ ବୋଳି ଦେଲେ ଚମତ୍କାର ଲାଗିବ - ପଞ୍ଜାବୀମାନେ ସେଇଆ ଖାନ୍ତି, ମୁଁ ଏଠି ଦେଖୁଚି । ଆମେ ସେଠି ଗରମ ଦେଶରେ କମ୍ ଖାଇବା କଥା, କିନ୍ତୁ ଆମେ ଚାରିଥର ଚୌରସ କରି ଖାଉ । ଏଠି ଶୀତ ଦେଶରେ ଏମାନେ ଯୋଡ଼ିଏ ପ୍ରଧାନ ଭୋଜନ ମାତ୍ର କରନ୍ତି, ଆଉ ଦି'ଟା କେବଳ ଚା'ପାନ । ମୁଁ ତ ଏଠି କେବଳ ୩ଥର ଖାଇ ବେଶ୍ ସୁସ୍ଥ ଅଛି । ଏକ୍‌ସରସାଇଜ୍ ଯୋଗୁ କୋଷ୍ଠ ସବୁବେଳେ ପରିଷ୍କାର - ବର୍ତ୍ତମାନ ମୁଁ ସୂର୍ଯ୍ୟନମସ୍କାରରେ ଦକ୍ଷ ହୋଇଗଲିଣି । ସକାଳେ ସୂର୍ଯ୍ୟନମସ୍କାର ଓ ରାତିରେ ଶୋଇବା ପୂର୍ବରୁ ଦି'ତିନିଟା ଆସନ । ମୁଁ ରାତିରେ ଏଗାରଟା ବେଳେ ଶୋଇବାକୁ ଯାଏ - ବର୍ତ୍ତମାନ ଭୟଙ୍କର ଜାଡ଼ । ରାତିରେ ଶେଯ ଭିତରେ ଗରମପାଣିର ବୋତଲ ପୂରେଇ ଶୁଏ - ଉଠୁ ଉଠୁ ପ୍ରାୟ ୮ଟା ବାଜିଯାଏ । ଉଠି ନିତ୍ୟକର୍ମ ସାରି ବ୍ରେକ୍‌ଫାଷ୍ଟ ଖାଇଲାବେଳକୁ ପ୍ରାୟ ସାଢ଼େ ୯ଟା । ମୁଁ ଚିରୁଡେ ପାଉଁରୁଟି, ଗୋଟେ ଡିମ୍ବ, ଗ୍ଲାସେ ଦୁଧ- ଏହାକୁଇ ବ୍ରେକ୍ ଫାଷ୍ଟ କରେ । ଗୋଟାଏ ବେଳେ କଲେଜରୁ ଫେରି ମଧ୍ୟାହ୍ନ ଭୋଜନ କରେ - ଭାତ ଖାଦ୍ୟ । ତା'ପରେ ୬/୭ଟା ଭିତରେ ରାତ୍ରି ଭୋଜନ - ରୁଟି, ମାଖନ, ମହୁ, ଟିକିଏ ଚାଖଣ । ତା'ପରେ ରାତି ସାଢ଼େ ୧୦ଟାରେ ଗ୍ଲାସେ ଦୁଧ । ତେଣୁ ଦେଖିବ, ଭବାନୀପାଟଣାଠୁ ଏ ଖାଦ୍ୟ କେତେ ସରଳତର ଓ ଅଳ୍ପ । କିନ୍ତୁ ଏଇ ଭୟଙ୍କର ଜାଡରେ ମଧ୍ୟ ମୁଁ କେବଳ ଯାକୁଇ ଖାଇ ସୁସ୍ଥ ଅଛି । ତମେ ଭାତ କମ୍ କରି ରୁଟି ଖାଅ ଓ ରାତିରେ ଖିଆଟା ବନ୍ଦ କର । ଭୋଖ ହେଲେ ଖାଅ । ଦୁଇଟି ପୂରା ଭୋଜନ ଭିତରେ ୬ଘଣ୍ଟାର ବ୍ୟବଧାନ ରଖ - ପରୀକ୍ଷା କରି ଦେଖିବ ୬ଘଣ୍ଟା ପରେ ହିଁ ପ୍ରକୃତ ଭୋଖ ଲାଗିବ ।

କିଛିଦିନ ତଳେ ମୋର ଗୋଟେ ଦାନ୍ତମୂଳ ଧରିଲା । ଦାନ୍ତରୁ ସବୁବେଳେ ଖାଲି ରକ୍ତ ବୋହିଲା । ମୁଁ ଗୋଟେ ଲେଡିବଂଧୁଙ୍କୁ କହିବାରୁ ସେ ମାଗଣା ଗୋଟେ ବୋତଲ ପଠେଇ ଦେଇଛି - ତାହା କିନ୍ତୁ ଥୁଆ ହେଇଛି । କିମିତି ଭଲ ହେଲି ଶୁଣ । ମୁଁ ମାଡ୍ରାସରେ ଯେଉଁ ଟୁଥ୍‌ବ୍ରସ୍ କିଣିଥିଲି, ସେଇଟା ଆଜି ଯାଏଁ ବ୍ୟବହାର କରୁଥିଲି ; କିନ୍ତୁ ସେଇଟା ଏକ୍‌ଦମ୍ ମୁଣ୍ଡା ହୋଇଯାଇଥିଲା - ଦାନ୍ତରେ ବହୁତ ମଇଳା ବସି ଯାଇଥିଲା । ସକାଳୁ ଉଠିଲା ବେଳକୁ ପାଟିରୁ ଫେଟାଏ ଲେଖାଏଁ ରକ୍ତନାଳ ପଡେ - ମୁଁ ବଡ ବ୍ୟସ୍ତ ହେଉଥାଏ । ସେ ଟୁଥ୍‌ବ୍ରସ୍‌କୁ ଫୋପାଡି ବଜାରରେ ଶ୍ରେଷ୍ଠ ଟୁଥ୍‌ବ୍ରସ୍ ଦେଢ଼ଟଙ୍କା ଦେଇ କିଣିଲି । ସେଇ ଦିନଠୁ ସେଇ ବ୍ରସ୍‌ରେ ସକାଳ ଓ ରାତି ଶୋଇବା ପୂର୍ବରୁ ଇମିତି ଦି'ଥର କରି ଦାନ୍ତ ଘଷିଲି (ଟୁଥ୍‌ପେଷ୍ଟ ନେଇ) - ଦୁଇଦିନ ଭିତରେ ଦାନ୍ତରୋଗ ଅନ୍ତର୍ଦ୍ଧାନ ହୋଇଗଲା - ବର୍ତ୍ତମାନ ଦାନ୍ତ ପରିଷ୍କାର - ସକାଳୁ ଉଠିଲା ବେଳକୁ ନାଳରକ୍ତ ନାହିଁ ।

ତମର ବୋଧହୁଏ ଦାନ୍ତ ଭଲକରି ପରିଷ୍କାର ହେଉନି । ଯୁଗଳ ଯେଉଁ ଦାନ୍ତଚୂର୍ଣ୍ଣ ବତେଇ ଥିଲା ତାହା ତିଆରି କରିନିଅ ବା କବିରାଜି ଦାନ୍ତଘଷା ଚୂର୍ଣ୍ଣ ନେଇଆସ - ଡିବା ଚାରଣା ଖଣ୍ଡେ ପଡିବ, ଯିବ ପ୍ରାୟ ମାସେ । ପ୍ରଥମେ ସେଇ ଚୂର୍ଣ୍ଣ ଦ୍ୱାରା ଆଙ୍ଗୁଠି ଦେଇ ଦାନ୍ତ ପରିଷ୍କାର କର-ପରେ ଦାନ୍ତକାଠି ଦେଇ । ରାତିରେ ଶୋଇବା ପୂର୍ବରୁ ନିଶ୍ଚେ ଦାନ୍ତ ଘଷ । କବିରାଜି ପାଉଡର୍ ନ ମିଳିଲେ ଖାଲି ପୋଡାଘସି ବ୍ୟବହାର କର । ଆଉ ଗୋଟେ କଥା - ଗରମ ପାଣି ବ୍ୟବହାର କରିବ - ଦାନ୍ତଘଷାରେ । ଗରମ ପାଣିରେ ମଇଳା ଛାଡେ ।

ତମେ, ମୁଁ ଯାହା କହିଲି ତାହା ପରୀକ୍ଷା କରି ସପ୍ତାହକ ପରେ ମତେ ଲେଖନା କ'ଣ ଫଳ ହେଉଛି । ମୁଁ ଆଶା କରେ ମୁଁ ଯେମିତି ଭାବରେ, ଖାଇବାକୁ କହିଛି ସେମିତି ଚଳିଲେ ତମର ଛୋଟ ଛୋଟ ରୋଗ ନିଶ୍ଚେ ଭଲ ହୋଇଯିବ । ଅବଶ୍ୟ ତମର ବିରାଟ ଗୋଷ୍ଠୀରେ ତମର ଅସୁବିଧା ହେଉଥିବ - କିନ୍ତୁ ମୁଁ ଯାହା କହିଛି ସେଥିରେ କୌଣସି ମୂଲ୍ୟବାନ୍ ବା ରୁଚିକର ଦ୍ରବ୍ୟ ନାହିଁ ଯେ ସେଥିକି ଅନ୍ୟମାନଙ୍କର ହିଂସା ହେବ । କେବଳ ତମର ନିୟମ ମାନି ଚଳିବା କଥା । ଋତୁ ବେଳେ ହିନ୍ଦୁ ନିୟମ ମାନି ଚଳ । ମୋ ଧନଟି ପରା, କୌଣସି ଲେଖିକା-ଶ୍ୱେତାଙ୍ଗୀ-ବାନ୍ଧବୀ ସଂଗେ ମୋର ଏବେ ଘନିଷ୍ଠ ପରିଚୟ ହେଉଛି । ତା'ଠୁ ବୁଝିବି ସେମାନେ ଋତୁ ସମୟରେ କ'ଣ କରନ୍ତି ଓ ତମୁକୁ ଲେଖିବି ।

ମୁଁ ଆଉ ଚାରି ପାଞ୍ଚମାସ ଭିତରେ ଯିବି । ଆଶା କରେ ତମୁକୁ ସୁସ୍ଥ ସବଳ ଦେଖିବି । ମୋ ପାଖରେ ତମର ଦେହ ଭଲ ରହିବ - ଏଇ କେତେଦିନ ତମେ ନିଜ ଦେହକୁ କିମିତି ସମ୍ଭାଳି ନିଅ । ମୁଁ ଦେଖୁଛି, ଆମର ଆଉ ସନ୍ତାନ କାମନା କରିବା ଅନୁଚିତ । ଆଉ ଗୋଟିଏ ସନ୍ତାନ ଜନ୍ମ ହେଲେ ତମର ସ୍ୱାସ୍ଥ୍ୟ ଏକାବେଳେକେ ଭାଙ୍ଗିଯିବ । ମୁଁ birth-control କଥା ତେଣୁ ଏବେ ବୁଝାବୁଝି କରୁଛି । ଶୀଘ୍ର ଚିଠି ଦେବ ।

।ଇତି।

ପ୍ରିୟ



## ପଞ୍ଚାବନ

# ଭବାନୀପାଟଣାରେ ଶିକ୍ଷକ ହୋଇ

ନିଉକାସଲ୍
୦୩-୧୨-୩୮

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲି । ତମରି ସ୍ୱାସ୍ଥ୍ୟ ଟିକିଏ ଭଲ ଅଛି ବୋଲି ଶୁଣି ସୁଖୀ ହେଲି । ଏଥର ଜଗି ଚଳ ଓ ମୁଁ ଯେମିତି ଆର ପତ୍ରରେ ଜଣାଇଛି, ସେପରି ଚଳିବାକୁ ଚେଷ୍ଟା କର । ତମ ପତ୍ର ସହିତ ଆଜି ଦଦାଙ୍କ ପାଖରୁ ଖଣ୍ଡେ ଚିଠି ପାଇଲି, ସେ ଚିଠିରେ ଯାହା ବର୍ଣ୍ଣନା ତାହା ହୃଦୟ ବିଦାରକ । ସେ ମତେ ବାରମ୍ବାର ଲେଖୁଛନ୍ତି କିଛି କରିବାକୁ । ମୁଁ କ'ଣ କରିପାରେ ? କିନ୍ତୁ ଅଶିକ୍ଷିତ ନିରୀହ ଗ୍ରାମବାସୀ-ସେମାନେ ଯେତେବେଳେ ଅନ୍ୟ କେଉଁଠୁ ଆଶ୍ରା ପାଉ ନାହାନ୍ତି, ମୋତେ ଅନେଇବା ସ୍ୱାଭାବିକ । ଦଦା ଲେଖିଛନ୍ତି, ଅନେକେ ଗାଁ ଛାଡି ପଳେଇଲେଣି - କେତେକ ଅନାହାରରେ ମଲେଣି । ମୁଁ ଗଲାବେଳକୁ ବୋଧହୁଏ ଗାଁ ଶ୍ମଶାନ ହୋଇଯାଇଥିବ । ମୋର ହୃଦୟ ବାସ୍ତବିକ୍ ଫାଟି ଯାଉଛି । କଂଗ୍ରେସ ଶାସନ ନ ନେଇଥିଲାବେଳେ ଏପରି ଘଟଣା ଘଟିଥିଲେ ଦେଖିଥାନ୍ତ ଚିତ୍କାର - ବିଦେଶୀ ସରକାର ଉପରେ ଗାଳିବର୍ଷଣ, ଦେଶବ୍ୟାପୀ ଆନ୍ଦୋଳନ । ଆଜି କଂଗ୍ରେସ ଅଧିକାର, ମରା ମନ୍ତ୍ରୀମାନେ ନିଜର ମୋଟା ଦରମା ନେବାରେ ବ୍ୟସ୍ତ-ଲୋକମାନେ ଅନାହାରରେ ମରୁଛନ୍ତି, ଏ ବୀଭତ୍ସ ଘଟଣା ସେମାନେ ସହ୍ୟ କରୁଛନ୍ତି କିପରି ? ବିଶ୍ୱନାଥ ଦାସ ନିଜେ ଏକ ମସ୍ତ ଧନୀ ଲୋକ - ଅନ୍ତତଃ ମାସକର ଦରମା ସେ ଦୁର୍ଭିକ୍ଷପୀଡିତ ଜନତାକୁ ଦେଇପାରନ୍ତେ । କିନ୍ତୁ କପର୍ଦ୍ଦକ ତାଙ୍କଠୁ ବାହାରିବ ବୋଲି ମୁଁ ଆଶା କରୁନି । ହାୟ, କାହିଁଗଲେ ଆମର ଦରିଦ୍ରବନ୍ଧୁ ଗୋପବନ୍ଧୁ ! ସେ ଥିଲେ କି ଲୋକେ ନଖାଇ ମରନ୍ତେ !

ମୁଁ ବର୍ତ୍ତମାନ ମୋର ଲେଖା ସାରିବାରେ ବଡ ବ୍ୟସ୍ତ । ଗାଁର ଦୁର୍ଦ୍ଦଶା, ଘରର ଡାକ - ସବୁ ସବୁ ମିଶି ମୁଁ ଦେଶମୁଖୀ ହୋଇ ବାଟ ଚାହୁଁଛି । କିନ୍ତୁ ଗଲେ ମତେ କି ଚାକିରି ମିଳିବ ? କଂଗ୍ରେସ୍ ମନ୍ତ୍ରୀମାନଙ୍କ ଠାରୁ ମୁଁ ସୁବିଚାର ଆଶା କରି ନପାରେ । ଭବାନୀପାଟଣାରେ ଶିକ୍ଷକ ହେଇ ମୁଁ କରଜ ଶୁଝିବି ଓ ପେଟପୋଷିବି କିପରି ? ଗାଁର ଅବସ୍ଥା ଶୁଣି ମୁଁ ଭୟଙ୍କର ବିଚଳିତ । ତମେ ସେ ସମ୍ବନ୍ଧରେ ଯାହା ଜାଣିବ ଲେଖିବ । ଶୀଘ୍ର ପତ୍ର ଦେବ ।

।ଇତି।
ତମର ପ୍ରିୟ



## ଛପନ

# ତମେ ସେତେବେଳକୁ ଦେବୀ ପାଲଟି ଯାଇଥିବ

ନିଉକାସଲ୍
୧୩-୧୨-୩୮

ପ୍ରାଣର ଲକ୍ଷ୍ମୀ,

ତମର ଚିଠି ପାଇଲି । ଆଶା କରେ ବାପା ବୋଉ ଫେରିବେଣି, ଲାଲୁ ଭଲ ହୋଇଯିବଣି ଓ ତମେ ସୁସ୍ଥ ହେବଣି । ତମର ଅବସାଦର ଏକମାତ୍ର କାରଣ ବୋଧହୁଏ ସ୍ୱାସ୍ଥ୍ୟହାନି । ଧନ, ଆଦୌ କିଛି ଭାବନି । ଦେହ ମୁଁ ଭଲ କରିଦେବି । ମନେରଖ, ଆମର ମାନସିକ, ଦୈହିକ ଓ ଗାର୍ହସ୍ଥ୍ୟ ସୁଖ ଯଦି ଚାହଁ, ତେବେ ଲଲାଟେନ୍ଦୁ ଆମର ଏକମାତ୍ର ସନ୍ତାନ ହେବ । ମୁଁ ସେଥିଲାଗି ପ୍ରସ୍ତୁତ ହେଉଛି । ସେ କିରାଣୀ ତମର ଜାତକ ଦେଖି ଯାହା କହିଥିଲେ ତାହା ମୋର ମନେ ପଡୁଛି - ଗୋଟିଏ ସନ୍ତାନ ହେବ, ଯେକି ବଂଶ ଉଜ୍ଜ୍ୱଳ କରିବ । ଆଉ ଗୋଟିଏ ସନ୍ତାନ ହେବା ଅର୍ଥ - ତମେ ଚିରରୁଗ୍ଣ ହେବା କଥା । କିନ୍ତୁ ତମେ ସେସବୁ ଏଇକ୍ଷଣି କିଛି ଭାବନି - ସଂଯତ ରହି, ବ୍ୟାୟାମ ଓ ଖାଦ୍ୟରେ ନିୟମ ମାନି ଚଳିଲେ ଦେହ କାହିଁକି ଭଲ ନ ରହିବ ମୁଁ କାରଣ ଦେଖିପାରୁନି । ଭବାନୀପାଟଣାରେ ଦିନରେ ଦି'ଥର ପାଇଖାନା ଯାଉଥିଲ । ଏବେ କେତେଥର ଯାଉଛ ? ଖୁବ୍ ସମ୍ଭବତଃ ଘରର ଖାଇବା ପିଇବାରେ କିଛି ଅସୁବିଧା ହେଉଥିବ । ତା'ଛଡା ମାନସିକ ଚିନ୍ତା ବି ଅଛି । ମୁଁ ଦୂର ପ୍ରବାସରେ ରହିଲି । ମୋର ଆଶଙ୍କା ତମର ମାନସିକ ରାଜ୍ୟରେ ଏହା ନିଶ୍ଚୟ କାର୍ଯ୍ୟ କରୁଥିବ । ତା'ଛଡା ଭବାନୀପାଟଣାରେ ଡାକ୍ତରି ଚିକିତ୍ସା କରାଇ ଆମେ ବଡ ଭୁଲ୍ କଲେ - ଲାଲୁ ବଳାତ୍କାରରେ ଜନ୍ମ ହେଲା - ତମର ଅକାରଣ ଅଜସ୍ର ରକ୍ତପାତ ହେଲା ଓ ତମୁକୁ ପ୍ରାୟ ୪/୫ ସେର୍ ଖଣ୍ଡେ ଔଷଧ ପାନ କରିବାକୁ ହେଲା । ମୁଁ ଗଲେ ସଂଗେ ସଂଗେ ତମୁକୁ କବିରାଜି ଚିକିତ୍ସାରେ ପକେଇବି - ସୁସ୍ଥ କରିବାକୁ ନୁହେଁ, ଡାକ୍ତରୀ ଔଷଧର ବିଷ କଟେଇବାକୁ କେବଳ । ତା'ପରେ ବ୍ୟାୟାମ ଓ ଖାଦ୍ୟ ବଳରେ ହିଁ ତମେ ସୁସ୍ଥ ହେବ । କିଛି ଚିନ୍ତା କରନି - ଖେଳ, ବୁଲ, ହସ, ଥଟ୍ଟା ତାମସା, ମାଡଗୋଳ କର, ଖାଅ ଭଲକରି - ମନେକର ତମର କିଛି ଅଭାବ ନାହିଁ । ତମର ଚିନ୍ତା କରିବାର କ'ଣ ଅଛି ବା ? ବାପା ବୋଉ - ଭଲ: ସ୍ୱାମୀ-ଭଲ ? -; ପୁଅ - ଭାରି ଭଲ: ଅଭାବ କ'ଣ ? ଅକାରଣ ମନକୁ ଅବସାଦ ଆଣନି । ଋତୁ ସମୟରେ, ପୂର୍ବେ ଯାହା କହିଛି, ହିନ୍ଦୁ ମତରେ ଚଳିବ - ଗାଧୁଆ ଗାଧୋଇ କରିବନି.... ମୋ ରାଣ । ଏଠି ବି ସେମାନେ ସେସବୁ ନିୟମ ମାନି ଚଳନ୍ତି ।

ଭାଇ ପାଖକୁ ଆଜି ଏକ ଚିଠି ଲେଖିବି । ତା'ଚିଠି କି ତମେ ଅପେକ୍ଷା ନକରି ତମର ତାକୁ ଚିଠି ଦେବା ଉଚିତ । ତମେ ଓଡିଆ - ଏଇ ସାମାନ୍ୟ କଥାଟା ବୁଝିପାରୁନା ଯେ, ବିଦେଶୀ ଘରକଥା ବେଶୀ ଜାଣିବାକୁ ଚାହେଁ, ଘରୋଇ ଲୋକେ ବିଦେଶୀ କଥା

ଜାଣିବା ଅପେକ୍ଷା । ବାରମ୍ବାର ଏଇ କଥାଟା ମନେ ପକେଇଲେ ମଧ୍ୟ, ତମେ ବୁଝିପାରୁନା - କାରଣ ତମମାନଙ୍କର ସ୍ନେହ ସ୍ୱାର୍ଥପର । ସେ କ'ଣ ଲେଖିବ ? ପ୍ରତିଦିନ କ୍ଲାସ୍‌କୁ ଯାଉଥିବ - ଘରୁକୁ ଫେରୁଥିବ - ଆଉ ଅଧିକା କ'ଣ ସେ ଲେଖିବ ? ତମର ସିନା ଘରକଥା-ଦେଶ କଥା- ସପ୍ତାହକୁ ସପ୍ତାହ ଟିପି ତାକୁ ଦେବା ଉଚିତ - ତା'ର ମନ ପ୍ରଫୁଲ୍ଲ ହେବାକୁ । ମତେ ଭୟଙ୍କର ବିରକ୍ତ ଲାଗୁଛି ତମର ସବୁ ଏ ଭାବ ଦେଖି । ତାକୁ ତମେ ଖୁସୀ କରେଇବ କ'ଣ - ତମେ ଚାହୁଁଛ, ସେ ତମ୍ଭକୁ ଖୁସୀ କରେଇବ । ମୁଁ ଏସବୁ କହୁଛି, କାରଣ ମୁଁ ନିଜେ ଜାଣେ ବିଦେଶରେ ରହିଲେ ମନିଷ କ'ଣ ଭୋଗେ - ଓ ଘରେ ଥିବା ଲୋକେ କେବଳ ସ୍ୱାର୍ଥପର ସ୍ନେହ ଯୋଗୁ କିମିତି ଏଇ ସାମାନ୍ୟ ସୁଖ ଟିକକ ମଧ୍ୟ ବିନା ଆଦାୟରେ ଦେବାକୁ ରାଜି ନୁହନ୍ତି । ଛି, ତମର ସ୍ନେହକୁ ।

ଧନ, ରାଗିବନି ଏସବୁ କହିଲି ବୋଲି । ତମ ସ୍ନେହର ଯେ ଏଇଟା ଗୋଟେ ଦୋଷ ତାହା ତମର ବୁଝିବା ଉଚିତ । ତମେ ତ ସ୍ନେହ କର-ଆଶା କର କାହିଁକି ? ବିନା ଆଶାରେ ଯେତେବେଳେ ସ୍ନେହ ଦେଇ ଶିଖିବ, ସେତେବେଳେ କେବଳ ଯେ ତମେ ସ୍ନେହ ଫେରିପାଇବ ତାହା ନୁହେଁ, ତମେ ସେତେବେଳକୁ ଦେବୀ ପାଲଟି ଯାଇଥିବ । ଭାଇ ଚିଠି ଦଉ ବା ନ ଦଉ, ତମର କ'ଣ ଅଛି ? ବିଦେଶରେ କଳବଳ ହେଉଛି ସେ - ତମେ regularly ତାକୁ ଚିଠି ଦେଇ ତା'ର ମନ ଖୁସୀ କର । ହଉ ଇଂରେଜୀରେ ତମ୍ଭକୁ କିଛି ଲେଖି, ବିଦାୟ ନିଏ ।

Dearest Hema,

I love you, I love you better than I ever loved you before. You are a great girl, I owe you everything in my life. I have not treated you well. I beg your pardon for that. I hope I shall make you forget the past by loving you still better and better, Good bye.

My dear dear, darling Hema.

Write to me something in English. My kisses for you.

Yours Priya

●

## ସତାବନ

# ଭାଗ୍ୟ ମୋର ଚିରକାଳ ଶତ୍ରୁ ହୋଇ ରହିଲା

ନିଉକାସଲ୍

୨୨-୧୨-୩୮

ସ୍ନେହର ଲକ୍ଷ୍ମୀ,

ପାଗଲି, ତୋର ଚିଠି ଏ ସପ୍ତାହରେ-ଅର୍ଥାତ୍ ସୋମବାର ଦିନ ପାଇନି । ଆଜି ଗୁରୁବାର । ଚିନ୍ତା ନାହିଁ । ବ୍ୟୋମଡାକ ବଡ ଗୋଳମାଳିଆ ହେଉଛି । ବର୍ତ୍ତମାନ

ବି ଖ୍ରୀଷ୍ଟମାସ ଭିଡ । ତେଣୁ ଭାରତବର୍ଷକୁ ଓ ଭାରତବର୍ଷରୁ ଯିବା ଆସିବାର ଚିଠିପତ୍ର ବଡ ଅନିୟମିତ ଭାବରେ ପହଁଚୁଛି । ମୋର ଚିଠି ହୁଏତ ବିଳମ୍ବରେ ପହଁଚିଥିବ । କିନ୍ତୁ ତା'ର ଏକମାତ୍ର କାରଣ ଏଇଆ । ମୁଁ ବରାବର ପ୍ରତି ସପ୍ତାହରେ ଲେଖୁଛି ।

ଏଠି ବର୍ତ୍ତମାନ ଭୟଙ୍କର ଜାଡ । ଚାରିଆଡ ବରଫାଚ୍ଛନ୍ନ । ଦେଶର ଅନେକ ଜାଗାରେ ଗାଁଗଣ୍ଡାକୁ ଆଉ ବାଟ ନାହିଁ । ପ୍ରତିଦିନ ସକାଳୁ ହଜାର ହଜାର ଲୋକ ରାସ୍ତା ସଫା କରିବାରେ ଲାଗିଛନ୍ତି - ମଟର , ଟ୍ରାମ୍ ପ୍ରଭୃତି ଯିବା ଆସିବା ପାଇଁ । ଖବରକାଗଜରେ ପ୍ରକାଶ ଏମିତି ଶୀତ ଓ ବରଫ ଅନେକବର୍ଷ ଧରି ଏ ଦେଶରେ ଦେଖା ନଥିଲା । ତେବେ ଆଜିଠୁ ଶୀତ ଟିକିଏ କମିଛି ଓ ବରଫ ତରଳିବା ଆରମ୍ଭ କରିଛି । ବିଲାତରେ ପ୍ରତିଦିନ ଖବରକାଗଜରେ ପାଗକଥା ବାହାରେ - ତା'ଛଡା ବେତାର ଯନ୍ତ୍ରରେ ଦିନରେ ବହୁବାର ଦେଶର ନାନା ସ୍ଥାନର ପାଗର ଅବସ୍ଥା ଓ ଭବିଷ୍ୟତ ଜଣେଇ ଦିଆଯାଏ ।

ଏ ମାସରେ ଭାରତବର୍ଷ, ହିନ୍ଦୁ ଧର୍ମ ଓ ଗାନ୍ଧିଙ୍କ ସମ୍ବନ୍ଧରେ କହିବାକୁ ମତେ ଏକାଧିକ ଜାଗାରୁ ନିମନ୍ତ୍ରଣ ଆସିଥିଲା । ମୁଁ ନିଜ କାମରେ ଏତେ ବ୍ୟସ୍ତ ଯେ, ସେ ସବୁକୁ ଜାନୁୟାରୀ କି ରଖି ଦେଇଛି । ଗୋଟିଏ ଛୋଟ ସମ୍ମିଳନୀରେ ହିନ୍ଦୁଧର୍ମ ବିଷୟରେ କହିଥିଲି । ସଭା ଶେଷରେ ଯେତେବେଳେ ଜାଣିଲି ଯେ, ସମସ୍ତେ ହିନ୍ଦୁଧର୍ମର ମହତ୍ତ୍ୱ ଓ ଯୁକ୍ତିଯୁକ୍ତ ପନ୍ଥା ଅନୁଭବ କରିପାରିଛନ୍ତି ! ମୁଁ ବେଶ୍ ଖୁସୀ ହେଲି ।

ରାମ ଏକ ଚିଠି ଦେଇଥିଲା । ସେ କ'ଣ ପରୀକ୍ଷା ଦେଉନି ଏଥର ! ବୋଧହୁଏ କଲେଜର କ୍ଷଣିକ ଆନ୍ଦୋଳନ ମାନଙ୍କରେ ସେ ବେଶୀ ଯୋଗ ଦେଉଛି, ନିଜର ପଢ଼ା କ୍ଷତି କରି । ତାକୁ ସାବଧାନ କରି ଦିଅ ।

ଆଶା କରେ ତମର ଦେହ ଭଲ ହୋଇଯିବଣି । କିଛି ଚିନ୍ତା କରନି । ମତେ ଯଦି ପ୍ରକୃତରେ ତମେ ପ୍ରାଣମନ ଦେଇ ସ୍ନେହ କରୁଥାଅ ତେବେ ତମେ ନିଶ୍ଚେ ସୁସ୍ଥ ହେବ । ସ୍ନେହ ଦେହ ଓ ମନର ଔଷଧ ।

ଲଲାଟେନ୍ଦୁର କଥା ଲେଖିବ । ସେ ଆଉ କି କି ଦୁଷ୍ଟାମି କରୁଛି ? ଦୁଷ୍ଟାମି କରିବା ସ୍ୱାସ୍ଥ୍ୟର ଚିହ୍ନ - ବିରକ୍ତ ହେବନି । ତାକୁ ବଳ ପୂର୍ବକ କେବେ ଖୁଆନା ।

ତମର ଚିଠି ନ ପାଇଥିବାରୁ ମୁଁ କିଛି ଲେଖି ପାରୁନି ଏଥର । ତମ ଚିଠି ପାଇଲେ ବେଶୀ ଲେଖିବି । କ୍ଷମା କରିବ । ଧନ, ଆ ତତେ ଆଲିଙ୍ଗନ ଦେଇ ପବିତ୍ର ଚୁମ୍ବନ ଦିଏ ।

ଇତି
ତୋର ପ୍ରିୟ



## ଅଠାବନ

# ଆଜି ତମ୍ଭକୁ ମୁଁ ପୂଜା କରୁଛି

ନିଉକାସ୍ଲ୍
୨୯.୧୨.୩୮

ପ୍ରାଣର ଲକ୍ଷ୍ମୀ,

ତମର ୧୭ ଡିସେମ୍ବରର ଚିଠି ଆଜି ପାଇଲି । ଏଇ ସପ୍ତାହରେ ତମକୁ ଆଗରୁ ଚିଠି ଦେଇଛି- ପାଇଥିବ । ସେଥିରେ ତମେ କିଛି କବିରାଜି ଔଷଧ- ବିଶେଷତଃ ଅଶୋକ ଘୃତ ବ୍ୟବହାର କରିବାକୁ କହିଛି । କରିବ । ଟଙ୍କା କଥା ଲେଖିଥିଲ । ତମର ତ ଅଭାବ ପ୍ରଚୁର, ଋଣ ଭାର ଅସହ୍ୟ, ତମ୍ଭକୁ କିପରି ଆଉ ଟଙ୍କା ପାଇଁ ଲେଖିବି ? ତମେ ପଠେଇ ଥିବା ୨୦ ପାଉଣ୍ଡ ଆଜି ଯାଏଁ ଚଳେଇ ନେଲା । ମୋର ମାସରେ ୭୦ ଟଙ୍କାରୁ ବେଶୀ ଖର୍ଚ୍ଚ ହେଉନି । ଏତେ କମ୍‌ରେ ଏ ଦେଶରେ କୌଣସି ଲୋକ ଚଳୁନି । ତାଳପତ୍ର ଚିତ୍ର ପୋଥି ବିକି କିଛି ଟଙ୍କା ପାଇବି ବୋଲି ଭାବିଛି । କିନ୍ତୁ ସେ କେବଳ ସମ୍ଭାବନା- ଠିକ୍ କିଛି ନାହିଁ । ଓଡ଼ିଶାର କଳା ସଂବନ୍ଧରେ ଗୋଟିଏ ବକ୍ତୃତା ଏଠି ଦେବାର ଯୋଗାଡ଼ ହେଉଛି । ତେଣୁ ସେ ଚିତ୍ର ସବୁର ଫଟୋ ନିଆହୋଇ ଲଣ୍ଠନ-ସ୍ଲାଇଡ୍ ସବୁ ତିଆରି ହେଉଛି । ସେସବୁ କଲେକ୍ଟ କରୁଛି । ସେସବୁ ସରିଲେ, ମୁଁ ପୋଥିଟି ବ୍ରିଟିଶ୍ ମ୍ୟୁଜିଅମ୍‌କୁ ପଠେଇବି । ମୁଁ ଜାଣେନା କ'ଣ ଫଳ ହେବ, କିନ୍ତୁ ଟଙ୍କାର ଅଭାବ ପୂର୍ବେ ଯେପରି ମତେ ମ୍ରିୟମାଣ କରୁଥିଲା ସେପରି କରୁନି । କାରଣ ୧୯୩୯ ଉପସ୍ଥିତ- ଦେଢ଼ ବର୍ଷ ଯେତେବେଳେ କଟିଗଲାଣି, ଆଉ ୪/୫ ମାସ ପାଇଁ କ'ଣ କଥା ରହିଯିବ ? ଭାଇ ପ୍ରାୟ ୧୧ ପାଉଣ୍ଡ ନେଇ ଗୋଟେ କାମେରା କିଣିଥିଲା । ସେ'ଟା ସେ ମୋ ପାଖରେ ପକେଇ ଦେଇ ଯାଇଛି । ଏତେ ଦାମ୍ ଦେଇ କାମେରା କିଣିବା ମସ୍ତ ଭୁଲ୍ । ସେ ବର୍ତ୍ତମାନ ସେ କାମେରା ବିକିବାକୁ ମତେ କହିଛି । ଆଜି ବୁଝିଲି, ତାକୁ ୫ ପାଉଣ୍ଡକୁ ସୁଦ୍ଧା କେହି ନେବେନି । ଯଦି ଆଉ ଟିକିଏ ବେଶୀ ଦାମ୍‌ରେ କାମେରାଟି ବିକିପାରେ କାହାକୁ ତେବେ ମୋର ମାସେ ଦି'ମାସ ଚଳିଯିବ । ଏଇମିତି ହାତେ ମାପି ଚାଖଣ୍ଡେ ଚାଲିବା କଥା- ଆଉ କ'ଣ ? ଭାବୁଛି ଏଇମିତି ଚଳିଯିବ ।

ଭୟଙ୍କର ଶୀତ ଓ ବରଫପାତ ପରେ ଏବେ ଟିକିଏ ଥଣ୍ଡା କମିଛି ଏଠି । ଏବର୍ଷ ଶୀତକାଳ ଆରବର୍ଷ ଅପେକ୍ଷା ଅଧିକ ସହ୍ୟ ବୋଧ ହେଉଛି । ଶୀତ କଲେ ହେଁ ଅନେକ ଦିନ ବେଶ୍ ସୂର୍ଯ୍ୟାଲୋକ ମିଳୁଛି । ତମର ସେଠି କିମିତି ଶୀତ ପଡ଼ିଛି ? ଶୀତରେ ଲଲାଟେନ୍ଦୁ କ'ଣ କରେ ? ଶୀତଦିନେ ଦେହ ତ ଭଲ ହେବାର କଥା, ତମର ଦେହ କାହିଁକି ଖରାପ ହେଉଛି ? ସକାଳୁ ପଡ଼ିଆରେ ଦଉଡ଼ ଓ ଦୀର୍ଘ ନିଃଶ୍ୱାସ ନିଅ । ଖୁବ୍ ଦୈହିକ ପରିଶ୍ରମ କର- ଯେମିତି ଭୋଖ ହେବ । ନିୟମରେ ଚଳିଲେ ଦେହ କାହିଁକି ଖରାପ ହେବ ମୁଁ ଭାବି ପାରୁନି । ପୂର୍ବର ଖଇଚାଟା କଟେଇବା ପାଇଁ କିଛି ଅଶୋକଘୃତ ଖାଇନିଅ ।

ତମର ଫଟୋଟି ମିସ୍ ନିସ୍‌ବେଟ୍ ନେଇଥିଲା । ଦିନେ ଭୁଲ୍‌ରେ ଫଟଟା ଉପରେ ବସିପଡି କାଚଟି ଭାଙ୍ଗିଦେଲା । ମତେ ବହୁତ ଦୁଃଖଜ୍ଞାପନ କଲା ଓ ମରାମତିର ଦାମ୍ ଦେବ ବୋଲି ବାରମ୍ବାର ଅନୁରୋଧ କଲା । ମୁଁ ତାକୁ ପ୍ରବୋଧ ଦେଇ ଫଟୋଟି ନେଇ ଆସିଲି । ଆଜି ପୁଣି କାଚ ଲଗେଇ ଆଣିଛି ।

ତମୁକୁ ଯଦି ମୁଁ କେବେ ସ୍ନେହ କରି ନଥିଲି ତେବେ ଏବେ କରୁଛି ବୋଲି ଜାଣ । ତମେ କିପରି ମତେ ପାପ ଓ ଅପରାଧରୁ ରକ୍ଷା କରିଛ ଏ ଦେଶରେ ତା' ମୁଁ ଜାଣିପାରି, ଆଜି ତମୁକୁ ମୁଁ ପୂଜା କରୁଛି । ସେ ବିଷୟ ବେଶୀ କହିବା ଭଲ ନୁହେଁ । ଶୀଘ୍ର ଚିଠି ଦେବ । ତମର ଓ ଲାଲୁର ଫଟ ପଠାଅ ।

ଇତି
ମାନସିଂ

●

## ଅଣଷଠି

## ତମର ମାନ ଅଭିମାନ ଗାଳି ଛାଡି ପାରୁନ !

ନିଉକାସ୍‌ଲ୍
୧୦.୧.୩୯

ପ୍ରାଣର ଲକ୍ଷ୍ମୀ,

ତମର ଡିସେମ୍ବର ୩୧ ତାରିଖର କାର୍ଡ୍ ଖଣ୍ଡି କାଲି ପାଇଲି । ଖୁବ୍ ସମ୍ଭବତଃ କ୍ରିସ୍‌ମାସ୍ ଯୋଗୁ ଚିଠି ପାଇବାରେ ବିଳମ୍ବ ହେଉଛି । ତମେ ଅକାରଣେ ବ୍ୟସ୍ତ ହେଉଛ ଓ ମତେ ଗାଳି ଦେଉଛ । ମୋର କୌଣସି ଦୁଃଖ ଦୈନ୍ୟ ନାହିଁ ପରା ?- ତମର ମାନ ଅଭିମାନ ଗାଳି ଛାଡ଼ିପାରୁନ ! ଆଶା କରେ ମୋର ସବୁ ଚିଠି ବର୍ତ୍ତମାନ ପାଇବଣି - କାରଣ ମୁଁ ପ୍ରତି ସପ୍ତାହରେ ତମୁକୁ ଚିଠି ଦେଉଛି ।

ଭାଇ, କ୍ରିସ୍‌ମାସ୍‌ରେ ଏଠାକୁ ଆସି ନଥିଲା । ମୋର ବର୍ତ୍ତମାନ ମନ ଭଲ ନାହିଁ । ଟଙ୍କାପଇସାର ଅଭାବ । ଥେସିସ୍ ଲେଖା ପ୍ରାୟ ସରିଲାଣି । ବର୍ତ୍ତମାନ ତାକୁ ଦାଖଲ୍ କରିବାକୁ ଫିସ୍ - ଟାଇପ୍ କରିବାର ଖର୍ଚ୍ଚ ଇତ୍ୟାଦି - ତା' ଛଡ଼ା ବଡ଼ ଚିନ୍ତା ମତେ ଏପ୍ରିଲ୍ ମାସରେ ଏମାନେ ଛାଡ଼ିବେ କି ନାହିଁ । ମୋର ମନ ଏଠି ଆଉ ଧରୁନି । କୌଣସି ମତେ ଶୀଘ୍ର ଦେଶକୁ ଫେରିବା ଇଚ୍ଛା । ତମେ ଆଦୌ ବ୍ୟସ୍ତ ହେବନି । ତମର ଅଭାବ ତ ତମୁକୁ ବଳଉଥିବ - ତେଣୁ ମୋ କଥା ଆଦୌ ଭାବିବନି । ମୁଁ କୌଣସି ମତେ ଚଳେଇ ନେବାର ଚେଷ୍ଟା କରୁଛି - ଏତେ ଦିନ ଚଳି ଆସିଲି, ଆଉ କେତେଟା ଦିନ ପାଇଁ କ'ଣ କଥା ରହିଯିବ ? ଅସୁବିଧାରେ ପଡ଼ିଲେ ମନ ସବୁବେଳେ ଯିମିତି ବ୍ୟସ୍ତ ହୁଏ, ସିମିତି ବ୍ୟସ୍ତ ହେଉଛି - ସେଥିରେ ଆଉ ବିଶେଷର କ'ଣ ?

ରଣପୁରରେ ଲୋକେ ମିଶି ଜଣେ ସାହେବକୁ ମାରି ପକେଇଥିବା କଥା ଏଠି ସବୁ ପତ୍ରିକାରେ ପ୍ରକାଶିତ ହେଉଥିଲା । ତା'ର ଫଳରେ କଂଗ୍ରେସ ମହଲରେ କିପରି ପ୍ରତିକ୍ରିୟା ଆସିଛି ତା' ବି ବାହାରିଛି ।

ଧନ, ଏଇ ସପ୍ତାହରେ ମୋର ଅସୁବିଧାତକ ଦୂର ହୋଇଗଲେ ବା ଦୂର ହେବାର ଆଶା ଦେଖିଲେ, ଆର ସପ୍ତାହକୁ ଭଲ ଚିଠି ଦେବି । ମତେ ଅକାରଣ ଗାଳି ଦେ'ନା ବା ଅଭିମାନ କର୍‌ନା । ମୋର ଦୁଃଖରେ ତମର ସହାନୁଭୂତି କରିବାର କଥା ନା ?

ମୋର ଆଲିଙ୍ଗନ ଓ ଆଘ୍ରାଣ କରିବ । ଇତି ।

ତମର ପ୍ରିୟ

●

## ଷାଠିଏ

# ଆଶା କରେ ତମେ ସୁସ୍ଥ ହେବଣି

ନିଉକାସ୍‌ଲ୍
୧୬.୧.୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲି । ଗତ ଚିଠିଟି ଛୋଟ ହୋଇଥିଲା, କାରଣ ମୋର ମନ ଭଲ ନ ଥିଲା । ବର୍ତ୍ତମାନ ବି ଭଲ ନାହିଁ । ଇତିଭିତରେ ମୁଁ ଜୁଲାଇ ପରିବର୍ତ୍ତରେ ଏପ୍ରିଲ୍‌ରେ କିପରି ଯିବି ସେଥିଲାଗି ଦରଖାସ୍ତ କରିଛି । ତା'ର ଫଳ କ'ଣ ହେବ ସେଥିଲାଗି ମୁଁ ଚିନ୍ତିତ । ତା'ଛଡ଼ା ଆର୍ଥିକ ଅସୁବିଧା । ତମର ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ମୁଁ ତାଳପତ୍ର ପୋଥି-ଚିତ୍ର ବ୍ରିଟିଶ୍ ମ୍ୟୁଜିଅମ୍‌କୁ ପଠାଇଛି । ଏ ପର୍ଯ୍ୟନ୍ତ ଉତ୍ତର ପାଇନି । ଆଶା କରୁଛି କିଛି ପାଇବି । କିନ୍ତୁ କିଛି ନ ପାଇପାରେ ଆଦୌ ।

ଭୁବନେଶ୍ୱର ଓ କୋଣାର୍କର କେତେଗୁଡ଼ିଏ ସୁନ୍ଦର ଛବି ଲଣ୍ଡନରୁ ପାଇଛି । ତାଳପତ୍ର ଚିତ୍ରର ସୁନ୍ଦର ଫଟୋ ଓ ସ୍ଲାଇଡ୍ ତିଆରି ହେଲା । ଏଗୁଡ଼ିକର ସ୍ଲାଇଡ୍ ତିଆରି ହେଲେ ମୁଁ ବକ୍ତୃତା ଦେବି ।

ବିଶେଇ ସାନ୍ତପା'ଙ୍କ ମୃତ୍ୟୁରେ ମୁଁ ବଡ଼ ଦୁଃଖିତ । ଗୋଟି ଗୋଟି ହୋଇ ସମସ୍ତେ ଚାଲିଗଲେ । ମୁଁ ଏମାନଙ୍କର କିଛି କରିପାରିଲିନି ।

କାଲି ରବିବାର ରାତିରେ ମୁଁ ସାଉଥ୍‌ସିଲ୍ଡସ୍ ନାମକ ନିଉକାସ୍‌ଲ୍‌ର କିଛି ଦୂରରେ ଏକ ସହରକୁ ଗାନ୍ଧିଙ୍କ ଅହିଂସା ସଂଗ୍ରାମ ବିଷୟରେ କହିବାକୁ ଯାଇଥିଲି । ଗୋଟିଏ ଛୋଟ ଦଳ- ନାରୀପୁରୁଷ- ବଡ଼ ଆଗ୍ରହରେ ଶୁଣିଲେ । ଦଳର କର୍ତ୍ତା ମତେ ନିଜ ମଟରରେ ନେଇ ଛାଡ଼ି ଦେଇଗଲେ ଓ ଆହୁରି ଥରେ ଡାକି ଭାରତବର୍ଷର କଥା ଶୁଣିବେ ବୋଲି କହି ଦେଇ ଗଲେ ।

ଆଶା କରେ ତମେ ସୁସ୍ଥ ହେବଣି ।

ଏଇ ସପ୍ତାହରେ ଯାହା ଘଟିବ, ଆର ଚିଠିରେ ଲେଖିବି । ଇତି ।

ପ୍ରିୟ



## ଏକଷଠି

# ଲାଲୁକୁ ତମେ ବିସ୍କିଟ ଖୁଆଇଲ କାହିଁକି ?

ନିଉକାସଲ୍
୧୯-୦୧-୩୯
ଗୁରୁବାର

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ପାଇଲି । ବ୍ରିଟିଶ୍ ମ୍ୟୁଜିଅମ୍‌ରୁ ଖଣ୍ଡେ ପତ୍ର ପାଇଛି - ପୋଥି ସମ୍ବନ୍ଧରେ ସେମାନେ ବିଚାର କରୁଛନ୍ତି । କି ବିଚାର ହେବ ଶେଷରେ ମୁଁ ଜାଣେନା । ଯଦି ନାହିଁ କରନ୍ତି, ତେବେ ମୁଁ କ'ଣ ଯେ କରିବି ବୁଝିପାରୁନି । ମୋ'ଠି ମାତ୍ର ୩/୪ ଶିଲିଂ ସମ୍ବଳ ଅଛି । କିନ୍ତୁ ଚିନ୍ତା ନାହିଁ । ମନଟା ବର୍ତ୍ତମାନ ଅସ୍ଥିର - କିଛି କାମ କରିପାରୁନି କିନ୍ତୁ ଦକା ନାହିଁ - ମନ ଭିତର କହୁଛି କୌଣସି ମତେ ଯୁଝିବ ମେଣ୍ଟିଯିବ । ତମେ ବ୍ୟସ୍ତ ହେବନି । ଟଙ୍କା ଯଦି ଅଛି (?) କିଛି ପଠାଇପାର, ନହେଲେ ନାହିଁ । ଭାଇ ଆଜି ବିଡାଏ ସମାଜ ପଠାଇଛି । ହେମବାବୁ ଲେଖିଥିଲେ ମଡର୍ଣ୍ଣ ରିଭ୍ୟୁରେ ମୋର ଗୋଟିଏ ଲେଖା ବାହାରିଛି । ମୁଁ ବୋଧହୁଏ ଆଗାମୀ ସୋମବାର ୨୩ ତାରିଖରେ ପାଇବି ।

ଗତ ସୋମବାର ରାତିରେ ଆମର ଜଣେ ଭାରତୀୟ ଛାତ୍ର ଘରପୋଡ଼ିରେ ଜୀବନ ହରେଇଛି । କେତୋଟି ସେକେଣ୍ଡ ତିଷ୍ଠି ପାରିଥିଲେ ସେ ବଞ୍ଚିଥାନ୍ତା - ମାତ୍ର ସାହାଯ୍ୟ ଯାଉ ଯାଉ ସେ ଉପର ମହଲାରେ ଧୂଆଁରେ ରୁନ୍ଧିହୋଇ ମରିଗଲା । ତା'ର ଘର ତ୍ରିବାଙ୍କୁଡ଼ । ଏଇ କରୁଣ ମୃତ୍ୟୁରେ ଆମ୍ଭେମାନେ ଭୟଙ୍କର ଦୁଃଖିତ । ଏବେ ପ୍ରତିଦିନ ଶୋଇବାକୁ ଗଲାବେଳେ ମୋର ସେଇକଥା ମନେପଡୁଛି । ମୋର ଯଦିବା ମରଣକୁ ଭୟ ନାହିଁ - କାରଣ ଜୀବନ ପ୍ରତି ମମତା ନାହିଁ; ମୋର ଦୃଢ଼ ଧାରଣା ଯେ ତମର ଅନୁପସ୍ଥିତିରେ ମୁଁ କେବେ ମରିବିନି । ତେଣୁ ଭୟ ନାହିଁ ।

ଘୋର ମାନସିକ ଅନିଶ୍ଚିତତା ଭିତରେ ଗୋଟିଏ ଜର୍ମାନ୍ ତରୁଣୀର ବନ୍ଧୁତା ମତେ ଅନେକ ସମୟ ଖୁସୀ ରଖୁଛି ବର୍ତ୍ତମାନ । ତମର ଈର୍ଷା କରିବାର କିଛି ଆଶଙ୍କା ନାହିଁ ବୋଧହୁଏ । ଏଇ ଦୂର ପ୍ରବାସରେ, ଦାରିଦ୍ର୍ୟ, ମାନସିକ ଦୁଃଖ, ସଂଗହୀନତା ଭିତରେ କେହି ବାଳିକା ଯଦି ତା'ର ବନ୍ଧୁତା ଦିଏ, ତେବେ ତାହା ଗ୍ରହଣ ନ କରିବି କିପରି ? ଜର୍ମାନ୍ ବାଳିକାଟିର ଘର ଭିଏନା । ସେ ଏଠାକୁ ଇଂରେଜୀ ଶିଖିବାକୁ ଆସିଥିଲା । ସେ ଆସିବାର ମାସକ ପରେ ଅଷ୍ଟ୍ରିଆ ହିଟ୍‌ଲର୍‌ର ଅଧିକାରରେ ଆସିଲା । ବର୍ତ୍ତମାନ ତାକୁ ଦେଶକୁ ଫେରିଯିବାକୁ ଆଦେଶ ହେଇଛି । କିନ୍ତୁ ସେ ଯିବାକୁ ନାରାଜ । କାରଣ ନାଜି ଶାସନରେ ଆମୋଦମୟ ଭିଏନାର ରୂପ ପରିବର୍ତ୍ତନ ହେଇଛି - ତା'ର ଭାଗ୍ୟରେ କ'ଣ ଘଟିପାରେ ଏଇ ଭୟରେ ସେ ଯିବାକୁ ନାରାଜ । ସେ ସେଇ ଭୟରେ, ଏଠାରେ ଥିବା କୌଣସି ଜର୍ମାନ୍ ପୁରୁଷ ବା ସ୍ତ୍ରୀକୁ ଦେଖାଦିଏନି ।

ଦିନେ ତାକୁ ଘରୁକୁ ଡାକିଲି । ଭାରି ଚମତ୍କାର ବାଳିକାଟି । ମୋର ଦୁଃଖଜୀବନକୁ ସେ ଘଡିକ ଭିତରେ ଆଲୋକିତ କଲା । କଥା କହୁକହୁ କହିଲା I like you . ମୁଁ ପଚାରିଲି ତୁ କ'ଣ ମତେ ବିଭା ହୁଅନ୍ତୁ ? ସେ ହଁ କଲା । ମୁଁ ତା'ପରେ, ସେ ଭାରତୀୟକୁ ବିବାହ କଲେ କି କି ଦୁଃଖ ପାଇବ ତା ବର୍ଣ୍ଣନା କଲି - ସ୍ୱାମୀର ଜାତିଚ୍ୟୁତି, ପିଲାମାନଙ୍କର ଦୁର୍ଦ୍ଦଶା, ଦୂରଦେଶରେ ନିଃସଙ୍ଗ ଜୀବନ ଇତ୍ୟାଦି ଇତ୍ୟାଦି । ସେ କହିଲା - ନା ନା ତେବେ ମୁଁ ସେଠିକି ଯିବିନି ।..... ଏଇପରି ବଡ ସରଳା ତରୁଣୀଟିଏ । ଆଜି ପୁଣି ତାକୁ ଡାକିଛି ।.... ଦୂର ପ୍ରବାସର ଦୈନ୍ୟ ଦୁର୍ଦ୍ଦଶାମୟ ଜୀବନର ଘନ ଅନ୍ଧକାରରୁ କିଞ୍ଚିତ୍ ମୁକ୍ତି ପାଇଁ ମୁଁ ଯଦି କାହାକୁ ଚୁମ୍ବନଟିଏ ଦିଏ ବା କାହାଠୁ ଚୁମ୍ବନଟିଏ ପାଏ, ତେବେ ଲକ୍ଷ୍ମୀ, ତମେ କିଛି ଭାବିବନି । ତମର ପ୍ରେମ ମତେ ତ ବରାବର ତମ ପାଖକୁ ଟାଣିନେବ । ବିଦେଶରେ ଏ ଏକ ସମୟ ଅପନୋଦନ ଲାଗି କ୍ରୀଡା ମାତ୍ର ।

ଲାଲୁକୁ ତମେ ବିସ୍କିଟ୍ ଖୁଆଇଲ କାହିଁକି ? ମୁଁ ବଡ ବିରକ୍ତ ଶୁଣି । ଦୁର୍ଗା ଦାସଙ୍କ ପିଲାଙ୍କୁ ଦେଖିଛନା - ସବୁବେଳେ କେଁକେଁ ମେଁମେଁ, ଦେହ ଖରାପ - ବିସ୍କିଟ୍ ଖାଇବାର ଫଳ ସିଏ । ତମେ ଏସବୁ ଖରାପ ଅଭ୍ୟାସ ତା'ର କାହିଁକି କରଉଛ ? ଆମ ଦେଶରେ କିଏ କେବେ ବିସ୍କିଟ୍ ଖୁଆଇ ପିଲା ବଢ଼ଉଥିଲେ ? ସେଗୁଡା ନିତାନ୍ତ ସାରହୀନ, କଳତିଆରି ଖାଦ୍ୟ । କାହିଁକି ତାକୁ ଅଭ୍ୟାସ କରେଇଲ ? ରାତିରେ କାନ୍ଦିଲେ ତମର ସ୍ତନ୍ୟ ନାହିଁ - ଗାଈ ଦୁଧ ନାହିଁ ? ଅନ୍ୟ ଖାଦ୍ୟ ନାହିଁ ? ଅଥବା ଭୋଖ ହେବାରୁ କାନ୍ଦୁଛି କି ଅନ୍ୟ କେଉଁଥିରୁ କାନ୍ଦୁଛି ଜାଣିଛ ଭଲ କରି ?



## ବାଷଠି

## ତମର ପ୍ରେମ ମତେ ସିନ୍ଧି ମଣ୍ଡି ଏଠାରୁ ନେବ

୨୩.୧.୩୯
ସୋମବାର

ସ୍ନେହର ଲକ୍ଷ୍ମୀ,

ଆଜି ସୋମବାର, ତମର ପତ୍ର ପାଇଲିନି । ଆଜି ମନ ବଡ଼ ଦୁଃଖ । ଯଥେଷ୍ଟ କାନ୍ଦିଛି । ଆଜି ପ୍ରଫେସର୍‌ର ଆଦେଶରେ ମୋର ଲେଖାର ଅନେକାଂଶ ଆଉଥରେ ଅଲଗା ଭାବରେ ଲେଖିବାକୁ ପଡ଼ିବ ବୋଲି ଜାଣିଲି । କିମିତି ଭାବରେ ନୂଆ କରି ପୁଣି ଆରମ୍ଭ କରିବି ମୁଁ ଜାଣିପାରୁନି । ବହୁ ପରିଶ୍ରମ ପଣ୍ଡ ହେଲା । ମୁଁ ହୁଏତ ଏପ୍ରିଲ୍ ବା ମେ' ରେ ଯାଇପାରିବିନି । ବଡ ହତାଶ ହେଲି । ଘରୁକୁ ଯାଇ ବୁହେ କାନ୍ଦିଲି । ଫେରି, ପୁଣି ପଢ଼ା ପଢ଼ି କରି ମନୁକୁ ବୁଝେଇ ନୂତନ ଚେଷ୍ଟା କରୁଛି । ମନରେ ଭୟଙ୍କର ହତାଶା ଆସୁଛି ଯେ ହୁଏତ ମୁଁ ଡିଗ୍ରୀ ନ ପାଇପାରେ । ତମେ କାହାକୁ ଏ ବିଷୟରେ କୌଣସି ସୂଚନା ଦେବନି । ତମର ପ୍ରେମ ମତେ ସିନ୍ଧିମଣ୍ଡି କରି ଏଠାରୁ ନେବ ।

ବ୍ରିଟିଶ ମ୍ୟୁଜିଅମ୍‌ରୁ କୌଣସି ପତ୍ର ଏଯାଏଁ ପାଇନି । ଏପରି ଅର୍ଥାଭାବ, ସେଥିରେ ପୁଣି କଠୋର ପରିଶ୍ରମ - ମନ କିମିତି ଥିବ ତମେ ଅନୁମାନ କରିବ । ଆତ୍ମହତ୍ୟା କରିବାକୁ ଇଚ୍ଛା ହେଲାବେଳେ ଲାଲୁ ଓ ତମେ ମନେ ପଡୁଛ; ତେଣୁ ତାହା ଅସମ୍ଭବ ।

ଥାଅ ଲକ୍ଷ୍ମୀ । ଏବର ଏ ଚିଠି ସବୁ ବଡ଼ ବିଷଣ୍ଣ ବୋଧ ହେଉଥିବ । ମୁଁ କ'ଣ କରିବି କହ । ଆଜି ତମୁକୁ ବିବାହ କରି ନ ଥିଲେ ଓ ଲାଲୁ ଜନ୍ମ ନ ହୋଇଥିଲେ ମୁଁ ନିଶ୍ଚେ ମରିଥାନ୍ତି । ପ୍ରବାସରେ ଏତେ ଦୁଃଖ ଦୁର୍ଦ୍ଦଶା କାହିଁକି ? ଜୀବିକା ପାଇଁ ତ ? ସାମାନ୍ୟ ଜୀବନ ରକ୍ଷା ପାଇଁ ତ ? ଏ ଛାର ଜୀବନ ଗଲେ ! ....... ଓଃ ! ଜୀବନରେ ବି ଦୁଃଖ ବିଧାତା ମତେ ଦେଇଥିଲା !

ଆଉ ଧନ... ଯେତେବେଳେ ବିକଳ ଭାବରେ କାନ୍ଦୁଥିଲି 'ବାପା' 'ବାପା' ଡାକିବା ସଙ୍ଗେ ସଙ୍ଗେ 'ଧନ' 'ଧନ' ବି ଚିତ୍କାର କରୁଥିଲି.... ଓଃ କି ମର୍ମବେଦନା ସେ ! ତମେ ପୁଣ୍ୟମୟୀ, ତୁମକୁ ଦୁଃଖ ଦେଇଛି-ତା'ର ଫଳ ବୋଧହୁଏ ଇଏ.... ମତେ କ୍ଷମା କର....

ତମର ପ୍ରିୟ

●

## ତେଷଠି

# ମୁଁ ନିଶ୍ଚୟ ଶୁଭରେ ଫେରିବି

ନିଉକାସ୍‌ଲ୍
୨୬.୧.୩୯
ବୁଧବାର

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲି । ମୋର ଗତ ଚିଠିଟି ତମୁକୁ ବିବ୍ରତ କରିଥିବ । ଗତ ଦୁଇଦିନ ହେଲା ମୁଁ ବାରଂବାର ଅଶ୍ରୁପାତ କରିଛି । ମନ ଭୟଙ୍କର ଅବସାଦ ଓ ହତାଶାରେ ନଇଁ ଯିବାକୁ ଲାଗିଲା । ଆଜି କିନ୍ତୁ ଭଲ ମନେ ହେଉଛି । ମୋର ଦମ୍ଭ ଆସିଲାଣି ଯେ ମୁଁ ଅଳ୍ପଦିନ ଭିତରେ ପୁଣି ସବୁ ସଂପୂର୍ଣ୍ଣ କରିଦେବି । ତମେ ବ୍ୟସ୍ତ ହେବନି । ମୁଁ ନିଶ୍ଚୟ ଶୁଭରେ ଫେରିବି ଓ ଖୁବ୍ ନିକଟରେ । ମୁଁ ମୋ ଦେଶକୁ, ମୋର ପରିବାର ନିକଟକୁ ଫେରିଯିବାକୁ ବ୍ୟାକୁଳ । ମୁଁ ନିଶ୍ଚେ ଫେରିବି । ତମେ ପୁରସ୍କାର ବିତରଣ କରିଥିବାର ଶୁଣି ମୁଁ ଖୁସୀ ହେଲି । ଲଲାଟେନ୍ଦୁଟା ଏମିତି ଦୁଷ୍ଟ ହେଉଛି କାହିଁକି ? ମୁଁ କାନ୍ଦିଲାବେଳେ ତା'ର ନାମ ଉଚ୍ଚ କରି କେତେଥର କାନ୍ଦିଲି । ମନେ ହେଲା, ବାପା ମୋର ନାମ ଡାକି ଡାକି ମରିଥିଲେ, ମୁଁ କ'ଣ ଠିକ୍ ସେଇମିତି ମରିବି ? ନା ନା କଦାପି ନୁହେଁ- ମୁଁ , ଧନ, ତମ ନିକଟକୁ ଫେରିବି ନିଶ୍ଚୟ ।

ବର୍ତ୍ତମାନ ଏଠି ଭୟଙ୍କର ଶୀତ । କିଛିଦିନ ଗରମ ହୋଇ ଆସିଥିଲା । ଏ ସପ୍ତାହରେ ପୁଣି ଭୟଙ୍କର ଥଣ୍ଡା ଆରମ୍ଭ ହୋଇଛି ।

ବର୍ତ୍ତମାନ ମୋ'ଠି କେତୋଟି ଶିଲିଂ ମାତ୍ର ଅଛି । ବ୍ରିଟିଶ୍ ମ୍ୟୁଜିଅମ୍‌ରୁ କିଛି ଖବର ଆସିନି ।

ତମର ଦେହ ବୋଧହୁଏ ଭଲ ଅଛି । ମୁଁ ସେଥିରେ ଖୁସୀ । ଆଶା କରେ ଏଥର ଦେହ ଖରାପ ହେବନି । ସେ ଜର୍ମାନ୍ ବାଳିକାଟି କି, ଏହି ବିଷାଦମୟ ଜୀବନର କେତେ ଦଣ୍ଡ ସୁଖରେ କଟେଇବା ପାଇଁ ଥରେ ଥରେ ପାଖକୁ ଡାକୁଛି । ତା'ର ଛବିଟିଏ ତମ ପାଖକୁ ପଠେଇ ପାରେ ।.....ଜଣେ ଭାରତୀୟ ମୁସଲମାନ ଏଠିକି ଆସି ଏକ ଭାରତୀୟ ହୋଟେଲ୍ ଖୋଲୁଛି । ଆମ୍ଭେମାନେ ତାକୁ ସାହାଯ୍ୟ ଓ ଉତ୍ସାହ ଦେଉଛୁ ।

ଶୀଘ୍ର ଚିଠି ଦେବ ।

।ଇତି ।

ତମର ପ୍ରିୟ



**ଚଉଷଠି**

## ମୋର ମନ ଘରକୁ ଫେରିବା ଲାଗି ବ୍ୟଗ୍ର

ନିଉକାସ୍‌ଲ୍

୩.୨.୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ପାଇଲି । ନିଉକାସଲ୍‌ରେ ଅଗ୍ନିକାଣ୍ଡର କଥା ମୁଁ ଚିଠିରେ ଲେଖୁଛି, ପାଇଥିବ । ମୁଁ ବେଶ୍ ଅଛି । ଆଶା କରେ ମୋର କୌଣସି ବିପଦ ଘଟିବନି ।

ମୋର ପୂର୍ବ ପତ୍ରମାନଙ୍କରୁ ମୁଁ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଛି ବୋଲି ଭାବିଥିବ । ବର୍ତ୍ତମାନ ମୁଁ ବେଶ୍ ଧୀରସ୍ଥିର ହୋଇଗଲିଣି ଓ କାମ ପୁଣି ଆରମ୍ଭ କରି ଅନେକ ଦୂର୍ ଆଗେଇ ଗଲିଣି । ଆଶା କରୁଛି ଫେବୃୟାରୀରେ ଶେଷ କରିଦେବି । ତେଣୁ ଏପ୍ରିଲ୍ ବା ମେ'ରେ ଘରମୁହାଁ ହେବାର ଯେଉଁ ପୂର୍ବ ଆଶା, ତାହା ସଫଳ ହୋଇପାରେ ।

ଲାଲୁକୁ ଯେଉଁ ବିସ୍କିଟ୍ ଖୁଆଇଲ ତା' ଫଳରେ ସେ ବାଲି ଖାଉଛି । ସାବଧାନ ହୁଅ । ତମେ ପ୍ରାର୍ଥନା କର, ମୁଁ କିମିତି ଶୀଘ୍ର ଏଠୁ ଫେରେ ସଫଳକାମ ହେଇ । ମୋର ମନ ଘରକୁ ଫେରିବା ଲାଗି ଏତେ ବ୍ୟଗ୍ର ଯେ, ମୋର ଏଠା କାମରେ ଆଦୌ ସ୍ପୃହା ନାହିଁ । ମୁଁ କିନ୍ତୁ ବାଧ୍ୟହେଇ ସେସବୁ କରୁଛି ମାତ୍ର । ବର୍ତ୍ତମାନ ଏଠି ଭୟଙ୍କର ଥଣ୍ଡା- ଜାନୁୟାରୀର ବରଫି ଥଣ୍ଡାନୁ ଚଳିପଡ଼ିଛି । ଘରୁ ବାହାରିଲେଇ ଶୀତରେ ଦେହ ଥରି ପଡୁଛି ।

ମୁଁ କିଛି ବେଶୀ ଲେଖିପାରୁନି । ବ୍ରିଟିଶ୍ ମ୍ୟୁଜିଅମ୍‌ରୁ ବେଶୀ କିଛି ପାଇଲା ପରି

ଦିଶୁନି । ଥେସିସ୍ ଫି, ଯିବାଖର୍ଚ୍ଚ କୁ'ଠୁ ଆଣିବି ଚିନ୍ତା । କିନ୍ତୁ ବର୍ତ୍ତମାନ ଥେସିସ୍ ଚିନ୍ତା ଏତେ ବଳେଇଛି ଯେ ମୋର ଅନ୍ୟକଥା ଭାବିବାକୁ ମନେ ନାହିଁ ।

ମୋର ସ୍ନେହ ଗ୍ରହଣ କରିବ ।

ତମର
ପ୍ରିୟ

●

## ପଞ୍ଚଷଠି

## କାହିଁକି ଏତେ ବ୍ୟସ୍ତ ହେଉଛ ?

ନିଉକାସ୍‌ଲ୍
୬.୨.୩୯

ପ୍ରାଣର ଲକ୍ଷ୍ମୀ,

ତମର ଅଶ୍ରୁପ୍ଲାବିତ ଚିଠି ସହିତ, ଚକ୍ରଧର ମହାପାତ୍ରଙ୍କର ଚିଠି ପାଇଲି । ମୁଁ ଜାଣେନା ତମେ ହଠାତ୍ କାହିଁକି ଏତେ ବ୍ୟସ୍ତ ହେଉଛ । ମୁଁ ତ ଇ ଭିତରେ ତମ ମନରେ ଆଘାତ ଦେବାର କିଛି ଲେଖୁନି । ନା ମଝିରେ ମଝିରେ ଆପେ ଆପେ ଇମିତି ମୋ ଲାଗି କାନ୍ଦ ! ମୁଁ ତମଠୁ ତା' ଆଶା କରେନା । ମୁଁ ଏଠି କେତେବାର ଯେ ବ୍ୟାକୁଳ ହେଇ କାନ୍ଦିଛି ତମ ଲାଗି, ତା'ର ଖବର ଅଦୃଶ୍ୟ ଭାଗବାନ ଦେବେ । କିନ୍ତୁ ପରେ ପରେ ଭାବେ, ଛି ଅକାରଣ କାନ୍ଦୁଛି କାହିଁକି ? ଦୀର୍ଘ ୫ ବର୍ଷ କାଳ କାନ୍ଦି କାନ୍ଦି ପ୍ରେମ ଯାହା ପାଇଛି ତାହା ଫଳରେ ମୁଁ ଘରୁକୁ ଫେରିବାକୁ ଭୟ କରୁଛି - ପୁଣି କିଆଁ ସେ ନାଟ୍ୟାଭିନୟ ! ସେଥିରେ ଜଳାଂଜଳି ଦେଇ ଅନ୍ୟଆଡ଼େ ମନ ଫେରେଇବା ଉଚିତ । ମୁଁ ଜାଣେ ଦୀର୍ଘ ବିରହରେ ତମେ ଥରେ ଥରେ ମୋ ଲାଗି ବ୍ୟଥିତ ହେଉଥିବ । କିନ୍ତୁ ଫେରିଲେ, ଯଥାପୂର୍ବ ହେବାର ଆଶଙ୍କା ମୋର ଯଥେଷ୍ଟ । କିନ୍ତୁ ମୋର ଏତେ ଦୁଃଖ ଦୈନ୍ୟ ଓ କଠୋର ଜୀବନ ସଂଗ୍ରାମ ପରେ ତମେ ଯଦି ମତେ ଟିକିଏ ଶାନ୍ତି ନ ଦେବ, ତେବେ ମୁଁ କ' ଣ କରିବି ମୁଁ ତ ତାହା କହି ଦେଇଛି ବାରଂବାର । କିନ୍ତୁ ତମେ ଯଦି ସୁଶୀଳା ଓ ସ୍ନେହଶୀଳା ହେବ, ମୁଁ ତମକୁ କାହିଁକି ପୂର୍ବର ସ୍ନେହ ନ ଦେବି ? ଏ ଦେଶରେ ମୁଁ ସୁନ୍ଦରୀ ଶ୍ୱେତାଙ୍ଗିନୀକି ଶଯ୍ୟାସଂଗିନୀ ଓ ଜୀବନସଂଗିନୀ କରିବାର ସୁଯୋଗ ପାଇଛି । କିନ୍ତୁ ଏ ପର୍ଯ୍ୟନ୍ତ ମୋର ପାଦ ସ୍ଥିର ଅଛି- ମନ ଥରେ ଥରେ ଘୂରିଲେ ମଧ୍ୟ ପୁଣି ତା' ର ସ୍ୱାଭାବିକ ଦିଗକୁ ଫେରି ଆସୁଛି । ମୁଁ ଏସବୁକୁ ଏକ ନୂତନ ଜୀବନର ଶୁଭ ସୂଚନା ବୋଲି ମନେ କରେ । କାରଣ ମୁଁ ପୂର୍ବେ ଏପରି ନ ଥିଲି । ହୁଏତ ତମର ସ୍ନେହର ପ୍ରଭାବ ଏଥିରେ ଥାଇପାରେ - ମୁଁ ନାହିଁ କରୁନି । କିନ୍ତୁ କେବଳ ମୋର ଦୈହିକ ସାଧୁତା ହିଁ କ'ଣ ତମ ପ୍ରେମର ଏକମାତ୍ର ଲକ୍ଷ୍ୟ ? ମୋର ସୁଖ, ମୋ ଜୀବନର ଶାନ୍ତି, ମୋ ମନର ପ୍ରସନ୍ନତା - ଏ ସବୁ କ'ଣ ତମ ପ୍ରେମର ଆରାଧ୍ୟ ନୁହେଁ ! ଘରୁକୁ ଗଲେ, ଏସବୁ ମତେ ଦେବନା ? ଏସବୁ ପାଇଁ ପ୍ରସ୍ତୁତ ହେଉଛ ନା ? ଏସବୁ ଲାଗି ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ଅଛ ନା ? ତେବେ ତମେ ମୋର ସ୍ନେହ ଭିକ୍ଷା କରିବା ଦରକାର

ନାହିଁ । ତମେ ମୋର ସ୍ନେହକୁ ମାଗିବା ପରିବର୍ତ୍ତରେ, ମୋର ଆରାଧ୍ୟ ବଳେ ବଳେ ପାଇବ । ପ୍ରେମରେ ଭିକ୍ଷା ନାହିଁ - ପ୍ରେମ ସବୁଠାରୁ ଶକ୍ତିଶାଳୀ । ଆଶାକରେ ତମେ ସେହି ଶକ୍ତିରେ ବିଶ୍ୱାସ ରଖିବାକୁ ଶିଖିଲଣି । ନଚେତ୍ କଳିକଜିଆ, ଅଭିମାନ, ରୁଷା, ଅଶ୍ରୁରେ ତମେ ମତେ ଜିଣିବା ବୃଥା ଚେଷ୍ଟା । ଏଥିରେ ଫଳ ଉଭୟ ପକ୍ଷରେ ଭୟାବହ ହେବ ।

ବର୍ତ୍ତମାନ ଏଠି ଥଣ୍ଡା କମିଛି । ଆଜି ଓ ଗତକାଲି ପାଗ ବେଶ୍ ଉଷ୍ମ ହୋଇଉଠିଛି । ଦେଶରେ ମଧୁର ବସନ୍ତ ଉପସ୍ଥିତ ହେବ । ରବିକରୋଜ୍ଜ୍ୱଳ ଦେଶକୁ ଫେରିଯିବାକୁ ମୁଁ କ୍ରମେ କ୍ରମେ ଭୟଙ୍କର ଉତ୍କଣ୍ଠିତ । ମୋର ଥେସିସ୍ କ୍ରମେ ଲେଖା ଆରମ୍ଭ କରିଦେଇଛି । ଆଶା କରେ ଏଇ ମାସରେ ଶେଷ ହେଇଯିବ । ମୋର ଜଣେ ଦି' ଜଣ ଇଂରେଜ ପୁରୁଷ ଓ ସ୍ତ୍ରୀ ବନ୍ଧୁ ମୋର ଦାରିଦ୍ର୍ୟ ଜାଣିପାରି, ଲେଖା ମାଗଣା ଟାଇପ୍ କରିଦେବାକୁ ଜଣେଇଛନ୍ତି । ଅନ୍ତତଃ ୫ ପାଉଣ୍ଡ ଖଣ୍ଡେ ରକ୍ଷା ହେବ ସେଥିରେ । ମୁଁ ଜାଣେନା ମୁଁ କ'ଣ କରିବି । ଲେଖା ଶେଷ ହେଉ ଆଗ ।

ଲାଲୁର ଦେହ କାହିଁକି ଖରାପ ହେଉଛି ? ତାକୁ ବିସ୍କିଟ୍ ଖୁଆଇଲ କାହିଁକି ? ସେଇଥିପାଇଁ ତା' ର ଝାଡ଼ା ସଫା ହେଉନି ଓ ସେଇଥିରୁ ରୋଗ ସବୁ ବାହାରୁଛି । ବିସ୍କିଟ୍ ଖିଆ ବନ୍ଦ କରାଅ ।

ଓଃ କେବେ ଦେଶକୁ ଫେରିବି ! ଓଡ଼ିଶାର କଳା ସଂବନ୍ଧୀୟ ସ୍ଲାଇଡ୍ ସବୁ ତିଆର୍ ହେଇଗଲାଣି । ଏଇ ମାସ ଶେଷ ଆଡ଼କୁ ମୁଁ ବକ୍ତୃତା ଦେବି । ଏ ମାସରେ ମତେ ଆଉରି ଦୁଇଟା ବକ୍ତୃତା ଦେବାକୁ ହେବ ।

ଇତି ତମର
ପ୍ରାଣର ପ୍ରାଣର ପ୍ରାଣର
ପ୍ରିୟ ଓ ପ୍ରିୟ ଓ ପ୍ରିୟ

●

## ଛଅଷଠି

## ଭଗବାନ ଏକ ଦିବ୍ୟଜ୍ଞାନ ଦେଇଛନ୍ତି

ନିଉକାସଲ୍
୧୪-୦୨-୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଓ ଧୂପ ସମ୍ବନ୍ଧୀୟ ଖବରକାଗଜ ଟିପ୍ପଣୀଟି ପାଇଲି । ଧୂପ ସମ୍ବନ୍ଧରେ ଆଉ କ'ଣ ପରେ ଘଟିଛି ବା ଘଟିବାର ଯୋଗାଡ ହେଉଛି, ଯଦି ଜାଣ ଲେଖିବ ।

ବ୍ରିଟିଶ୍ ମ୍ୟୁଜିଅମ୍‌ରୁ ପୋଥିଟି ପାଇଁ ୩୫ ପାଉଣ୍ଡ ମିଳିବ ବୋଲି ଆଜି ପତ୍ର ପାଇଲି । ୩୫ ପାଉଣ୍ଡ ତ ୫୦୦ ଟଙ୍କା - ମୁଁ ଅଧିକା ପାଇବି ବୋଲି ଆଶା କରିଥିଲି - କିନ୍ତୁ ମୋର ଏ ଅର୍ଥାଭାବ ବେଳେ ଯାହା ମିଳିଲା ତାହା ହିଁ ଭାଗ୍ୟର କଥା ବୋଲି ଭାବି ରାଜି ହେଉଛି । ଏ ଟଙ୍କାଟା ମତେ ବଡ ହିମତ୍ ଓ ଆଶା ଦେଉଛି - ଯିବାଆସିବା ବେଳକୁ ମନଟାକୁ

ବେଶ୍ ପ୍ରଫୁଲ୍ଲ ରଖେଇବାରେ ସାହାଯ୍ୟ କଲା । ମୁଁ ତ ଭାବୁଛି ମୁଁ ଏପ୍ରିଲ୍ ବା ମେ' ରେ ନିଶ୍ଚେ ଯିବି ଏଠୁ । ମୁଁ ଇତି ମଧ୍ୟରେ ପୁଣି ଥରେ ସ୍ପିରିଚ୍ୟୁଆଲିଷ୍ଟ ମିଟିଂକି ଯାଇଥିଲି । ମୋର ପଥ-ପ୍ରଦର୍ଶକ ଜଣେ ଆତ୍ମା ଏହି ଖବର ପଠେଇଲେ ଯେ, ଅବସାଦଗ୍ରସ୍ତ ହୁଅନା - ସାହସ ଓ ଆଶା ଦିଆଯିବ । ଘରେ ତମର ଲୋକେ ତମୁକୁ ଅନେଇଛନ୍ତି - ତମେ ଯେବେ ଯିବାକୁ ଆଶା କରିଥିଲ ତା'ଠୁ ଶୀଘ୍ର ଫେରିବ । ଦେଖାଯାଉ କ'ଣ ହେଉଛି ।

ରୋଜାର ଫଟୋଟି ତମ ପାଖକୁ ପଠେଇଥାନ୍ତି - କିନ୍ତୁ ଲଫାପାରେ ସେ ଫଟୋ ଧରିବନି । ତମର ଫଟୋଟିକି ସେ ଯେତେବେଳେ ଦେଖୁଛି ସେ କହି ଉଠୁଛି - She is so nice. She is so lovely. ସେ ଭାରତବର୍ଷକୁ ଯିବ ବୋଲି କହୁଛି । ମୁଁ ତାକୁ କହୁଛି ଭାରତବର୍ଷର ଦରିଦ୍ର ଜନସାଧାରଣର ସେବା କରିବାକୁ । ତା'ର ଟଙ୍କା ଅଛି ଓ ସେ ମଗୁଛି । ସେ ଏଠାକୁ ଇଂରେଜୀ ଶିଖିବାକୁ ଆସିଥିଲା । ଇଂରେଜୀ ବେଶ୍ କହୁଛି, କିନ୍ତୁ ଲେଖୁଛି ବଡ କଦର୍ଯ୍ୟ । ମୁଁ ତାକୁ କହିଲିଣି, ତୁ ଭାରତବର୍ଷକୁ ଯଦି ଯିବୁ ଭଲ କରି ଇଂରେଜୀ ଲେଖି ଶିଖ୍ ଓ ହିନ୍ଦୁସ୍ତାନୀ ଶିଖ୍ । ସେ ଶିଖିବ ବୋଲି କହୁଛି ।

ମୋର ଲେକ୍‌ଚର୍‌ର ଦୁଇଟି ନୋଟିସ୍ ପଠେଇଲି, ଗୋଟେ ରାମକୁ ଦେଇଦେବ । ଆଉରି ଅନ୍ୟ ଲେକ୍‌ଚର୍‌ର ନୋଟିସ୍ ଥିଲା - କିନ୍ତୁ ସେଥିରେ ଓଡିଶା ବିଷୟ ନାହିଁ । ମୁଁ ଖୁସୀ ଯେ ଓଡିଶାର ଶିଳ୍ପ ସମ୍ବନ୍ଧରେ ମୁଁ ଏଠାର ଲୋକଙ୍କୁ କିଛି କହିପାରିବି । ଏହି ଲେକ୍‌ଚର୍ ମୁଁ ଅନ୍ୟ ସ୍ଥାନ ମାନଙ୍କରେ ଯେପରି ଦେଇପାରିବି ତା'ର ଯୋଗାଡ କରୁଛି । ଦେଖାଯାଉ କ'ଣ ହେଉଛି ।

ଲଲାଟେନ୍ଦୁଟି ଆମର ବଡ ସଉକିନିଆ ହେବା ପରି ଜଣାପଡୁଛି । ମୁଁ ଏଫ୍.ଏ ପାସ୍ ନ କଲାଯାଏଁ ଜୋତା ମାଡି ନଥିଲି- ଚିରାକାମିଜ୍ ବି ମତେ ମିଳୁ ନଥିଲା । ସେ'ତ କ'ଣ ଚଟି, ସିଲ୍କ ପଞ୍ଜାବୀ ନହେଲେ ଆଜିଠୁ ଚଳୁନି । ତମେ କ'ଣ ତାକୁ ସିଲ୍କ ପିନ୍ଧେଇ ମଣିଷ କରିବ ନା କ'ଣ ? କିନ୍ତୁ କାଲି ରାତିରେ ଭାବିଭାବି ମୁଁ ଶୋଇଲି - ଲାଲୁ ଆମର ଏକମାତ୍ର ସନ୍ତାନ ହେବ । ଜୀବନ ଏତେ ଦୁଃଖମୟ ଯେ ଅକାରଣ ଗୋଟିଏ ଗୋଟିଏ ଜୀବନକୁ ଏ ଜଗତକୁ ଆଣି କି ପୌରୁଷ ? ତା'ପରେ ସନ୍ତାନ ଜଂଜାଳରେ ପଡିଲେ, ମୁଁ ବା ତମେ କିଛି କରିପାରିବାନି । ଭଗବାନ୍ ଏକ ଦିବ୍ୟ ଦାନ ଦେଇଛନ୍ତି - ତା'ରି ଉପରେ ନିର୍ଭର କରି ରହିଲେ, ସେଇ ହିଁ ଆମର ଜୀବନକୁ ସୁଖମୟ କରିବ । ଆମର କ୍ଷଣିକ ସୁଖ ଲାଗି, ନୂଆ ଜୀବନ ଓ ନୂଆ ଜଂଜାଳ ଆଣିବା ଘୋର ମୂର୍ଖତା । ଆମେ ନିଶ୍ଚୟ ଜନ୍ମନିରୋଧ ପ୍ରୟୋଗ କରିବା ।

ମୁଁ ଖୁବ୍ ସମ୍ଭବତଃ କଲମ୍ବୋବାଟେ ପୁଣି ଫେରିବି । ଦେଖାଯାଉ କ'ଣ ହେଉଛି । ପତ୍ର ଦେବ ।



ଇତି, ତମର ପ୍ରିୟ



## ସତଷଠି

# ଓଡିଶା ସରକାରଙ୍କଠୁଁ ତମେ ଚିଠି ପାଇବ

ନିଉକାସଲ୍
୨୦-୦୨-୩୯

ସ୍ନେହର ଲକ୍ଷ୍ମୀ,

ମୋର ଫେରିବା ସମୟ ନିକଟ ହୋଇ ଆସିଲା । ତେଣୁ ଯାତ୍ରାର ଯୋଗାଡ ଆଜିଠୁ କରିବାକୁ ହେବ । ଟଙ୍କା ତ ଅନ୍ୟ କୌଣସି ଆଡୁ ପାଇବାର ଆଶା ନାହିଁ - ତେଣୁ ମୁଁ ହାଇକମିଶନର୍ ଫର୍ ଇଣ୍ଡିଆ ଅଫିସ୍‌କୁ ଲେଖିଥିଲି । ସେମାନେ କହନ୍ତି ଯେ, ସେମାନେ ଓଡିଶା ସରକାରଙ୍କୁ ଲେଖିବେ ଯେ, ମୋର ଯିବାର ଖର୍ଚ୍ଚା, ଯାହା ସେମାନେ ଦେବାକୁ ପ୍ରସ୍ତୁତ ଅଛନ୍ତି, ତାହା ଯେପରି ସେମାନେ କାହାଠୁ ଫେରିପାଇବାର ଗାରାଣ୍ଟି ପାଆନ୍ତି । ମୁଁ ଭାଇ ସଂଗେ ବୁଝି ଆଜି ମୋ ନିଜ ନାଁ ବାପାଙ୍କ ନାଁ ଲେଖିପଠାଇଲି । ହାଇକମିଶନର୍‌ଙ୍କ ପାଖରୁ ଆସିଥିବା ଚିଠିଟି ଏଥି ସଙ୍ଗେ ପଠେଇଲି । ବାପାଙ୍କୁ ଦେବ । ଟଙ୍କା ତ ପରେ ଶୁଝାଯିବ - ମୁଁଇ ତ ଶୁଝିବି । ବର୍ତ୍ତମାନ ଯଦି ଦରକାର ପଡେ ବାପାଙ୍କୁ ଗାରାଣ୍ଟି ହେବାକୁ ପଡିବ । ଏ ଚିଠି ପାଇବାର କେତେଦିନ ପରେ ହୁଏତ ଓଡିଶା ସରକାରଙ୍କଠୁ ତମେ ଚିଠି ପାଇବ । ବୁଝି ବିଚାରି କାର୍ଯ୍ୟ କରିବ ।

ଇତି,
ତମର ପ୍ରିୟ

●

## ଅଠଷଠି

# ମୋର ଆଦର୍ଶ ଏତେ ନୀଚ ନୁହେଁ

ନିଉକାସଲ୍
୨୨-୦୨-୩୯

ସ୍ନେହର ଲକ୍ଷ୍ମୀ,

ତୋର ତିରସ୍କାର ଓ ଅଭିମାନମୟ ପତ୍ର ପାଇଲି । ମୁଁ ପରା ଏସବୁ ନାପସନ୍ଦ କରିଛି - କେତେଥର କହିବି ତତେ, ପାଗ୍‌ଲି, ମୋର ଭୁଲ୍ ଭ୍ରାନ୍ତିକି ଧରିବସି କିଛି ଲାଭ ନାହିଁ ତୋର -ତୁ ତୋ କାମ କର । ମୁଁ ଭାବୁନି ମୁଁ ତୋ ପ୍ରତି ଜାଣି ଜାଣି ନିଷ୍ଠୁର ବା ଅନ୍ୟାୟବାନ୍ ହୋଇଛି । ମୁଁ ଯେ ଏ ଦେଶଛାଡି ଶୀଘ୍ର କିମିତି ମୋର ଦେଶକୁ ଫେରିବି ତାହା ମୋତେ ପାଗ୍‌ଲ କରି ଦେଉଛି, ତୋର ଯଦି ବୁଦ୍ଧି ଥିବ ତେବେ ବୁଝିବୁ, ମୋର

ପାଦର ଗତି କୁଆଡେ । ଅକାରଣ ଛୋଟଛୋଟ କଥାରେ କଳି କରୁଛୁ କାହିଁକି ? ତେବେ ଏତିକି ମନେରଖିବୁ, ମୁଁ ବୋଧହୁଏ ତତେ ବିଶେଷ ଭାବରେ ପରିବର୍ତ୍ତିତ ଜଣାପଡିବି । ଦୁଇବର୍ଷ ପ୍ରବାସ ମୋର ବ୍ୟକ୍ତିତ୍ୱ ଉପରେ ଯଦି କାର୍ଯ୍ୟ ନ କରିଥାନ୍ତା, ତେବେ ମୋର ଏଠାକୁ ଆସିବା ବୃଥା ବୋଲି ମନେ କରନ୍ତି । ମୁଁ ଖୁସୀ ଯେ ମୋର ମନରେ ଅନେକ କିଛି ପରିବର୍ତ୍ତନ ହୋଇଛି । ଏକ ପ୍ରଧାନ ପରିବର୍ତ୍ତନ ଏହି ଯେ, ନାରୀ-ପୁତ୍ର-ଧନ-ଧାନ୍ୟ-ମାନ-ସମ୍ମାନ ପ୍ରତି ମମତା ମୋର ଏକାବେଳେକେ ବା ଅନେକ ପରିମାଣରେ ଲୁପ୍ତ ହେଲାଣି ପ୍ରାୟ । ମୁଁ ବର୍ତ୍ତମାନ ଜୀବନ ଆଗରେ କେତୋଟି ଆଶା ଥୋଇଛି - ସେହି ମୋର ପୁତ୍ର, ସେହି ମୋର ପତ୍ନୀ । ମୁଁ ସେହି ଆଡକୁ ଯିବାକୁ ମୋର ପ୍ରାଣପୂର୍ଣ୍ଣ ଚେଷ୍ଟା କରିବି । ତମେ ମୋର ସହଧର୍ମିଣୀ ଭାବରେ, ତମର ସ୍ତରକୁ ମତେ ନଟାଣି, ମୋର ସ୍ତରକୁ ତମୁକୁ ଉଠେଇବାକୁ ଚେଷ୍ଟା କରିବ ବୋଲି ଆଶା କରେ । ତମ ପାଇଁ ମଧ୍ୟ ଆଦର୍ଶ ଠିକ୍ ସେହିପରି । ସ୍ୱାମୀ-ପୁତ୍ର-ଟଙ୍କା-ପଇସା-ମାନ-ମହତ୍ତ୍ୱର ଜୀବନକୁ ତମ ନିକଟରେ ତୁଚ୍ଛ ପ୍ରତିପନ୍ନ କରିବାକୁ ମୁଁ ଚେଷ୍ଟା କରିବି । ମୋର ଆଦର୍ଶ ଏତେ ନୀଚ ନୁହେଁ, ମୁଁ ତମ ଆଗରେ ଦେବତା ବୋଲି ପରିଚିତ ହେବାକୁ ଚେଷ୍ଟା କରିବି । ମୁଁ ଚାହେଁ ଦୁହେଁ ଉଚ୍ଚ ଆଦର୍ଶ ଠିକ୍ କରିନେବା ଓ ସେହିଆଡକୁ ଯିବାରେ ପରସ୍ପରକୁ ସାହାଯ୍ୟ କରିବା । ତା ନକରି ଖାଲି ସବୁବେଳେ ଏକଥା ସେକଥା ନେଇ କଳି, ଅଭିମାନ, ଅଶ୍ରୁପାତ କଲେ, ତମର କି ଲାଭ, ମୋର ବା କି ଶ୍ରେୟ ତମେ ବୁଝିପାର । ମୋ ଆଦର୍ଶ ଠିକ୍ କରି ନେଇଛି - ସେଥିପାଇଁ ମୁଁ ସମ୍ପୂର୍ଣ୍ଣ ସ୍ୱାଧୀନତା ଚାହେଁ । ତମେ ତମର ଆଦର୍ଶ ଠିକ୍ କର- ମୁଁ କୌଣସି ବାଧା ଦେବିନି । ଖାଲି ସ୍ୱାମୀ ବୋଲି ଗୋଟେ ପୁରୁଷ ପଛରେ ଗୋଡାଇବା ଓ ତାକୁ ବଳେ କୌଶଳେ ବାନ୍ଧିରଖିବାକୁ ଚେଷ୍ଟା କରିବା ନୀଚ ଆଦର୍ଶ ଯେପରି, ନାରୀର ପ୍ରତି ଅପମାନ ସେହିପରି । ତମେ ରାଜକନ୍ୟା ବା ବିଦୁଷୀ ହେଲେ ମଧ୍ୟ ମୁଁ ଯଦି ଯୋଗ୍ୟ ନୁହେଁ, ତମର ସ୍ୱାମୀ ବୋଲି କେବଳ ମୋର କ'ଣ ସମ୍ମାନ ବଢ଼ିଯିବ ? ଏକଥାଟା ତମ ପକ୍ଷରେ ବି ଖାଟିବ । ମୁଁ ପାଷଣ୍ଡ ବା ପଣ୍ଡିତ ହୁଏ ସେଥିରେ ତମର ଯାଏ ଆସେ କ'ଣ ? ତମେ ଯଦି ପ୍ରକୃତରେ ନିଜକୁ ଯୋଗ୍ୟ କର, ତେବେ ଉପଯୁକ୍ତ ସମ୍ମାନ ପାଇବ ଏବଂ ଯା'କୁ ଭଲପାଉଛ, ତା'ର ବି ସୁପଥ ଗଢ଼ିପାରିବ । ତମେ ମତେ ଆଦୌ ଭାବନା - ମୁଁ କ'ଣ କରୁଛି ନକରୁଛି, ସେ କଥାକୁ ଆଦୌ ଦୃଷ୍ଟି ଦିଅନା - ମୁଁ ଯଦି ଭ୍ରାନ୍ତ ତେବେ ତମ ପାଖକୁ ଦିନେ ବଳେ ଯିବି - ମୁଁ ଯଦି ଠିକ୍ ବାଟରେ ଚାଲୁଛି, ତେବେ ଅକାରଣ ବାଧାରୁ ରକ୍ଷା ପାଇବି । ହେଲା ? ମୋ ଧନଟି ମୋର, ପାଗ୍‌ଲିଟି ମୋର, ପ୍ରାଣର ଲୟଟି ମୋର, ସବୁ ବୁଝି ପୁଣି କାହିଁକି କାନ୍ଦୁ, ଅଭିମାନ କରୁ କହିଲୁ । ମୁଁ ଜାଣେ ମୁଁ ତୋର ସବୁ - ତେବେ 'ତୋର-ସବୁ'ର ତ ଗୋଟେ ସ୍ୱତନ୍ତ୍ର ଆତ୍ମା, ମନ, ବୁଦ୍ଧି ଅଛି ? ସେତକ ଚାଳନ କରିବାକୁ ତାକୁ ଛାଡିଦେ - ତୁ ଅଦୂରରେ ଠିଆ ହେଇ ଦେଖ୍ ସେ କ'ଣ କରୁଛି । ଜଗତରେ ଯଦି ତୁ'ଇ ତା'ର ଏକମାତ୍ର ବନ୍ଧୁ ତେବେ ସେ'ତ ବଳେ ଫେରି ତୋ ପାଖକୁ ଆସିବ । ସେ ଯଦି ତୋ ପାଖକୁ ଆସିବାକୁ ନାରାଜ ହୁଏ, ତେବେ ନିଜକୁ ପଚାର ।

ହାଇକମିଶନର୍‌ର ଚିଠି ପାଇଥିବ । ଓଡିଶା ସରକାରଙ୍କ ସଙ୍ଗେ ଚିଠି ଲେଖିଲାବେଳେ ବାପାଙ୍କୁ କହିବ ଟଙ୍କାଟା ଯେପରି କିସ୍ତି କିସ୍ତି କରି ଶୁଝା ହେବ, ସେ କଥାଟା ବନ୍ଦୋବସ୍ତ କରି ଦେଇଥିବେ । ବର୍ତ୍ତମାନ ଏଠି ଭାରି ଶୀତ । ଇଂଲଣ୍ଡର ରାଜା ଓ ରାଣୀ ନିଉକାସଲ୍‌କୁ ଆସିଥିଲେ । ରାଣୀ ଭାରି ସୁନ୍ଦରୀ - ରାଜା ମଧ୍ୟ । ଆମେ ସମସ୍ତେ ଦେଖିବାର ସୁବିଧା ପାଇଥିଲୁ । ମୋର ଚିଠି ତମେ ଅନିୟମିତ ଭାବରେ ପାଉଛ କାରଣ, ବ୍ୟୋମଡାକ ବର୍ତ୍ତମାନ ବଡ଼ ଗୋଳମାଳିଆ ଭାବରେ ଯିବା ଆସିବା କରୁଛି । ମୋର ଦୋଷ ଆଦୌ ନାହିଁ - କାରଣ ମୁଁ ପ୍ରତି ସପ୍ତାହରେ ଚିଠି ଦେଉଛି । ତେବେ ମୋର ତ ଯିବାବେଳ ଆସି ହେଲା । ମୋର ଚିଠି ଯଦି ଛୋଟ ହୁଏ, ତେବେ ପାଗ୍‌ଲି କ୍ଷମା କରିବ ମତେ । କାରଣ ଚିଠି ପରିବର୍ତ୍ତରେ ସେ ଯେ ମତେ ଶୀଘ୍ର ପାଇବ ।

ଇତି,
ପାଗ୍‌ଲିର ପ୍ରିୟ

ଲଲାଟେନ୍ଦୁ ଓ ତମର ଫଟୋ ଯଦି ଅଛି ଶୀଘ୍ର ପଠାଅ ।



**ଅଣସ୍ତରି**

## ଭବିଷ୍ୟତର ମଧୁର ସମ୍ଭାବନାରେ

ନିଉକାସଲ୍
୦୬-୦୩-୩୯

ସ୍ନେହର ଲକ୍ଷ୍ମୀ,

ଗତ ସପ୍ତାହରେ ଚିଠି ଦେଲନି କାହିଁକି ? ମୁଁ ବି ଦେଲିନି - କାରଣ ଲେଖିବାକୁ କିଛି ନଥିଲା ଓ ବଡ ବିରକ୍ତ ହେଲି ଯେ ତମେ ଯେସାକୁ ତେସା ନୀତି ଛାଡୁନା । ତମେ ସେ ଧରଣ ନ ଛାଡିଲେ, ଆମର ଭବିଷ୍ୟତ ବିଶେଷ ଆଶାଜନକ ନୁହେଁ ଜାଣିବ । ମୁଁ ମୋର ପ୍ରତିପତ୍ତି ବଢ଼ିଯିବାରୁ ତମପ୍ରତି କରଛଡା ଭାବ ଦେଖଉଛି ବୋଲି ଲେଖିଛ । ମୁଁ ଜାଣେନା ମୋର କେଉଁଠି କି ପ୍ରତିପତ୍ତି ବଢ଼ିଛି । କିନ୍ତୁ ପ୍ରତିଦିନ ସକାଳୁ ଉଠିଲେ ଆଳୁ ଛଡେଇବା, ଗୋଟାକବେଳେ ପରିବା କାଟିବା, ଚାଉଳ ସିଝେଇବା ଇତ୍ୟାଦି କଲାବେଳେ ମୋର ନିଜର କ୍ଷୁଦ୍ରତା ଓ ହୀନତା ମୁଁ ସ୍ମରିସ୍ମରି ବିବ୍ରତ ହେଉଛି ନିତ୍ୟ । ମୁଁ ତମପ୍ରତି କରଛଡା ଭାବ ଦେଖଉଥିଲେ ତା'ର କାରଣ ଏହା ନୁହେଁ ଯେ ମୁଁ ନିଜକୁ ବଡ ମନେ କରୁଛି, କାରଣ ଏହି ଯେ, ମୋର ଏ ଦୁଃଖ ଦୈନ୍ୟରେ ତମର ସକଳ ସ୍ୱାର୍ଥହୀନ ସହାନୁଭୂତି ଦରକାର ହେଲାବେଳେ, ତମେ ହିସାବଖାତା ବାହାର କରୁଛ ।

ଥାଉ । ସେ ସବୁ ମତେ ଭଲ ଲାଗୁନି । ମୁଁ ବର୍ତ୍ତମାନ ଦେଶକୁ ଫେରିଯିବାକୁ ଉନ୍ମନ । ମୁଁ କିମିତି ଫେରିବି, ତମୁକୁ ଦେଖିବି, ଲାଲୁକୁ ଧରି ତା'ସାଥିରେ କଥାଭାଷା

ହେବି, ଏହା ହିଁ ସ୍ୱପ୍ନ ଦେଖୁଛି । ତେଣୁ ଆଉ ମତେ ଅନ୍ୟ କଥା କିଛି କହନା । ସବୁ ଦ୍ୱନ୍ଦ୍ୱର ସମାଧାନ ହେବ, ଦେଖାହେଲେ । କଳି କେବଳ ଚିଠି ପତ୍ରରେ । 'ଭଗୀରଥ ହେଇ ମିଳାଇବ ଲାଲୁ, ସୁରଧୂନୀ ରତ୍ନାକର' । ତେଣୁ ସବୁ ପାଶୋରି ଦିଅ - ସବୁ ଭୁଲି ଯାଅ, ଭବିଷ୍ୟତର ମଧୁର ସମ୍ଭାବନାରେ । ତମର ପ୍ରେମ ଯଦି ଆମର ଅତୀତକୁ ପୋଛି ନପାରେ, ତେବେ ତମେ ମତେ କିଛି ଦେଇଛ ବୋଲି ମୁଁ ଭାବିବାର କୌଣସି କାରଣ ନାହିଁ । ପ୍ରେମ ଦେଇ ମୋର ଜୀବନକୁ ସରସ କଲେ, ମୁଁ ଆମ ମନ୍ତ୍ରୀମାନଙ୍କଠୁ ନିଶ୍ଚେ ଭଲ ମନିଷ ହେବି ଏବଂ ସେ ଗୌରବ ତମର ହେବ । ଅକାରଣ କାହିଁକି ଗତ କଥା ଘାଣ୍ଟୁଛ । ମଧୁର ଭବିଷ୍ୟତକୁ କିପରି ମଧୁର ଅଭିବାଦନ, ସମ୍ବର୍ଦ୍ଧନା ଓ ଚର୍ଚ୍ଚା ଦିଆଯିବ ତା'ର ତାଲିକା ପ୍ରସ୍ତୁତ କର । ମୁଁ ଖୁବ୍ ସମ୍ଭବତଃ ବମ୍ବେ ବାଟେ ଯିବି । ପ୍ରାୟ ଏକା ଖର୍ଚ୍ଚ ପଡିବ । ମୋର ଥେସିସ୍ ଅଧା ଟାଇପ୍ ହୋଇଗଲାଣି । ଖୁବ୍ ସମ୍ଭବତଃ ଆଗାମୀ ସପ୍ତାହରେ ପରୀକ୍ଷା ପାଇଁ ସମର୍ପଣ କରିବି । କିମିତି ଡିଗ୍ରୀ ପାଇ ସୁରୁଖୁରୁରେ ଏଠୁ ବିଦାୟ ହେବି, ସେଥିପାଇଁ ତମେ ମୋ ଲାଗି ପ୍ରାର୍ଥନା କରିବନି ?

ରୋଜା ଗତ ମାସରେ ଏଠା ଛାଡି ଭିଏନା ଚାଲିଗଲାଣି । ବିଚାରି ରୋଗରେ ଶଯ୍ୟାଗତ ବୋଲି ଲେଖିଥିଲା । ସେ ଲେଖିଥିଲା ଦେଶକୁ ଯିବା ପୂର୍ବରୁ ତା'ସଙ୍ଗେ ଦେଖା କରିବାକୁ । ମୁଁ ଜାଣେନା କ'ଣ ହେଉଛି । ଓଡିଶାର ଶିଳ୍ପ ସମ୍ବନ୍ଧରେ ଗତ ସପ୍ତାହରେ ବକ୍ତୃତା ଦେଲି । ନୋଟିସ୍ ତମେ ପାଇଥିବ । ମୁଁ ବଡ ଖୁସୀ ଯେ ସମସ୍ତେ ଓଡିଶାର ଶିଳ୍ପରେ ମୁଗ୍ଧ ହେଲେ । ଏ ସମ୍ବନ୍ଧରେ ଶ୍ରୋତୃବର୍ଗ କିଛି ହେଲେ ଜାଣି ନଥିଲେ । ଇତି ମଧ୍ୟରେ ଅନ୍ୟ ସ୍ଥାନରୁ ଆମନ୍ତ୍ରଣ ପାଇଲିଣି, ସେ ବକ୍ତୃତାଟିକୁ ପୁନରାବୃତ୍ତି କରିବାକୁ । ମୋ ଦେଶର ଗୌରବ ଜଣେଇବାକୁ ମୁଁ ସୁବିଧା ପାଉଛି, ମୁଁ ବଡ ଖୁସୀ ।

ଚକ୍ରଧର ମହାପାତ୍ର ଓ ତାଙ୍କର ସ୍ତ୍ରୀଙ୍କର ଚିଠି ତମ ଚିଠି ସହ ଆଜି ପାଇଲି । ସେ ଚିଠିସବୁ ଏଥିସହ ପଠେଇଲି । ମୁଁ ଏଠି ଭାବୁଛି କେବଳ ମୋ ଗାଁର କି ଉପକାର କରିବି । ଏମାନେ ତ ମତେ ଅନ୍ୟଆଡେ ଟାଣୁଛନ୍ତି । ମୁଁ କୁଆଡେ ଯିବି ? ତମେ କୁଆଡେ ଯିବ ? ଶୀଘ୍ର ପତ୍ର ଦେବ ।

ଇତି,
ତମର ପ୍ରିୟ

●

**ସତୁରି**

## ଲାଲୁ ଦିନେ ବଡ଼ଲୋକ ହେଲେ

ନିଉକାସଲ୍
୨୧-୦୩-୩୯

ସ୍ନେହର ଲକ୍ଷ୍ମୀ,

ତମେ କାହିଁକି ଚିଠି ଦେଇନ ? ମୁଁ ଗତ ସପ୍ତାହରେ ଦୁଇତିନି ଜାଗାରେ ଭାରତବର୍ଷ ସମ୍ବନ୍ଧରେ ବକ୍ତୃତା ଦେଇଛି । ଗତକାଲି ରାତିରେ ଗୋଟିଏ ଚର୍ଚ୍ଚମିଳନକୁ ଯାଇ ଭାରତବର୍ଷ

ବିଷୟରେ କିଛି କହିବାକୁ ଆହ୍ୱାନ ପାଇଲି । ମୋ ସାଥିରେ ଜଣେ ଇଂରେଜ ଓ ଜଣେ ଆଫ୍ରିକୀୟ ଛାତ୍ର ବି ଥିଲେ । ଆମ ସମସ୍ତଙ୍କୁ କିଛି କିଛି କହିବାକୁ ଅନୁରୋଧ ଥିଲା । କିନ୍ତୁ ଆଗେ କହିବ କିଏ ? ଇଂରେଜ ଓ ଆଫ୍ରିକାନ୍ ଦୁହେଁ ଆଗେ କହିବାକୁ ଅମଙ୍ଗ ହେଲେ ଓ ମତେ ଆଗେ କହିବାକୁ କହିଲେ । ମୁଁ ହଁ କଲି ଓ କହିଲି । ମୁଁ, ପଶ୍ଚିମର ଲୋକେ ଭାରତବର୍ଷର ଆଧ୍ୟାତ୍ମିକତା କିପରି ଦରକାର କରୁଛନ୍ତି ଓ ତାହା ଜୀବନରେ ଗ୍ରହଣ ନକଲେ ସମସ୍ତ ମାନବଜାତି କିପରି ଧ୍ୱଂସପ୍ରାପ୍ତ ହେବ, ଭାରତବର୍ଷରେ ଇହଜୀବନକୁ କିପରି ବୃହତ୍ତର ଓ ମହତ୍ତର ପର-ଜୀବନ ସଙ୍ଗେ ମିଳିତ କରାଯାଇଛି; ପଶ୍ଚିମରେ କିପରି ଇହଜୀବନ ଉପରେ କେବଳ ଦୃଷ୍ଟି ଦିଆଯାଇଛି ଓ ତା'ର ଫଳରେ ଅନବରତ ହଣାହଣି ରକ୍ତପାତ ଚାଲିଛି- ଏସବୁ ବ୍ୟାଖ୍ୟାନ କରି ଛୋଟ ବକ୍ତୃତାଟିଏ ଦେଲି । ମୋ ପରେ ଆଫ୍ରିକୀୟ ଓ ଇଂରେଜ ଛାତ୍ର କହିଲେ । କିନ୍ତୁ ପରେ ଆଲୋଚନା ବେଳେ ମୁଁ ଦେଇଥିବା ଭାରତବର୍ଷର ସନ୍ଦେଶ ହିଁ ପ୍ରାୟ ସମଗ୍ର ସ୍ଥାନ ଅଧିକାର କଲା - ଭାରତବର୍ଷ ସମ୍ବନ୍ଧରେ ଦୁଇଜଣ - ସଭାପତିଙ୍କି ମିଶେଇ - ଅଲଗା ପ୍ରଶ୍ନ ପଚାରିଲେ - ଓ ମୁଁ ତା'ର ଯଥାଯଥ ଉତ୍ତର ଦେଲି । ପୃଥିବୀର କେଉଁ ଅଜ୍ଞାତ କୋଣରେ ହେଉ, ଦର୍ଶକ ଓ ଶ୍ରୋତୃ ଜଣେ ହେଉନା କାହିଁକି, ନିଜ ଦେଶର ସମ୍ମାନ ଯଦି ସେଠି ରଖିପାରିବା ତେବେ ବଡ ସୁନ୍ଦର କଥା ।

ମୁଁ ତମ ମା'ପୁଅର ଫଟୋଟି ସମସ୍ତଙ୍କୁ ଦେଖଉଛି । ଲାଲୁକୁ ସମସ୍ତେ ପ୍ରଶଂସା କରୁଛନ୍ତି । ମୁଁ କେତେଗୁଡିଏ ଫଟୋ ପଠେଇଲି । ମୋ ବକ୍ତୃତାର ଏକ ନିମନ୍ତ୍ରଣ-କାର୍ଡ ପଠେଇଲି । ସେ'ଟା ରାମକୁ ପଠେଇଦେବ ।

ଶୀଘ୍ର ପତ୍ର ଦେବ । ମୁଁ ଭଲ ଅଛି । ଏଠି ଏକ ଇଣ୍ଡିୟାନ୍ ହୋଟେଲ୍ ଖୋଲା ହେଲାଣି । ଭାରତୀୟ ଛାତ୍ର ଓ ଇଂରେଜ ଛାତ୍ରଛାତ୍ରୀ ବରାବର ସେଠିକି ଯାଉଛନ୍ତି । ମୁଁ ଥରେ ଦି'ଥର ମାତ୍ର ଯାଇଛି - କାରଣ ବଡ ଖର୍ଚ୍ଚ ।

ବଡ ଶୀତ ଏଠି - ମୁଁ ବଡ ବ୍ୟସ୍ତ ହେଇଯାଉଛି - କେବେ ଯେ ଏ ଥଣ୍ଡା ଖସିବ, ମୁଁ ଜାଣୁନି - ହାୟ ମୋର ରବିତପ୍ତ ଦେଶ !

ଲଲାଟେନ୍ଦୁ କ'ଣ କରୁଛି ? ତାକୁ ସବୁବେଳେ ପୋଷ୍ଟଅଫିସ୍ କି ପଠେଇବ ମୋର ଚିଠି ନବାକୁ । କଥା ଯଦି ପରିଷ୍କାର କହିଲାଣି, ତେବେ ଗାଉଁଲି ଗୀତ ସବୁ ତାକୁ ଶିଖାଅ । ମୋର ଇଚ୍ଛା ପ୍ରଥମ ପାଞ୍ଚବର୍ଷ ସେ ପଲ୍ଲୀରେ ବଢ଼ିବ - ତମୁକୁ ହୁଏତ ତମ ଗାଁ ବା ଆମ ଗାଁରେ ସେଥିପାଇଁ ରହିବାକୁ ପଡିବ । ଏତେ ପିଲା ବୟସରୁ ଟାଉନ୍‌ରେ ବଢ଼େଇବା ଆଦୌ ଉଚିତ ନୁହେଁ - ଯେତେବେଳେ ଆମର ପଲ୍ଲୀରେ ଘର । ପଲ୍ଲୀରେ ବଢ଼ିଲେ, ଲାଲୁ ଦିନେ ବଡ ଲୋକ ହେଲେ, ତା'ର ପିଲାଦିନର ଗାଁ ସାଙ୍ଗମାନଙ୍କୁ ମନେ ପକେଇବ, ତାଙ୍କର କିଛି ଉପକାର କରିପାରେ - ଟାଉନ୍‌ରେ ବଜାର ସାଙ୍ଗ ସିନା ଜୁଟିବେ । ଶୀଘ୍ର ପତ୍ର ଦିଅ ।

ଇତି,

ତମର ପ୍ରିୟ



## ଏକୋଣରି
# ଲାଲୁର ଛବିଟିକି ଦେଖି ଅନେକ ପ୍ରଶଂସା କରୁଛନ୍ତି

ନିଉକାସଲ୍
୩୧-୦୩-୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ପାଇଲି । କାଲି ହ୍ୱିଟ୍‌ଲିବେ ନାମକ ସହରରେ ଓଡିଶାର କଳା ସମ୍ବନ୍ଧରେ ଏକ ବକ୍ତୃତା ଦେଇଆସିଛି । କାଲି ମଧ ଏକ ଚିଠି ପାଇଲି ଯେ, ଗଲା ବାଟରେ ଫ୍ଲରେନ୍ସ ସହର (ଇଟାଲି)ରେ ଏଇ ସମ୍ବନ୍ଧରେ ଏକ ବକ୍ତୃତା ଦେଇପାରିବି । ବର୍ତ୍ତମାନ ବସନ୍ତ ଆରମ୍ଭ ଏ ଦେଶରେ । ବସନ୍ତ ଓ ଗ୍ରୀଷ୍ମ ଏ ଦେଶରେ ମଉଜ ସମୟ । ତେଣୁ ଏ ସମୟଟା ବକ୍ତୃତା ପ୍ରଭୃତିର ସମୟ ନୁହେଁ । ଏମାନଙ୍କର ସଭା, ଆଲୋଚନା, ବକ୍ତୃତା ପ୍ରଭୃତି ଦୀର୍ଘ ଶୀତ କାଳ ଲାଗି ଯୋଗାଡ ହୋଇଥାଏ ଓ ଏଇ ସମୟକୁ ଶେଷ ହେଇଆସେ । ଏବଂ ଏସବୁ ୬/୭ମାସ ଆଗରୁ ବନ୍ଦୋବସ୍ତ ହୋଇଥାଏ । ମୁଁ ସ୍ଲାଇଡ ପାଇଲି ମୋଟେ ଆର ମାସରେ । ମୁଁ ଯଦି ଆରବର୍ଷ ଗ୍ରୀଷ୍ମକାଳରେ ଏଗୁଡିକ ପାଇଥାନ୍ତି, ତେବେ ଏବର୍ଷ ସାରା ଶୀତ କାଳରେ ଅନେକ ସ୍ଥାନରେ ବକ୍ତୃତା ଦେଇପାରିଥାନ୍ତି । ପାରିସ୍-ଲଣ୍ଡନ ପ୍ରଭୃତି ସହରର ଅନେକ ସୋସାଇଟିକି ଏ ସମ୍ବନ୍ଧରେ ଲେଖିଲି - ଉତ୍ତର ବରାବର ପାଇଲି ଯେ, ସେମାନଙ୍କ ବକ୍ତୃତା ଋତୁ ପ୍ରାୟ ଶେଷ । ତଥାପି ମୁଁ ଓଡିଶା ସମ୍ବନ୍ଧରେ ଯେତେ ସମ୍ଭବ ଲୋକଙ୍କୁ ଜଣେଇବାକୁ ଆଗ୍ରହାନ୍ୱିତ ହୋଇ ପାରିସ୍ ଓ ଲଣ୍ଡନ୍‌ରେ କୌଣସିମତେ ଗୋଟେ ବକ୍ତୃତା ଦେବାକୁ ଯୋଗାଡ କରୁଛି ।

ମୁଁ ନଖ ଅପରେଶନ୍ କରିନି । ମୁଁ ଜାଣେନା ଆଦୌ କରିବି କି ନାହିଁ । କଲେ, ଭଲ ହେବାକୁ ବେଶୀଦିନ ଲାଗିବନି । ତେଣୁ ଚିନ୍ତା କରିବାର କୌଣସି କାରଣ ନାହିଁ ।

ଲାଲୁର ଛବିଟିକି ଦେଖି ଅନେକ ପ୍ରଶଂସା କରୁଛନ୍ତି । ମୋର ବନ୍ଧୁ ମିସେସ୍ ଲାଲ୍ (ଭାରତୀୟ-ବିବାହିତା ଇଂରେଜିନୀ, ବର୍ତ୍ତମାନ ବିଧବା ଓ କଳା-ଶିକ୍ଷୟିତ୍ରୀ) କାଲି କହିଲେ, ଛବିକି ଦେଖି - ତମେ ବଡ ସୁନ୍ଦରୀ ସ୍ତ୍ରୀ ପାଇଛ ଓ ତମର ଏ ବଢ଼ିଆ ଲଡ୍‌କା ପାଇଁ ମୁଁ କଂଗ୍ରାଚୁଲେଟ୍ କରୁଛି ତମୁକୁ । ତା'ର ଆଖି ଛଡା ଛଡା ପରସ୍ପରଠାରୁ - ଏହା ଶଲ୍ପୀର ଚିହ୍ନ, ସେ ହୁଏତ ଶିଳ୍ପୀ ହୋଇପାରେ ।

ଗତ ସପ୍ତାହରେ ମୁଁ କେତେଗୁଡିଏ ଫଟୋ ପଠେଇଛି - ପାଇଥିବ ।

ତମେ ମୋର କି କି ଲେଖା କା'କୁ ଦେଇଛ ? ବର୍ତ୍ତମାନ ଏଠି କେତେଦିନ ହେଲା ଭୟଙ୍କର ଶୀତ - ଡିସେମ୍ବର ମାସ ପରି । ଶୀତକୁ ଥଣ୍ଡା ପବନ ଓ ବର୍ଷା ଲାଗିରହିଛି । ଏ ଦୁର୍ଦ୍ଦିନମୟ ଦେଶରୁ କେବେ ମୁଁ ଯିବି ସେୟା ଖାଲି ଭାବୁଛି ।

ରାମକୁ ଗୋଟିଏ ଦୀର୍ଘ ପତ୍ର ଦେଇଛି ମୋର ବକ୍ତୃତା ସମ୍ବନ୍ଧୀୟ - ହୁଏତ ସେ ତାହା ଖବରକାଗଜକୁ ଦେବ । ମୋର ଅନ୍ୟ ସବୁ ଭଲ ।

ଇତି,
ତମର ପ୍ରିୟ



**ବାଆାଷ୍ଟରି**

## ମୋର ଜୀବନ ଦୁର୍ବହ ହୋଇ ଉଠିବ

ନିଉକାସଲ୍
୦୩-୦୪-୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ଆଜି ପାଇଲି । ଆଜି ଅନେକଗୁଡିଏ ଚିଠି ପାଇଛି - ସୋମବାର, ମନଟି ବେଶ୍ ଭଲ ଅଛି । ବର୍ତ୍ତମାନ ଇଷ୍ଟର ଛୁଟି - ୨୭ତାରିଖରେ କଲେଜ୍ ଖୋଲିବ । ଏପ୍ରିଲ୍ ଶେଷ ବା ମେ' ଆରମ୍ଭରେ ମୁଁ ମୋର ଥେସିସ୍ ପରୀକ୍ଷା ପାଇଁ ଦେବି । ଆଉ ଦୁଇମାସ ରହିଲା ଗାଁକୁ ଫେରିବାକୁ । ମନରେ ଆଶା ତା'ର ସହସ୍ର ପ୍ରଦୀପ ଜାଳି ଦେଉଛି - ହୁଏତ ସବୁଗୁଡିକ ଲିଭିଯିବ, କିନ୍ତୁ ଯେତେବେଳ ଯାଏଁ ଜଳୁଛି, ସେତେବେଳ ଯାଏଁ ମନଖୁସୀ ନ ରଖିବି କାହିଁକି ? ଅନେକ ଚିଠି ଭିତରୁ ଗୋଟିଏ ଆଶ୍ଚର୍ଯ୍ୟର ପତ୍ର ପାଇଛି ଫୁଲେସ୍ୱାମୀ ଠାରୁ - ପଢ଼ୁ ପଢ଼ୁ ବହୁତ ହସିଲି ଲେଖାର ବିଚିତ୍ରଙ୍ଗୀ ଓ ଲାଭ ଆଶାରେ ଦରିଦ୍ରକୁ ସ୍ତୁତିବାଦ ଯୋଗୁ । ମୁଁ ଏହାର ଉତ୍ତର ଦେଉନି - କି'ବା ଉତ୍ତର ଦେବି, ମୁଁ ତ ମୋର ଅଭାବ ଘୁଞ୍ଚେଇ ପାରୁନି, ପରର ଅଭାବ ଘୁଞ୍ଚେଇବି କିପରି ? ଚିଠିଟି ତମ୍ଭକୁ ପଢ଼ିବା ପାଇଁ ଦେଲି, ରାମକୁ ଦେବ  ସେ ଏଇଟି ସାଇତି ରଖିବ ନମୁନା ଭାବରେ । କିନ୍ତୁ ମୋର ଆତଙ୍କର କାରଣ ଏହି ଯେ, ଏପରି ପତ୍ର ମୁଁ ଫେରିଲେ ହୁଏତ ମୋର ଦୈନିକ ଡାକକୁ ଓ ମୋର ଚିନ୍ତାକୁ ଭାରି କରିବାରେ ଲାଗିବେ । ଯେହେତୁ ମୁଁ ଏଠୁ ଉତ୍ତର ଦେବା ବା ସେ ଦିଗରେ ଚେଷ୍ଟା କରିବା ଏକାନ୍ତ ଅଯୌକ୍ତିକ ଭାବୁଛି, ତେଣୁ ସେ ସମ୍ବନ୍ଧରେ ମନକୁ ଏକାବେଳେକେ ନିର୍ଲିପ୍ତ ରଖିବାକୁ ଚେଷ୍ଟା କରୁଛି । କିନ୍ତୁ ଆଜିଠୁ ମୋର ଭୟ ହେଲାଣି ଯେ, ଗାଁକୁ ଫେରିଲେ, ଯାଚକମାନଙ୍କ ଦାଉରେ ମୋର ଜୀବନ ଦୁର୍ବହ ହୋଇ ଉଠିବ ।

ମୁଁ କୁ'ଠି ରହିବି ସେ ସମ୍ବନ୍ଧରେ ଅନେକ ପ୍ରକାର ପ୍ରସ୍ତାବ ମୋ ମନରେ ଉଠିଛି ଓ ଲୀନ ହେଉଛି - କୌଣସି ସିଦ୍ଧାନ୍ତରେ ପହୁଁଚି ପାରୁନି । ଆଶା କରେ ଏ ବିଷୟରେ ମତେ ତମେ ସାହାଯ୍ୟ କରିବ । କିନ୍ତୁ ଉଭୟର ଆଲୋଚନାରେ ସାହାଯ୍ୟ କରିବା ପାଇଁ ତମେ ଏଇ କୋଡୋଟି କଥା ମନେରଖିବ ।

୧) ଯଥାସମ୍ଭବ ଖର୍ଚ୍ଚ କମ୍ କରିବ । - ଯେପରି କରଜ ଅଳ୍ପତମ ସମୟ ଭିତରେ ଶୁଝା ହେବ ଓ ଯାଚକମାନଙ୍କ ଦାଉ, ଯାହାକି ଉପେକ୍ଷା କରିବା ଅସମ୍ଭବ, ତାହା ବି ଯଥାସମ୍ଭବ ମେଣ୍ଟେଇବାକୁ ହେବ ।

୨) ଲାଲୁର ଜୀବନର ପାରିପାର୍ଶ୍ୱିକ ଅବସ୍ଥା ଏପରି ହେବ, ଯେପରି କି ପ୍ରତିମୁହୂର୍ତ୍ତ ଓ ପ୍ରତିଦିନ ସେ ସତ୍‌ମାର୍ଗରେ କିଛିକିଛି ଅଗ୍ରସର ହେବ - ତା'ର ବିନା ଚେଷ୍ଟାରେ - ଅର୍ଥାତ୍ କେବଳ ପାରିପାର୍ଶ୍ୱିକ ପ୍ରଭାବ ବଳରେ ।

ଏହି ଆଦର୍ଶ ଧରି ଆମେ ବର୍ତ୍ତମାନ ଜୀବନ ଆରମ୍ଭ କରିବା । ଆମର ଦୁଇଟି ବା ତିନୋଟି ଜାଗା ଅଛି ଯେଉଁଠି କି ଆମେ ରହିପାରିବା । ପ୍ରଥମ ଗାଁ । ଗାଁର ପାରିପାର୍ଶ୍ୱିକ ଅବସ୍ଥା - ଆମ ଘର ଭିତରର ଅବଶ୍ୟ-ଆଦୌ ଶିକ୍ଷଣୀୟ ନୁହେଁ । ତମେ ଓ ଲାଲୁ ରହିବାର ହେଲେ, ଘରଠୁ ବରାବର ଅଲଗା ରହିବାକୁ ହେବ ଓ ତମେ ଘରର କର୍ତ୍ତ୍ରୀ ହେବ । ତା'ହେଲେ ମୋର ଗାଁ ସଂଗେ ବରାବର ସଂପର୍କ ରହିବ ଓ ଆମର ସୁବିଧା ତ ଆମେ କରିବା - ସେ ସୁବିଧା ଗ୍ରାମବାସୀ ବି ଭୋଗ କରିବେ । ପୂର୍ବେ ଶିକ୍ଷିତ ଓ ଧନୀ ଲୋକେ ଗାଁରେ ରହିବାରୁ ଏହି ସୁବିଧା ହେଉଥିଲା । ବର୍ତ୍ତମାନ ଶିକ୍ଷିତ ଲୋକେ ସହରରେ ରହିଲେ, ଗାଁ ଲୋକେ କେବଳ ମୂର୍ଖ-ପାଷଣ୍ଡ ମହାଜନଙ୍କ କବଳରେ ପଡ଼ି ସଢ଼ିଲେ । କିନ୍ତୁ ତମେ କର୍ତ୍ତ୍ରୀ ହେବାରେ ଘରେ କେତେଦୂର ରାଜି ହେବେ ମୁଁ ଜାଣେନା । ମୁଁ ଯଦି ଘରର ସମସ୍ତ ସଂପତ୍ତି ବୁଝିବାରେ ସଂପର୍କିତ ନହୁଏ ମୁଁ ଟଙ୍କା କାହିଁକି ଦେବି ? କେବଳ ଘରୁ ଯେତିକି ଟଙ୍କା ନେଇଛି ସେତିକି ଦେଇ ଚୁପ୍ ରହିବି । ତମେ ଗାଁରେ ରହିଲେ, ମୁଁ କଟକରେ କୌଣସି ଭଲ ହୋଟେଲ୍‌ରେ ରହିଯିବି । ଲାଲୁ ରାମଲଙ୍କା ସ୍କୁଲରେ ଖଡି ଧରିବ - ତା'ପରେ ୪/୫ବର୍ଷ ହୋଇଗଲେ ୟୁରୋପିଆନ୍ ସ୍କୁଲରେ ଛାଡିବାକୁ ହେବ ।

୨ୟ ପ୍ରସ୍ତାବ କଟକ ସହର । ପ୍ରଥମ ଭୟ ଖର୍ଚ୍ଚ - ଘରଭଡା, ବଂଧୁବାନ୍ଧବ ଚର୍ଚ୍ଚା, ଚାନ୍ଦା, ଥିଏଟର, ସିନେମା ଇତ୍ୟାଦି - ତା'ସାଙ୍ଗକୁ ଦୁଃସ୍ଥ ସାହାଯ୍ୟ, ଘର ସାହାଯ୍ୟ ଓ କରଜ ଶୁଝା । ଦ୍ୱିତୀୟ ଭୟ, ଲାଲୁକୁ ପିଲା ଦିନରୁ ପ୍ରକୃତିର ସଂପର୍କରୁ ଦୂରରେ ରଖିବା ମୁଁ ଆଦୌ ପସନ୍ଦ କରୁନି । ସହରରେ ସେ ଖେଳିବ କା'ଡୁଲେ ?

ତୃତୀୟ ସ୍ଥାନ ବାଲୁଗାଁ - ଆଇଜାକ୍‌ର ଭଲଘର - ୧୦/୧୫ ଟଙ୍କାରେ ଭଡା ମିଳିବ, ଶସ୍ତା ଜୀବନ - ମୁଁ କଟକରେ ରହିଲେ ମଧ୍ୟ ସବୁବେଳେ ପାଖରେ ପହଁଚି ପାରିବି ଓ ତମେ କଟକ ଆସିପାରିବ - ଡାକ୍ତରଖାନା ପାଖ - ଆଇଜାକ୍ ପରିବାର ସଙ୍ଗେ ମିଶିଲେ ଲାଲୁ ପିଲାଦିନରୁ ଇଂରେଜୀ ଶିଖିଯିବ ଓ ଅନ୍ୟ ଅନେକ ଭଲ କଥା ଶିଖିବ । ଗାଁ ବି ପାଖ ହେବ, ଅଥଚ ଯାଚକ ମାନଙ୍କଠୁ (ବିଶେଷତଃ ତଥାକଥିତ 'ବନ୍ଧୁ' ମାନଙ୍କଠୁ) ଦୂରରେ ରହିବାର ହେବ ।

ତମେ ଇ ଭିତରୁ କୁ ପ୍ରସ୍ତାବଟିକୁ ବିଶେଷ ପସନ୍ଦ କରୁଛ ? ଗାଁ ଛାଡିଦେଲେ ଆମକୁ ହୃଦୟହୀନ ବର୍ବର କହିବାକୁ ହେବ । ଯେଉଁମାନଙ୍କ ସଙ୍ଗେ ପିଲାଦିନରୁ ବଢ଼ିଆସିଲେ

ସେମାନେ ମରି ପଡିବେ ଅଥଚ ଆମେ ଅନ୍ୟତ୍ର ସୁଖରେ ରହିବା, ଏହା ମୁଁ ଚିନ୍ତା କରିପାରୁନି । କିନ୍ତୁ ଗାଁରେ ରହିଲେ, ଗରିବ ଲୋକଙ୍କ ଅପେକ୍ଷା ଦାଦି-ଖୁଡୀ-ଭିଣୋଇ-ଭାଇ-ମାଉସୀ-ପିଉସୀ ଏଇ ଗୁଡିକ ଆମକୁ ଖାଇଯିବେ । ତମର ତ ଏ ବିଷୟରେ କିଛି କିଛି ଅଭିଜ୍ଞତା ଅଛି । ତା'ଛଡା ତମେ ଯଦି ସମଗ୍ର ଘର ବୁଝିବା ଭାର ନପାଅ, ତମେ ଗାଁରେ ରହି ମଧ୍ୟ କିଛି କରିପାରିବନି । କେବଳ ହଇରାଣ ହେବ । ମୁଁ ତା' ହେବାକୁ ଦେବିନି । ସବୁଆଡୁ ଭାବି ତମେ କ'ଣ ସ୍ଥିର କରୁଛ କହିଲ ।

ମୁଁ ଭଲ ଅଛି । ଏବେ ତମୁକୁ ବହୁତ ସ୍ୱପ୍ନ ଦେଖୁଛି- ପରିଷ୍କାର ଭାବରେ । ଦିନେ ତମୁକୁ ଇଂରେଜୀ କହିବାର ସ୍ୱପ୍ନରେ ଦେଖିଲି ।

ଇତି,
ତମର ପ୍ରିୟ

●

## ତେଏଷଠି
## ମୋର ସମସ୍ତ ସ୍ନେହ ତମକୁ ପଠଉଛି

ନିଉକାସଲ୍
୦୧-୦୫-୩୯

ପ୍ରାଣର ଲକ୍ଷ୍ମୀ,

ତମର ଗତମାସ ୨୪ ତାରିଖର ପତ୍ର ପାଇଲି ଆଜି । ମୁଁ ଗତ ସପ୍ତାହରେ ତମ ପାଖକୁ ଚିଠି ଦେଇନି । ଏକେତ ମୁଁ ବ୍ୟସ୍ତ ଥିଲି, ଦ୍ୱିତୀୟରେ ତମ ପାଖରୁ ଚିଠି ପାଇଲିନି, ତୃତୀୟରେ, ମୁଁ ଧରିନେଇଥିଲି, ସବୁ ତ ଭଲ, ଆଉ କ'ଣ ଲେଖିବି ? ତମର ଏ ପତ୍ର ମୋ ଚିନ୍ତାକୁ ବିକ୍ଷିପ୍ତ କରିଛି ଆଜି ଦିନଯାକ ଏବଂ ମୁଁ ତମଠୁ ଆଉ ପତ୍ର ନ ପାଇଲାଯାଏଁ ନିଶ୍ଚୟ ବିଶେଷ ଉଦ୍‌ବେଗରେ କାଳ କାଟିବି । ତମେ ୧୨ ଦିନ କାଳ ଶଯ୍ୟାଶାୟିନୀ ହେଇଛ ଜରରେ - ଜର ଛାଡୁନି - ମୁଁ ମନେ କରୁଛି ତମୁକୁ ହୁଏତ ଆଉ ଦେଖିବିନି । ମୁଁ କିଛି ଲେଖିପାରୁନି । କେବଳ ଗତ ଜୀବନର ସ୍ମୃତି ସବୁ ଆସି ମନରେ ଗୁଣ୍ଡ ହେଉଛି । ଆମର ବିବାହ ଜୀବନ ଯେତେ ସୁଖର ହେବା କଥା ସେତେ ସୁଖର ହେଇନି ସତ; କିନ୍ତୁ ଯେଉଁ ଅଶ୍ରୁ, ଯେଉଁ ତ୍ୟାଗ, ଯେଉଁ ଗଭୀର ସ୍ନେହ ଭିତର ଦେଇ ଆମେ ପରସ୍ପରର ହାତଧରି ଗତ ୫/୬ବର୍ଷ କାଳ କଟେଇଛେ ସେସବୁ କ'ଣ କେବେହେଲେ ଭୁଲିବାର ? ତମର ରୋଗ ଶଯ୍ୟାରେ ମୋର ସ୍ନେହ ଯଦି କିଞ୍ଚିତ ଶାନ୍ତି ଆଣିପାରେ, ଧନ, ମୋର ସମସ୍ତ ସ୍ନେହ ତମୁକୁ ପଠଉଛି । ତମେ ଯଦି ମତେ ଛାଡିଯାଅ, ମନେରଖ ମୋ ଜୀବନରେ ଆଉ ସୁଖ ନାହିଁ - କିନ୍ତୁ ମନେରଖ ଆମର ବଂଧନ ଛିନ୍ନ ହେବାର ନୁହେଁ - ଆମେ ଜନ୍ମ ଜନ୍ମାନ୍ତରରେ ବରାବର ମିଳିବା । ଏ ଜୀବନର ଦୁଃଖ, ବିବାଦ, ଅନପେକ୍ଷା ସବୁ ଆଉ ନଥିବ - ମିଳନ ଗଭୀରତର,

ପ୍ରେମ ଏକ ଭାବରେ ପରସ୍ପରକୁ ଅପେକ୍ଷା କରି ରହିବ । ମୁଁ ଆଉ ବିଶେଷ କିଛି ଲେଖି ପାରୁନି । ଏ ସଙ୍କଟରେ କ'ଣ ବା ଲେଖିବି ? କେବଳ ପରବର୍ତ୍ତୀ ଚିଠିକୁ ଚାହିଁ ରହିଲି ।

ଇତି,

ତମର ପ୍ରିୟ

●

**ଚଉଷଠି**

## ପ୍ରାଣପୂର୍ଣ୍ଣ ଚୁମ୍ବନ ଦେବି

ନିଉକାସଲ୍

୦୮-୦୫-୩୯

ପ୍ରାଣର ଲକ୍ଷ୍ମୀ,

ତମର ମେ' ପହିଲାର ଚିଠି ଆଜି ପାଇ ଗଭୀର ଆଶ୍ୱସ୍ତିର ନିଃଶ୍ୱାସ ମାଇଲି । ମୁଁ ତମଠୁ ପତ୍ର ଆଉ ପାଇବି ବୋଲି ଆଶା କରି ନଥିଲି । ଭାବିଥିଲି ରାମ ପ୍ରଭୃତି ଅନ୍ୟ କା'ଠୁ ତମ ସମ୍ବନ୍ଧରେ ଯାହା କିଛି ଶୁଣିବି । ତମର ହାତଲେଖା ଆଡ୍ରେସ୍ ଦେଖି ହିଁ ମୋର ସବୁ ଆଶଙ୍କା ତୁଟିଲା । ପଢୁ ପଢୁ ମୋର ଚକ୍ଷୁ ଆର୍ଦ୍ର ହେଇ ଆସିଲା । ..... ମୁଁ ଗତ ଶୁକ୍ରବାର ୫ ତାରିଖରେ ଥେସିସ୍ ଦାଖଲ କରିଛି । ଫିସ୍ ୧୦ ଗିନି ଦେବାକୁ ପଡ଼ିଲା । ବର୍ତ୍ତମାନ ଏଣୁ ତେଣୁ କିଛି ପଢ଼ାପଢ଼ି କରି ସମୟ କଟଉଛି - କିନ୍ତୁ ମନ ଭୟଙ୍କର ଉଦ୍‌ବିଗ୍ନରେ ବ୍ୟାକୁଳ ହେଉଛି - ଫଳ କ'ଣ ହେବ । ମୋର ଭବିଷ୍ୟତ ଯେ ପରୀକ୍ଷକର ହଁ-ନାହିଁ ଉପରେ ନିର୍ଭର କରେ ! - ତା'ଛଡ଼ା ମୋର ଦୁଇବର୍ଷର କଠୋର ପରିଶ୍ରମ, ପ୍ରବାସରେ ଅର୍ଥାଭାବ ଭିତରେ କଠୋର ଜୀବନସଂଗ୍ରାମ ! - ସବୁ ଯଦି ମାଟି ହେଇଯାଏ ! ତମେ ଅନୁମାନ କରିପାରିବ ତେଣୁ ମୋ ମନର ଅବସ୍ଥା । ହାଇକମିଶନର୍ ଅଫିସରୁ ମୁଁ ଏଯାଏଁ କିଛି ଚିଠି ପାଇଲିନି, ମୋ ପାସେଜ୍ ସମ୍ବନ୍ଧରେ । ବୋଧହୁଏ ଓଡିଶା ସେକ୍ରେଟେରିୟେଟ୍‌ରୁ ତମର ଉତ୍ତର ଆସିନି - ମୋର ଖୁବ୍ ଆଶଙ୍କା । ଗଲା ସପ୍ତାହରେ ମୁଁ ହାଇକମିଶନର ଅଫିସକୁ ଖଣ୍ଡେ ଚିଠି ଦେଇଛି - ତା'ର ଜବାବ ଏଯାଏଁ ପାଇନି । ମନ ଘରୁକୁ ଯିବାକୁ ଉଡୁଛି । ଓଃ, ଏଇ ମୁହୂର୍ତ୍ତରେ କିମିତି ମୁଁ ଚାଲିଯାଆନ୍ତି କି - ତମର ରୋଗଶଯ୍ୟାରେ କେବଳ ବସିବସି ତମକୁ ଦୂରାରୋଗ୍ୟ କରିଦିଅନ୍ତି - ଲାଲୁକୁ ଏକ ଘଣ୍ଟା ଭିତରେ ଆଦରରେ ବାପା ଡାକିବା ଶିଖେଇ ଦିଅନ୍ତି - ...... କେତେ ଗପ, କେତେ କଥାରେ ରାତି ପାହିଯା'ନ୍ତା । ଧନ ମୋର, ପ୍ରାର୍ଥନା କର ମୁଁ କିମିତି ସଯଶରେ ଶୀଘ୍ର ଏଇମାସ ଭିତରେ ଇ ଘରୁକୁ ଫେରେ । ଓଃ, ଏଠି ରହିବାକୁ ମନ ମୋର ଆଦୌ ଲାଗୁନି ।

ତମେ ଲେଖିବା ଆଗରୁ ମୁଁ ସିଲାଇ କଳ ବିଷୟରେ ବୁଝିଥିଲି - ଗୋଟେ ସେକେଣ୍ଡହ୍ୟାଣ୍ଡ ମେସିନ୍ ପାଇଁ, କିନ୍ତୁ ପାଇନି । ନୂଆ କଳ ୫$\frac{୧}{୨}$ ପାଉଣ୍ଡ ଅର୍ଥାତ୍ ୭୦ ଟଙ୍କା

ଖଣ୍ଡେ - ଭାରତବର୍ଷର ନୂଆଠୁ ଢ଼େର ଶସ୍ତା । ସେକେଣ୍ଡ ହ୍ୟାଣ୍ଡ୍ ଆଉରି ଶସ୍ତା ହୁଅନ୍ତା - ଦୁଇପାଉଣ୍ଡ ଖଣ୍ଡେ । କିନ୍ତୁ ମୋର ଭୟ ହେଉଛି କାଳେ ସେକେଣ୍ଡହ୍ୟାଣ୍ଡରେ ଖରାପ ମେସିନ୍‌ଟାଏ ପାଇଯିବି - ଆଚ୍ଛା ବୁଝାବୁଝି କରି ଯାହା ଭଲ ଦେଖିବି ତାହା କରିବି ।

ରାମକୁ କହିବ ଲେଖିବାକୁ । ତା'ପାଇଁ କ'ଣ ସଉକିନିଆ ଜିନିଷ ନେଇପାରେ ଯଦି, ସେ ଲେଖୁ । କିନ୍ତୁ ଜିନିଷ ଅଳ୍ପ ଦାମ୍‌ର ହେବା ଦରକାର - ନହେଲେ ମୁଁ ଯୋଗେଇ ପାରିବି କୁଆଡୁ ? ଅବଶ୍ୟ ତା'ର ବ୍ୟବହାର ପାଇଁ ମୁଁ ଗଦାଏ ଏ ଦେଶର ଭଲ ମାଗାଜିନ୍, ଖବରକାଗଜ ଓ ବହି ସଂଗ୍ରହ କରି ରଖିଛି । ତା'କୁ ମୋର ସେହି ହେବ ଶ୍ରେଷ୍ଠ ଦାନ - କିନ୍ତୁ ଗୋଟିଏ ସର୍ତ୍ତରେ ଦେବି ଯେ, ସେଥିରୁ ସାରାଂଶ କାଢ଼ି ସେ ଓଡିଆରେ ଲେଖିବ ।

ଆଦ୍ୟ, ମଧ୍ୟ ଓ ଶେଷରେ ଏକ ମାଗୁଣି - କିମିତି ହେ ସତୀ, ପ୍ରାର୍ଥନା କର ମୁଁ ଯଶରେ ଶୀଘ୍ର ଏଠୁ ବିଦାୟ ନେଇ ସାତସମୁଦ୍ର ତେର ନଦୀ ଡେଇଁ ତମକୁ ଓ ତମର ଶିଶୁପୁତ୍ରକୁ ଦୀର୍ଘ ଦୁଇବର୍ଷର ବିରହ ପରେ ପ୍ରାଣପୂର୍ଣ୍ଣ ଚୁମ୍ବନ ଦେବି । ମୁଁ ଗଲାବେଳକୁ ବର୍ଷା ଆସିଯାଇଥିବ । ଆଷାଢ଼ ରାତ୍ରି, ବାହାରେ ଅନ୍ଧାର ଓ ମେଘରେ ଧରଣୀକି ଆଚ୍ଛନ୍ନ କରିଥିବ, ଅଜସ୍ର ଆଶାର, ମେଘର ମନ୍ଦ୍ରଧ୍ୱନି, ଭେକ ଶ୍ରେଣୀର ନୂତନ ଆନନ୍ଦ ଧ୍ୱନିରେ, ସାରା ପୃଥିବୀ ଶବ୍ଦାୟମାନ ହେଉଥିବ - ସେତିକିବେଳେ ଗୋଟିଏ କୁଟୀରର ଛୋଟ କକ୍ଷରେ ପଟି-ପକା ଭୂତଳରେ ଏକ ପାଖରେ ଶିଶୁ, ଅନ୍ୟ ପାଖରେ ତା'ର ମା'କୁ ଧରି ମୁଁ ମୋର ଗତ ଜୀବନର ପ୍ରବାସ କହୁଥିବି - ଓଃ ! କହ ଧନ, ସେ ସୁଖଠୁ ବଳି ଭାଗ୍ୟ କାହିଁ ?- ଏ ଦେଶରେ ମୁଁ ସେ ସୁଖକୁ କାହୁଁ ପାଇବି କହ ? ଧନ, ମତେ ଶୀଘ୍ର ଫେରିବାକୁ ଜଣେଇ ମତେ ପଠେଇ ଥିଲ, ତମେ ।



**ପଞ୍ଚସ୍ତରି**

## ମନ ମୋର ଛାଟିପିଟି ହେଉଛି

ନିଉକାସଲ୍
୧୮-୦୫-୩୯

ପ୍ରାଣର ଲକ୍ଷ୍ମୀ,

ମୋର ପୂର୍ବ ପତ୍ର ପାଇଥିବ । ଆଶା କରେ ତମେ ଇତିମଧ୍ୟରେ ଆରୋଗ୍ୟ ଲାଭ କରିବଣି । ତମର ସେଠାର ଦୁଃଖ କାହାଣୀ ଶୁଣି, ମୁଁ ଏକପ୍ରକାର ନିର୍ବେଦ ପାଲଟି ଯାଇଛି । ପରୀକ୍ଷାର ଫଳକୁ ଚାହିଁବସିଛି - ସେ ଦକା ; ହାଇକମିଶନର ପାଖରୁ କୌଣସି ଉତ୍ତର ପାଇବାକୁ ନାହିଁ - ସେ ଦୁଶ୍ଚିନ୍ତା ; ତମର ବିଷାଦ କାହାଣୀ - ତମ ଦୁଃଖଠୁ ମୋ ଦୁଃଖ କ'ଣ କିଛି କମ୍ ଭାବିଛ ? ମନ ମୋର ଖାଲି ଛାଟିପିଟି ହେଉଛି କିମିତି ଏଠୁ ଚାଲିଯିବି । ସ୍ୱପ୍ନ ଦେଖୁଥିଲି- ତୁମକୁ, ଲାଲୁକୁ ଯାଇ ଦେଖିବି - ତମେ ରୋଗାକ୍ରାନ୍ତା, ଲାଲୁ ଦୁଷ୍ଟ । ମୁଣ୍ଡରେ ଋଣଭାର, ଦୀର୍ଘଜୀବନର କଠୋର ସଂଗ୍ରାମର ସ୍ମୃତି, ଆଗରେ କେବଳ ବିଘ୍ନ,

ବିପଦ, ଆଶଙ୍କା - ମୁଁ କ'ଣ ଘେନି ଆନନ୍ଦିତ ହେବି, କି ଘେନି ଜୀବନ ଯାତ୍ରା ଆରମ୍ଭ କରିବି କହ ? ଏସବୁ ଭାବି ଭାବି ମୁଁ ନାସ୍ତିକ ପାଲଟିଛି ଏବେ । ଦିନେ ଗଭୀର ବିରକ୍ତିରେ ଗୀତା ପ୍ରଭୃତି ଧର୍ମଶାସ୍ତ୍ରକୁ ଘର ଚଟାଣରେ ଛେଚିଲି । - ମିଥ୍ୟା, ମିଥ୍ୟା- ଏସବୁ ମିଥ୍ୟା ବୋଲି ଚିତ୍କାର କଲି । କାଲି ଖଣ୍ଡେ ପୁରୁଣା ପ୍ରବାସୀରେ ରବୀନ୍ଦ୍ରନାଥଙ୍କ କେତୋଟି କବିତା ପଢୁଥିଲି - ପଢୁ ପଢୁ ଭାବୁଥାଏ, ଠାକୁର କବିଙ୍କ ବାପା ଜମିଦାରୀ ଛାଡି ଯାଇ ନଥିଲେ, ପୁଅଙ୍କର ଏ ଈଶ-ସ୍ତୁତି ଭିନ୍ନ ଆକାର ଧାରଣ କରିଥାନ୍ତା ପରା ! ଇ ଭିତରେ କେତେ କାନ୍ଦିଛି, କେତେଥର ଆତ୍ମହତ୍ୟା କରିବାକୁ ମନ କରିଛି, ହାୟ, ତା'କିଏ ବୁଝିବ ? ନିଜେ ଅନ୍ତର୍ଯାମୀ ଯେତେବେଳେ କାଠ, ଅପର ମନୁଷ୍ୟଠୁ ସହାନୁଭୂତି ଲୋଡିବା ଘୋର ମୂର୍ଖତା । ..... ଭାଇଠୁ ଆଜି ଖଣ୍ଡେ ଚିଠି ପାଇଲି - ସେ ଯିବା କଥା ତ କିଛି ଲେଖିନି - କେବଳ ଘରର କଥା ପଚାରିଥିଲା, ମୁଁ ସବୁ ଜଣେଇ ଦେଇଛି । ମୁଁ ଲାଲୁ ଓ ତମକଥା ପଚାରନ୍ତି, କିନ୍ତୁ ପଚାରୁନି - କାରଣ ଏ ଦୂର ଦେଶରେ ଦୁଃଖମୟ ସଂବାଦ ଶୁଣି କିଛି ଲାଭ ନାହିଁ - କେବଳ ମାନସିକ ଯନ୍ତ୍ରଣା ଛଡା । ମୋର ଦୃଢ଼ ଧାରଣା ଯେ ତମେ ମୋ କୋଳରେ ମରିବ - ଆଶା କରେ, ତମର ମଧ୍ୟ ସେଇ ଆଶା । ଏଇ ଦୁର୍ଦ୍ଦିନରେ ଅନ୍ତତଃ ସେଇତକ ଆଶା ଉପରେ ହିଁ ଆମେ ନିର୍ଭର କରି ରହିବା - ତା'ଠୁ ବେଶୀ ଆମ ଭାଗ୍ୟରେ ନ ଥାଇପାରେ ।...... ଗୋଟେ ସିଲାଇକଳ (ଗୋଡଚଳା, ସିଂଗର-ମେଶିନ୍) ବୁଝିଛି - ସେକେଣ୍ଡହ୍ୟାଣ୍ଡ - ୫ - ପାଉଣ୍ଡ ଦାମ୍ । ମୁଁ ତମ୍ଭକୁ ପୂର୍ବ ଚିଠିରେ ଭୁଲ୍ ଦାମ୍ ଦେଇଥିଲି - ନୂଆ ହାଣ୍ଡ ମେଶିନ୍ ୫ ପାଉଣ୍ଡ - କିନ୍ତୁ ଟ୍ରେଡଲ୍ (ଗୋଡ ଚଳା) ୧୯/୨୦ ପାଉଣ୍ଡ ଖଣ୍ଡେ । ସେକେଣ୍ଡହାଣ୍ଡରେ ମତେ ଉଠା ପଡିବନି । ଦେଖାଯାଉ । ଶୀଘ୍ର ଚିଠି ଦେବ ।

ଇତି, ତମର ପ୍ରିୟ

●

**ଛଅସ୍ତରି**

## ମୋ ଜୀବନର ପ୍ରତ୍ୟେକଟି ଦିନ ମେ ଆଠ ତାରିଖ କରିବ

ନିଉକାସଲ୍

୨୩-୦୫-୩୯

ସ୍ନେହର ଲକ୍ଷ୍ମୀ,

ତମର ପତ୍ର ପାଇଛି । ଦୁଶ୍ଚିନ୍ତାମୟ ଦୁର୍ଦ୍ଦିନ ଭିତରେ ମେ' ୮ କେବେ ଆସି କେବେ ଗଲା ମୁଁ ଜାଣିପାରିନି । କିନ୍ତୁ ଜୀବନଟାଯାକ ଯେତେବେଳେ ମେ' ୮, ଗୋଟିଏ ଦିନର ବିଶେଷ ମୂଲ୍ୟ କାହିଁ ? ଆଶା କରେ ଫେରି ଘର ପାତିଲେ ତମେ ମୋ ଜୀବନର ପ୍ରତ୍ୟେକଟି ଦିନକୁ ମେ' ୮ କରିବ, ନହେଲେ ବଙ୍ଗୋପସାଗରର ବେଳାଭୂମିରେ ମା'ପୁଅଙ୍କୁ ଫୋପାଡି ଦେଇ ଆସିବି । ସିଲାଇ କଳ କଥା ଶୁଣିବ ? ଇଭିତରେ ଦିନେ ଦୋକାନକୁ ଯାଇ ଦେଖିଲା ବେଳକୁ ପୂର୍ବର ପାଞ୍ଚ ପାଉଣ୍ଡିଆ କଳ ପାଖରେ ଆଉ ଗୋଟିଏ କଳ ଠିଆ ହୋଇଛି ।

ସେଇଟି ଏଡେ ଚମତ୍କାର - କଳଟିକି ମୋଡାମୋଡି କରିଦେଲେ ଠିକ୍ ଗୋଟାଏ ବାକ୍ସ ବା ଟେବ୍ଲ୍ । କିନ୍ତୁ ଦାମ୍ ୮ ପାଉଣ୍ଡ । ଏ କଳକୁ ଦେଖି ପୂର୍ବ କଳଠୁ ମମତା ଛାଡିଗଲା ; କିନ୍ତୁ ଏତେ ଦାମ୍ ଦେଇପାରିବି କୁ'ଠୁ ? ତା'ଛଡା ପରେ ଭାବୁଛି, ସିଲେଇକଳ ଗୋଟେ ଘରେ ରଖିଲେ ଏକ ଜଂଜାଳ । ତମେ ସିଲେଇ କରି ଜାଣିଲେ, ବଂଧୁବାଂଧବ କୁର୍ତ୍ତା, ସେମିଜ୍ ସବୁ ତମଦ୍ୱାରା କରେଇବାକୁ ଚେଷ୍ଟା କରିବେ । ଅନେକ ଶିଖିବାକୁ ଆସି ଝୁଞ୍ଚି ଭାଙ୍ଗିବେ ଓ ତମକୁ ବ୍ୟସ୍ତ କରିବେ । ଏ କଥା ଯେ ସତ, ତାହା ତମେ ଅବଶ୍ୟ ସ୍ୱୀକାର କରିବ । ତା'ଛଡା ଆମର ଏତେ କ'ଣ ପୋଷାକପତ୍ର ଦରକାର ଯେ ସିଲାଇ କଳ ଦରକାର ? ଏସବୁ ଭାବିଭାବି ମୁଁ ଏପର୍ଯ୍ୟନ୍ତ ସିଲାଇକଳ କିଣିନି, କିନ୍ତୁ ତମର ଦୁଇଟି ପ୍ରିୟ ବିଷୟ, ରଂଧନ ଓ ସଙ୍ଗୀତ ସମ୍ବନ୍ଧରେ ମୁଁ ଯେ ଭୁଲିନି, ତାହା ମୋର ଗଣ୍ଠିରା ଫିଟେଇଲେ ବୁଝିବ ।

ହାଇକମିଶନର୍ ପାଖରୁ ଚିଠି ପାଇଛି । ସେମାନେ ମୋ ପାଇଁ ଟିକଟର ବନ୍ଦୋବସ୍ତ କରୁଛନ୍ତି । ମୁଁ ଆଜି ସେମାନଙ୍କୁ ଲେଖିଛି ଯେ, ମତେ ଟଙ୍କା ଦେଇଦେଲେ ମୁଁ ନିଜେ ଟିକଟ କାଟିବି । କ'ଣ ହେଉଛି ଦେଖାଯାଉ । ବ୍ରିଟିଶ୍ ମ୍ୟୁଜିଅମ୍‌ରୁ ୩୫ ପାଉଣ୍ଡ ଏବେ ପାଇଲି । ଏ ଭିତରେ ମୁଁ ଯେ କି କଷ୍ଟରେ ଚଳିଛି, ତା'ତମୁକୁ କହିନି । ବର୍ତ୍ତମାନ ଅବସ୍ଥା ବେଶ୍ ଭଲ । ଖାଲି ପରୀକ୍ଷାଫଳକୁ ଚାହିଁ ବସିଛି - ଜାଣିଲେଇ ଏଠା ଛାଡିବି । ବର୍ତ୍ତମାନ ଜିନିଷ କିଣାକିଣି ଓ ସଜାଡିବାରେ ଲାଗିଛି । ଖୁବ୍ ସମ୍ଭବତଃ ବମ୍ବେ ବାଟେ ଯିବି । ହରିଶ ବରାଳଙ୍କୁ ଦେଖିବି ବୋଧହୁଏ - ତାଙ୍କ ପାଖକୁ ଲଣ୍ଡନରୁ ଖଣ୍ଡେ ଚିଠି ଦେବି । ଅନେକ ସମୟରେ ଭାବୁଛି ରାଇରଙ୍ଗପୁର୍ ନଯାଇ, ଦାଣ୍ଡେ ଦାଣ୍ଡେ କଟକ ପହଁଚି, ଚାକିରିର ଯୋଗାଡ କରିବି । ଦେଖାଯାଉ କ'ଣ ହେଉଛି ।

ଇତି, ତମର ପ୍ରିୟ

ରାମକୁ ଧନ୍ୟବାଦ ତା'ର ପତ୍ର ପାଇଁ ।

●

**ସତସ୍ତରି**

## ଆଜି ଅକ୍ସଫୋର୍ଡ ବୁଲି ବୁଲି ଦେଖିଲି

Lincoln College
Oxford
04-06-39

ସ୍ନେହର ଲକ୍ଷ୍ମୀ,

ମୁଁ ନିଉକାସଲ୍ ଛାଡି ଆସିଲି କାଲି । ମୋର ମୌଖିକ ପରୀକ୍ଷାର ଦିନକୁ ଅପେକ୍ଷା କରିକରି ମୁଁ ଗତ ସପ୍ତାହରେ ଚିଠି ଦେଇପାରିଲିନି । ନିଉକାସଲ୍‌ରେ ଶୁକ୍ରବାର ଦିନ ଏକ ପରୀକ୍ଷା ହେଲା, ମୁଁ ଶନିବାର ଦିନ ସେଠା ଛାଡିଲି ଚିରକାଳ ପାଇଁ । ଆଜି ଅକ୍ସଫୋର୍ଡ ବୁଲିବୁଲି ଦେଖିଛି । ଆଜି ସଂଧ୍ୟାରେ ଓଡିଶାର କଳା ସମ୍ବନ୍ଧରେ ଏଠି ଗୋଟିଏ ବକ୍ତୃତା

ଦେବି । କାଲି ସକାଳୁ ମୁଁ କେମ୍ବ୍ରିଜ୍ ଯିବି - ଦିନ ୨ଟାରେ ସେଠି ଏକ ପରୀକ୍ଷକ ମତେ ମୌଖିକ ପରୀକ୍ଷା କରିବେ । କେମ୍ବ୍ରିଜ୍ ଓ ନିଉକାସଲ୍ ଦୁଇ ଜାଗାର ପରୀକ୍ଷକଙ୍କ ମତ ଉପରେ ମୋ'ର ଫଳାଫଳ ନିର୍ଭର କରେ । ଏପର୍ଯ୍ୟନ୍ତ ସବୁ ଆଶାଜନକ । କିନ୍ତୁ ଫଳ ବାହାରିବାରେ ଡେରି ହେବ - ଏଇମାତ୍ର ଚିନ୍ତାର କାରଣ । ମୁଁ ଏ ମାସ ୧୦ ତାରିଖରେ ମାର୍ସେଲ୍ଠାରେ ଜାହାଜ ଧରିବି ବୋଲି ଭାବିଥିଲି । କିନ୍ତୁ ତାହା ବୋଧହୁଏ ସମ୍ଭବ ହେବନି । ଖୁବ୍ ସମ୍ଭବତଃ ୧୭ ଜୁନ୍‌ରେ ଜାହାଜ ଧରିବି । ଯେକୌଣସି ମତେ ଏଇମାସ ଶେଷ ସପ୍ତାହରେ ଘରେ ପହଁଚିବି । ଜିନିଷପତ୍ର ସବୁ ପ୍ୟାକ୍ କରି କୁକ୍ ମାର୍ଫତ୍‌ରେ ଦେଇଦେଇଛି - ସାଥିରେ ଖଣ୍ଡେ ସୁଟ୍‌କେଶ୍ ମାତ୍ର । କେମ୍ବ୍ରିଜ୍‌ରୁ ଲଣ୍ଡନ ଯିବି । ବଣ୍ଡିଆ ହାଉସ୍ ପାସେଜ୍ ସମ୍ବନ୍ଧରେ ବଡ ହଇରାଣିଆ ଭାବ ଧରିଛନ୍ତି । ସେମାନେ କେବଳ ମତେ ଟିକଟ୍ ଖଣ୍ଡେ ଦେଇଦେବେ - କ୍ୟାଶ୍ କିଛି ଦେବେନି - ଏଇ ଭାବ । କିନ୍ତୁ ମୋର ପକେଟ୍ ବର୍ତ୍ତମାନ ଶୂନ୍ୟ । ମୁଁ ଲଣ୍ଡନ୍ ଗଲେ ସେମାନଙ୍କୁ କୁହାବୋଲା କରି କିଛି ଟଙ୍କା ପାଇବାକୁ ଯୋଗାଡ କରିବି । ତମେ ଆଉ ଚିଠି ଦେବନି । ଇତିମଧ୍ୟରେ ଯାହା ଚିଠି ଦେଇଥିବ ତାହା ମୁଁ ଟମାସ୍‌କୁକ୍ ଅଫିସ୍‌ରୁ ପାଇବି ।

ଫଳ ଜାଣିଲେ ଶୀଘ୍ର ତମ ପାଖକୁ ତାର ସଂବାଦ ପଠେଇବି । ଅନ୍ୟ ସ୍ଥାନମାନଙ୍କରୁ ଚିଠି ଦେବି ।

ଇତି,

ତମର ପ୍ରିୟ

●

**ଅଠସ୍ତରି**

## ମୁଁ ବର୍ତ୍ତମାନ ଲଣ୍ଡନ ସହର ବୁଲି ଦେଖୁଛି

କୁକ୍‌ସ୍ ଅଫିସ୍, ଲଣ୍ଡନ୍

୦୭-୦୬-୩୯

ସ୍ନେହର ଲକ୍ଷ୍ମୀ,

କେମ୍ବ୍ରିଜ୍‌ରୁ ପଠେଇଥିବା ତାର ପାଇଥିବ । କାଲି ଲଣ୍ଡନରୁ ଚିଠି ଦେଇଥିଲି, ତା' ମଧ୍ୟ ପାଇଥିବ । ତମର ଦେହର ଅସୁବିଧା କଥା ଓ ଜେମସେଦ୍‌ପୁର ଯିବା କଥା ରାମ ଚିଠିରୁ ବୁଝିଲି । ସେ ଚିଠି ସବୁ ନିଉକାସଲ୍‌ରୁ ଏଠିକି ରିଡିରେକ୍ଟେଡ ହେଇ ଆସିଥିଲା । ମୁଁ ବର୍ତ୍ତମାନ ଲଣ୍ଡନ ସହର ବୁଲି ଦେଖୁଛି । ଏଠି ଭୟଙ୍କର ଗରମ ଏଇକ୍ଷଣି - ଠିକ୍ ଆମ ଦେଶ ପରି । ମୁଁ ଲଣ୍ଡନ୍ ୯ ତାରିଖରେ ବା ୧୦ ତାରିଖରେ ଛାଡିବି । ଦୁଇଦିନ ପାରିସ୍‌ରେ କଟେଇ ୧୨ ତାରିଖରେ ଭିନିସ୍ ଯାତ୍ରା କରିବି । ୧୪ ତାରିଖରେ ଭିନିସ୍‌ରୁ ଗୋଟିଏ ଇଟାଲିୟାନ୍ ଜାହାଜରେ ଦେଶକୁ ଫେରିବି । ଏ ଜାହାଜ ବମ୍ବେରେ ୨୬ ଜୁନ୍‌ରେ ପହଁଚିବ । ମୁଁ ସେହିଦିନ ବମ୍ବେ ଛାଡି ପାରେ ବା ହରିଶ ବରାଳଙ୍କ ସଙ୍ଗେ ଦେଖାହୁଏ ଯଦି ଓ ତାଙ୍କ ସଙ୍ଗେ ବମ୍ବେର ଦେଖିବା ଜାଗା ସବୁ ଦେଖିବାର ଯଦି ସୁବିଧା ହୁଏ ତେବେ, ଦିନେ

ରହିପାରେ । ତମେ ଯଦି ସେବେଯାଏ ଜେମସେଦ୍‌ପୁରରେ ଥିବ ତେବେ ମତେ ଜଣେଇବ - ମୁଁ ଜେମସେଦ୍‌ପୁରରେ ଓହ୍ଲେଇବି । M. Mansingh, passenger S.S. Conte Roro, C/o- Thomas Cooks, Bombay - ଏଇ ଠିକଣାରେ ଖଣ୍ଡେ ପତ୍ର ପକେଇ ଦେବ - ମୁଁ ବମ୍ବେରେ ଓହ୍ଲେଇଲାବେଳକୁ ସେ ଚିଠି ପାଇବି ଓ ତମର କହିବାମତେ କାର୍ଯ୍ୟ କରିବି । ହାଇକମିଶନର ଅଫିସ୍‌ରେ ମତେ ବେଶ୍ ଯୁଦ୍ଧ କରିବାକୁ ହେଲା । ଫଳରେ ସେମାନେ ମୋର ସବୁ ବନ୍ଦୋବସ୍ତ କରି ଦେଇଛନ୍ତି । ମୋର ଅନ୍ୟସବୁ ଭଲ । ଅନ୍ୟ ଜାଗାମାନଙ୍କରୁ ଚିଠି ନ ପାଇଲେ କୌଣସି ଚିନ୍ତା କରିବ ନାହିଁ ।

ଇତି, ତମର ପ୍ରିୟ

●

**ଅଣଷଠି**

## ମୁଁ Ph. D. ଡିଗ୍ରୀ ପାଇଁ ଉପଯୁକ୍ତ

THE UNION SOCIETY
CAMBRIDGE
07-06-39

ସ୍ନେହର ଲକ୍ଷ୍ମୀ,

ପୂର୍ବ ଚିଠିଟି ଅକ୍ସଫୋର୍ଡରେ ଲେଖିଥିଲି । କିନ୍ତୁ ପୋଷ୍ଟ କରି ପାରିଲିନି ସେଠି । କାଲି କେମ୍ବ୍ରିଜ୍ ଆସିଲି । ମୋର ମୌଖିକ ପରୀକ୍ଷା ହେଲା ଓ ପରୀକ୍ଷକ ମତେ ଜଣେଇଦେଲେ ଯେ ମୁଁ ଡିଗ୍ରୀ (Ph.D) ପାଇଁ ଉପଯୁକ୍ତ ବୋଲି ବିବେଚିତ ହୋଇଛି । କାଲି ତେଣୁ ସାଙ୍ଗେ ସାଙ୍ଗେ ଏକ ତାର କଲି । ଆଶା କରେ ତାହା ଇ ଭିତରେ ପାଇଥିବ । କାଲି ଏଠି ଗୋଟିଏ ବକ୍ତୃତା ଦେଇଥିଲି । ଅକ୍ସଫୋର୍ଡରେ କିନ୍ତୁ ଦିନଟି ଯିମିତି ମଜାରେ କଟିଲା, ଏଠି ସେପରି ନୁହେଁ । ମୁଁ ଆଜି ଲଣ୍ଡନ ଯାଉଛି । ସାଙ୍ଗେ ସାଙ୍ଗେ ହାଇକମିଶନର ପାଖକୁ ଯାଇ ସବୁ ଠିକ୍ କରିବି । ତା'ପରେ ଯାଇ ତମକୁ ଏକ ପତ୍ର ଲେଖିବି ମୁଁ କେବେ ଓ କେଉଁ ଜାହାଜରେ ବମ୍ବେରେ ପହଁଚିବି । ବର୍ତ୍ତମାନ ମୁଁ କିଛି କହିପାରୁନି ।

ଇତି, ତମର ପ୍ରିୟ

●

ସ୍ୱର୍ଗତ ଡକ୍ଟର ମାୟାଧର ମାନସିଂହ ପତ୍ନୀ ହେମଲତାଙ୍କୁ କେତେ ଭଲ ପାଉଥିଲେ, ତାହା ଓଡ଼ିଶାର ମାନସିଂହ ପ୍ରେମୀ ପାଠକ ପାଠିକାମାନେ ନିଶ୍ଚିତ ଭାବରେ ଅବଗତ । ତାଙ୍କର ଦୁଇଟି କବିତା ସଂକଳନର ନାମ ସେ ରଖିଥିଲେ 'ହେମଶସ୍ୟ' ଓ 'ହେମପୁଷ୍ପ' । ଏହି 'ହେମପତ୍ର'ରେ ସନ୍ନିବେଶିତ ପତ୍ରଗୁଡ଼ିକୁ ମାନସିଂହ ପତ୍ନୀ ହେମଲତାଙ୍କୁ ୧୯୩୭ - ୧୯୩୯ ମଧ୍ୟରେ ବିଲାତରେ ପିଏଚ.ଡି. କରୁଥିବା ବେଳେ ଲେଖିଥିଲେ । ଏହି ଚିଠି ଗୁଡ଼ିକୁ ପାଠକଲେ ପାଠକପାଠିକାମାନେ ମାନସିଂହଙ୍କ ଦୂରଦୃଷ୍ଟି ଓ ବ୍ୟକ୍ତିତ୍ୱର ଏକ ଆକଳନ କରିପାରିବେ । ଏ ଚିଠି ଗୁଡ଼ିକରେ ନିଛକ ବ୍ୟକ୍ତିଗତ କଥା ଯେତେ ନାହିଁ, ତତ୍କାଳୀନ ସମାଜର ଚିତ୍ର ଅଧିକ ଅଛି । ବ୍ୟକ୍ତିଗତ କଥା ମାଧ୍ୟମରେ ମଧ୍ୟ ସମାଜ ଓ ଜାତି ଗଠନ ପାଇଁ ଅନେକ ପରାମର୍ଶ ଦେଇଛନ୍ତି । ଏଥିରେ ସନ୍ନିବେଶିତ ପତ୍ରଗୁଡ଼ିକ ସେ ହେମଲତାଙ୍କୁ ଲେଖିଥିବାରୁ ସଂକଳନର ନାମ 'ହେମପତ୍ର' ରଖାଯାଇଛି । 'ହେମଶସ୍ୟ', 'ହେମପୁଷ୍ପ' ପରେ 'ହେମପତ୍ର' ଓଡ଼ିଶା ସାହିତ୍ୟକୁ ମାନସିଂହଙ୍କର ଆଉ ଏକ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

